# ମାର୍କ୍ସ୍‌ବାଦ-ଲେନିନ୍‌ବାଦର ମୂଳତତ୍ତ୍ୱ

ପ୍ରଥମ ଭାଗ



ମାର୍କ୍ସ୍‌ବାଦୀ-ଲେନିନ୍‌ବାଦୀ ବିଶ୍ୱଦୃଷ୍ଟିଭଙ୍ଗୀର
ଦାର୍ଶନିକ ମୂଳଭିତ୍ତି



ନବଯୁଗ ଗ୍ରନ୍ଥାଳୟ, କଟକ

# ମାର୍କ୍ସ୍‌ବାଦ-ଲେନିନ୍‌ବାଦର ମୂଳତତ୍ତ୍ୱ

ପ୍ରଥମ ଭାଗ

ମାର୍କ୍ସ୍‌ବାଦୀ-ଲେନିନ୍‌ବାଦୀ ବିଶ୍ୱଦୃଷ୍ଟିଭଙ୍ଗୀର ଦାର୍ଶନିକ ମୂଳଭିତ୍ତି

ନବଯୁଗ-ଗ୍ରନ୍ଥାଳୟ, କଟକ

# ପ୍ରକାଶକଙ୍କ ନିବେଦନ

"ମାର୍କ୍ସବାଦ-ଲେନିନ୍‌ବାଦର ମୂଳତତ୍ତ୍ୱ" ଗ୍ରନ୍ଥଟି ରୁଷର ବହୁ ସୁପ୍ରସିଦ୍ଧ ମାର୍କ୍ସବାଦୀ ପଣ୍ଡିତ, ଦାର୍ଶନିକ ଓ ବୈଜ୍ଞାନିକଙ୍କର ସମ୍ମିଳିତ ଚେଷ୍ଟାରେ ରଚିତ । ଏଥିରେ ପୃଥିବୀର ପ୍ରାୟ ସବୁ ପ୍ରକାର ଦର୍ଶନ, ଅର୍ଥନୀତି, ରାଜନୀତି, ସାମାଜିକ ବ୍ୟବସ୍ଥା ଆଦି ବିଭିନ୍ନ ମତବାଦ ଓ ଚିନ୍ତାଧାରାର ଆଲୋଚନା ସହିତ ମାର୍କ୍ସବାଦ-ଲେନିନ୍‌ବାଦର ମୌଳିକ ତତ୍ତ୍ୱ, ତା'ର ପ୍ରୟୋଗ ଓ ବିକାଶକୁ ଏକ ଅଖଣ୍ଡ ବିଜ୍ଞାନରୂପେ ଉପସ୍ଥାପିତ କରାଯାଇଛି ; ସମୟର ଗତି ସହିତ ଏହାର ସମ୍ବନ୍ଧ ଓ ବ୍ୟାବହାରିକ ବାସ୍ତବତାକୁ ମଧ୍ୟ ଦର୍ଶାଯାଇଛି । ଏହି ଗ୍ରନ୍ଥଟି ରୁଷ୍ ଭାଷାରୁ ଜର୍ମାନ୍, ଇଂରାଜୀ, ଇଟାଲି, ଫରାସୀ, ସ୍ପେନୀୟ, ଚୀନ ଆଦି ବହୁ ଭାଷାରେ ଅନୂଦିତ ହୋଇସାରିଲାଣି । ଏ ବହି ଖଣ୍ଡିକ ହେଉଛି ତା'ର ଓଡ଼ିଆ ଅନୁବାଦ ଦିଗରେ ଉଦ୍ୟମ ।

ଗ୍ରନ୍ଥଟି ପାଞ୍ଚ ଭାଗରେ ବିଭକ୍ତ : (୧) ମାର୍କ୍ସବାଦୀ-ଲେନିନ୍‌ବାଦୀ ବିଶ୍ୱଦୃଷ୍ଟି-ଭଙ୍ଗୀର ଦାର୍ଶନିକ ମୂଳଭିତ୍ତି, (୨) ଇତିହାସର ବସ୍ତୁବାଦୀ ଧାରଣା, (୩) ପୁଞ୍ଜିବାଦର ରାଜନୈତିକ ଅର୍ଥନୀତି, (୪) ଆନ୍ତର୍ଜାତୀୟ କମ୍ୟୁନିଷ୍ଟ ଆନ୍ଦୋଳନର ତତ୍ତ୍ୱ ଓ କର୍ମ-କୌଶଳ, (୫) ସମାଜବାଦ ଓ ସାମ୍ୟବାଦ । ସମଗ୍ର ବହିଟି ଓଡ଼ିଆ ଭାଷାରେ ପ୍ରାୟ ଏକ ହଜାର ପୃଷ୍ଠା ହେବ । ତେଣୁ ତାକୁ ଏକ ସଙ୍ଗରେ ପ୍ରକାଶ ନକରି ଖଣ୍ଡ ଖଣ୍ଡ କରି ପ୍ରକାଶ କରିବାର ଉଦ୍ୟମ ହେଉଛି । ଏଇଟି ହେଲା ତା'ର ପ୍ରଥମ ଖଣ୍ଡ ।

ଓଡ଼ିଆ ଭାଷାରେ ପୃଥିବୀର ସବୁ ଦର୍ଶନ, ଅର୍ଥନୀତି, ବିଜ୍ଞାନ, ସମାଜବିଜ୍ଞାନ ଓ ସେମାନଙ୍କର ପ୍ରୟୋଗକୁ ଯୁକ୍ତିଯୁକ୍ତ ବୈଜ୍ଞାନିକ ଦୃଷ୍ଟିରୁ ଏକାଠି ବିସ୍ତର କରିବା ଏହା ସର୍ବପ୍ରଥମ କହିଲେ ଚଳେ । ତେଣୁ ଏହା ଏକ ଜଟିଳ ଚର୍ଚ୍ଚା ଏବଂ ଓଡ଼ିଆରେ ଏ ସମ୍ବନ୍ଧରେ ଯଥାର୍ଥ ପ୍ରତିଶବ୍ଦର ଅଭାବ ସେ ଜଟିଳତାକୁ ଅଧିକ ବୃଦ୍ଧି କରିଛି । ଅନୁବାଦକୁ ସବୁବେଳେ ସରଳ ଓ ନିଖୁଣ କରିବାକୁ ଚେଷ୍ଟା କରାଗଲେ ବି ତାହା କେତେକଠାରେ କ୍ଲିଷ୍ଟ ହୋଇପଡ଼ିଛି ; ସ୍ଥଳେ ସ୍ଥଳେ କେତେକ ତ୍ରୁଟି ମଧ୍ୟ ରହିପାରିଥାଏ । ପାଠକ

ବନ୍ଧୁମାନଙ୍କୁ ଆମର ଅନୁରୋଧ, ସେମାନେ ଏହାକୁ ଅଧିକ ଉନ୍ନତ ଓ ପରିମାର୍ଜିତ କରିବା ଦିଗରେ ତାଙ୍କର ମତାମତ, ସମାଲୋଚନା ଓ ସୁପରାମର୍ଶ ଦେଇ ଆମକୁ ବାଧିତ କରିବେ ।

ଏଥିରେ ବ୍ୟବହୃତ କେତେକ ଶବ୍ଦର ଇଂରାଜୀ ପ୍ରତିଶବ୍ଦମାଳା ପାଠକମାନଙ୍କର ସୁବିଧା ନିମନ୍ତେ ପୁସ୍ତକ ଶେଷରେ ସନ୍ନିବେଶିତ କରାଯାଇଛି ।

ବହୁ ଯତ୍ନ ସତ୍ତ୍ୱେ ମୁଦ୍ରଣରେ ଅଳ୍ପ କେତୋଟି ଗୁରୁତର ପ୍ରମାଦ ରହିଯାଇଛି । ସେଗୁଡ଼ିକର ଶୁଦ୍ଧିପତ୍ର ଅନ୍ୟତ୍ର ଦେଇଛୁଁ । ଏହି ପ୍ରମାଦ ଲାଗି ପାଠକମାନେ କ୍ଷମା କରିବେ ବୋଲି ଆଶା କରୁଁ ।

ପ୍ରକାଶକ

## ସୂଚୀ

# ଶୁଦ୍ଧିପତ୍ର

| ପୃଷ୍ଠା | ପାରା | ଧାଡ଼ି | ଅଛି | ହେବ |
|---|---|---|---|---|
| ୨୩ | ୩ | ୫ | ଦାର୍ଶନିକ ବସ୍ତୁବାଦର | ଦାର୍ଶନିକ ଭାବବାଦର |
| ୮୨ | ୫ | ୫ | ଉପକ୍ଷେତ୍ରମାନଙ୍କ | ଉପବିଭାଗମାନଙ୍କ |
| ୧୧୫ | ୩ | ୪ | ଦୃଢତା | ମତାନ୍ଧତା |
| ୧୧୨ | ୨ | ୩ | ଦୃଢଧର୍ମୀ | ମତାନ୍ଧ |

# ମାର୍କ୍ସବାଦୀ-ଲେନିନ୍‌ବାଦୀ ବିଶ୍ୱଦୃଷ୍ଟିଭଙ୍ଗୀ

## ପ୍ରାରମ୍ଭିକ ସୂଚନା

"ମାର୍କ୍ସଙ୍କ ଶିକ୍ଷା ସର୍ବଶକ୍ତିଶାଳୀ ; କାରଣ, ତାହା ସତ୍ୟ ।" (ଲେନିନ୍)

ମାର୍କ୍ସବାଦ-ଲେନିନ୍‌ବାଦର ମୌଳିକ ତତ୍ତ୍ୱକୁ ଆୟତ୍ତ କରିବାକୁ ହେଲେ ଗଭୀର ଚିନ୍ତାଶୀଳ ଅଧ୍ୟୟନ ଆବଶ୍ୟକ । ସେଥିଲାଗି ବହୁ ସମୟ ଓ ପରିଶ୍ରମ ଲୋଡ଼ା । ତେବେ ଏ ପ୍ରକାର ଅଧ୍ୟୟନର ଫଳ କ'ଣ ?

ସଂକ୍ଷେପରେ କହିଲେ, ତାହା ଆମକୁ ଏକ ପୂର୍ଣ୍ଣ ଅଖଣ୍ଡ ବିଶ୍ୱଦୃଷ୍ଟିଭଙ୍ଗୀ ଯୋଗାଏ; ତାହା ଆମ ସମୟର ସବୁଠାରୁ ବଳି ପ୍ରଗତିଶୀଳ ଦୃଷ୍ଟିଭଙ୍ଗୀ । ସେଥିରେ ମାର୍କ୍ସ ଓ ଲେନିନ୍‌ଙ୍କର ମହାନ ଶିକ୍ଷାର ମୌଳିକ ଉପାଦାନଗୁଡ଼ିକ ଏକ ପୂର୍ଣ୍ଣ ଅଖଣ୍ଡ ବ୍ୟବସ୍ଥା ରୂପରେ ସୁସଙ୍ଗତଭାବେ ସନ୍ନିବେଶିତ ହୋଇଛି । ଏ ଗ୍ରନ୍ଥରେ ତାହାକୁ ନିମ୍ନ ପ୍ରକାରେ ଉପସ୍ଥାପିତ କରାଯାଇଛି :

ଇତିହାସର ବସ୍ତୁବାଦୀ ଧାରଣା ସମେତ ମାର୍କ୍ସବାଦୀ-ଲେନିନ୍‌ବାଦୀ ଦର୍ଶନ;

ମାର୍କ୍ସବାଦୀ-ଲେନିନ୍‌ବାଦୀ ଅର୍ଥନୈତିକ ତତ୍ତ୍ୱ;

ଆନ୍ତର୍ଜାତୀୟ କମ୍ୟୁନିଷ୍ଟ ଆନ୍ଦୋଳନର ତତ୍ତ୍ୱ ଓ ରଣକୌଶଳ, ଏବଂ ତା ସହିତ ବର୍ତ୍ତମାନ କାଳର ଗଣତାନ୍ତ୍ରିକ ଆନ୍ଦୋଳନରେ ସବୁଠୁ ଗୁରୁତ୍ୱପୂର୍ଣ୍ଣ ଗଣ-ଧାରାର ମାର୍କ୍ସବାଦୀ-ଲେନିନ୍‌ବାଦୀ ମୂଲ୍ୟାଙ୍କନ ;

ସମାଜବାଦ ଓ ସାମ୍ୟବାଦର ତତ୍ତ୍ୱ ।

ଏହି ଗୋଟିକ ପୁସ୍ତକରେ ମାର୍କ୍ସବାଦ-ଲେନିନ୍‌ବାଦର ସମସ୍ତ ସମ୍ବାଦ ଯେ ଲିପିବଦ୍ଧ ହୋଇପାରିବ ନାହିଁ ତା କହିବା ନିଷ୍ପ୍ରୟୋଜନ । ଏ ବହିରେ କେବଳ ତା'ର ମୌଳିକ ତତ୍ତ୍ୱ ବିବୃତ କରାଯାଇଛି ।

ପ୍ରଗତିଶୀଳ ହେଉ ବା ପ୍ରତିକ୍ରିୟାଶୀଳ ହେଉ, ବିଭିନ୍ନ ପ୍ରକାରର ବିଶ୍ୱ-ଦୃଷ୍ଟିଭଙ୍ଗୀ ରହିଛି । କେତେକ ପ୍ରତିକ୍ରିୟାଶୀଳ ଦୃଷ୍ଟିଭଙ୍ଗୀ ପ୍ରାଚୀନ ଧାରଣା ଓ ଅନ୍ଧବିଶ୍ୱାସ ଉପରେ ପ୍ରତିଷ୍ଠିତ । ତାହା ଧର୍ମପ୍ରାଣ ଲୋକଙ୍କୁ ବୁଝାଇବାକୁ ଚେଷ୍ଟା କରେ ଯେ ସେମାନେ ଏ ପୃଥିବୀରେ କୌଣସି ଏକ ଅପ୍ରାକୃତ ଶକ୍ତି, ତାଙ୍କର ପାର୍ଷଦମଣ୍ଡଳୀ ବା ତାଙ୍କର ବରପ୍ରାପ୍ତ ପୁତ୍ର ପ୍ରତିନିଧିଙ୍କ ଉପରେ ଅନ୍ଧଭାବେ ନିର୍ଭରଶୀଳ ହୋଇ ରହିବା ଉଚିତ । ଅନ୍ୟ ସବୁ ଦର୍ଶନ, ପ୍ରକାଶ୍ୟରେ ଯଦିଓ ଦେବତାଙ୍କ ଅସ୍ତିତ୍ୱ ଉପରେ ଜୋର ନ ଦେଇ ମଧ୍ୟ, ଏପରିକି ବିଜ୍ଞାନ ଉପରେ ଆସ୍ଥା ଘୋଷଣା କରି ସୁଦ୍ଧା ଅତି ସୂକ୍ଷ୍ମଭାବେ ମିଥ୍ୟାଯୁକ୍ତିର ଆଶ୍ରୟ ନିଅନ୍ତି ; ଆଉ ଭୌତିକ ଜଗତରେ ବାସ୍ତବତା ସମ୍ପର୍କରେ ମନୁଷ୍ୟର ଦୃଢ଼ ଧାରଣାକୁ ନଷ୍ଟ କରିବାକୁ ଚେଷ୍ଟା କରନ୍ତି ।

ଏଭି ପଦ୍ଧତିକୁ, ଆଧୁନିକ ଭାବବାଦୀଙ୍କ ମଧ୍ୟରେ ଅଧିକ ପ୍ରଚଳିତ ମତବାଦର ପ୍ରଚାରକମାନେ ବ୍ୟବହାର କରିଥାନ୍ତି । ସେମାନଙ୍କ ଭିତରୁ ଅନେକେ ମଧ୍ୟ ଅପ୍ରାକୃତ ଶକ୍ତିରେ ନିଜେ ବିଶ୍ୱାସ କରନ୍ତି ନାହିଁ ; ହେଲେ, ବୁର୍ଜୁଆ ସମାଜର ଅନ୍ଧବିଶ୍ୱାସ ଏବଂ ପରଂପରାଗତ ପ୍ରଥାଆଦିରେ ପ୍ରଭାବିତ ହୋଇ ସେମାନେ ଅପ୍ରାକୃତ ଶକ୍ତି ଉପରେ ବିଶ୍ୱାସର ଦ୍ୱାର ରୁଦ୍ଧ କରିବାକୁ ଚାହାନ୍ତି ନାହିଁ । ସେମାନେ କହନ୍ତି, ବିଜ୍ଞାନର ନୂତନ ଆବିଷ୍କାରଗୁଡ଼ିକ ପ୍ରକୃତିର ଭୌତିକତା ସଂପର୍କରେ ସନ୍ଦେହ ଜାତ କରେ । ବ୍ରହ୍ମବାଦୀ ଏବଂ ଧର୍ମଯାଜକଗଣ ସେମାନଙ୍କୁ ସମର୍ଥନ କରନ୍ତି । ଏମାନଙ୍କର ଧାରଣା ହେଲା ଯେ ଯଦି ପ୍ରକୃତିର ଅଭୌତିକତା ସଂପର୍କରେ କୌଣସି ଲୋକର ବିଶ୍ୱାସ ଜନ୍ମାଇ ଦିଆଯାଇପାରେ ତେବେ ଯେକୌଣସି ବିଷୟ ତେଣିକି ବିଶ୍ୱାସ କରିଯିବା ତା ପକ୍ଷରେ ସହଜ ହେବ ।

ଚକମକ କରୁଥିବା ସବୁ ଜିନିଷ ଯେମିତି ସୁନା ନୁହେଁ, ସେମିତି ବିଜ୍ଞାନକୁ ଅନୁକରଣ କରୁଥିବା ସବୁ କଥା ପ୍ରକୃତ ବିଜ୍ଞାନ ନୁହେଁ । ବିଶେଷତଃ ଆମର ଏ ଯୁଗରେ ବହୁ କିସମର ଭାବବାଦୀ ଦର୍ଶନ ଆପଣାର ବିଜ୍ଞାନବିରୋଧୀ ମର୍ମକୁ ଢାଙ୍କିବା ଲାଗି ଅତି ଆଗ୍ରହରେ ବୈଜ୍ଞାନିକ ଆବରଣ ଘେନିଥାନ୍ତି । ପ୍ରକୃତରେ ସେମାନେ ବିଜ୍ଞାନର ବଳିଷ୍ଠ ପ୍ରମାଣକୁ ଭଣ୍ଡୁର କରନ୍ତି, ସେ ସବୁ ତଥ୍ୟକୁ କଦର୍ଥ କରିବା ବା ଘୋଡ଼ାଇଦେବାକୁ ଚେଷ୍ଟା କରନ୍ତି ।

ମାର୍କ୍ସବାଦ-ଲେନିନ୍‌ବାଦର ଏପରି କେତେକ ମହାନ ଗୁଣ ଅଛି ଯାହା କି ତାକୁ ଅନ୍ୟ ସବୁ ଦାର୍ଶନିକ ମତବାଦଠାରୁ ପୃଥକରୂପେ ପ୍ରତିପାଦିତ କରେ ।

ତାହା କୌଣସି ସୃଷ୍ଟିକର୍ତ୍ତା ବା ଅପ୍ରାକୃତ ଶକ୍ତିକୁ ସ୍ୱୀକାର କରେ ନାହିଁ । ଆମେ ଯେଉଁ ବାସ୍ତବ ଜଗତରେ ବାସ କରୁଁ ତାହା ସେଇ ବାସ୍ତବତା ଉପରେ ସୁଦୃଢ଼ଭାବେ ପ୍ରତିଷ୍ଠିତ । ତାହା ମାନବସମାଜକୁ ଯୁଗଯୁଗର ଆଧ୍ୟାତ୍ମିକ (spiritual) ବନ୍ଧନ ଓ ଅନ୍ଧବିଶ୍ୱାସରୁ ଚିରକାଳ ଲାଗି ମୁକ୍ତ କରେ । ସ୍ୱାଧୀନ, ମୁକ୍ତ, ସୁସଙ୍ଗତ ଚିନ୍ତାକୁ ତାହା ଉତ୍ସାହିତ କରେ ।

ଏ ଜଗତ ପ୍ରକୃତରେ ଯେମିତି ଅଛି, ମାର୍କ୍ସବାଦ-ଲେନିନବାଦ ତାକୁ ସେଇପରି ଗ୍ରହଣ କରେ; ସେଥିରେ କୌଣସି ମନଗଢ଼ା ସ୍ୱର୍ଗ ନର୍କର ଧାରଣା ଯୋଗ କରେ ନାହିଁ । ଖୋଦ ମନୁଷ୍ୟକୁ ମିଶାଇ ସମସ୍ତ ପ୍ରକୃତି ବସ୍ତୁରେ ଗଢ଼ା, ବସ୍ତୁର ବିଭିନ୍ନ ଉପାଦାନ ଦ୍ୱାରା ଗଠିତ—ଏଇ ତଥ୍ୟରୁ ତାହା ଅଗ୍ରସର ହୁଏ ।

ପ୍ରକୃତି, ଆଉ ତା'ର ପ୍ରତ୍ୟେକ ପ୍ରପଞ୍ଚ (phenomena) ଅବିଶ୍ରାନ୍ତ ବିକାଶର ପ୍ରକ୍ରିୟାରେ ଲିପ୍ତ । ସେ ବିକାଶର ନିୟମ ଭଗବାନଙ୍କ ଦ୍ୱାରା ନିର୍ଦ୍ଦିଷ୍ଟ ନୁହେଁ; ମନୁଷ୍ୟର ଇଚ୍ଛା ଉପରେ ତାହା ନିର୍ଭର କରେ ନାହିଁ; ତାହା ସେଇ ପ୍ରକୃତି ଭିତରେ ନିହିତ ଏବଂ ସମ୍ପୂର୍ଣ୍ଣଭାବେ ଜ୍ଞାନଗମ୍ୟ । ଏ ଜଗତରେ ଜନ୍ମଗତଭାବେ ଜ୍ଞାନାତୀତ ପଦାର୍ଥ କିଛି ନାହିଁ । ଏଇଭଳି କେତେକ ପଦାର୍ଥ କେବଳ ରହିଛି ଯାହା ଏପର୍ଯ୍ୟନ୍ତ ଅଜ୍ଞାତ; କିନ୍ତୁ ବିଜ୍ଞାନ ଓ ବ୍ୟାବହାରିକ କର୍ମ (practice) ଦ୍ୱାରା ତାହା ଜ୍ଞାନଗୋଚର ହେବ ।

ମାର୍କ୍ସବାଦୀ-ଲେନିନ୍‌ବାଦୀ ବିଶ୍ୱଦୃଷ୍ଟିଭଙ୍ଗୀ ଖୋଦ ବିଜ୍ଞାନରୁ ଉଦ୍‌ଭୂତ, ଆଉ ବିଜ୍ଞାନ ବାସ୍ତବତା ଓ ବ୍ୟାବହାରିକ କର୍ମରୁ ବିଚ୍ଛିନ୍ନ ନ ହେଲାଯାଏ ତାହା ବିଜ୍ଞାନ ଉପରେ ଅଟଳ ବିଶ୍ୱାସ ରଖେ । ବିଜ୍ଞାନର ବିକାଶ ସହିତ ତାହା ନିଜେ ବିକାଶ ଲାଭ କରେ, ସମୃଦ୍ଧିଶୀଳ ହୁଏ ।

ମାର୍କ୍ସବାଦ-ଲେନିନ୍‌ବାଦ ଶିକ୍ଷା ଦିଏ ଯେ କେବଳ ପ୍ରକୃତିର ବିକାଶ ନୁହେଁ, ମାନବସମାଜର ବିକାଶ ମଧ୍ୟ, ବସ୍ତୁଗତ (objective) ନିୟମ ଅନୁଯାୟୀ ସଙ୍ଗଠିତ ହୁଏ ଯାହାକି ମନୁଷ୍ୟର ଇଚ୍ଛାଧୀନ ନୁହେଁ ।

ସାମାଜିକ ବିକାଶର ମୌଳିକ ନିୟମକୁ ଉଦ୍‌ଘାଟିତ କରିବା ଦ୍ୱାରା ମାର୍କ୍ସବାଦ ଇତିହାସକୁ ଏକ ପ୍ରକୃତ ବିଜ୍ଞାନ ସ୍ତରକୁ ଉନ୍ନୀତ କରିଛି । ଆଉ ସେ ବିଜ୍ଞାନ ପ୍ରତ୍ୟେକ ସାମାଜିକ ବ୍ୟବସ୍ଥାର ପ୍ରକୃତିକୁ ତଥା ଏକ ସାମାଜିକ ବ୍ୟବସ୍ଥାରୁ ଅନ୍ୟ ଏକ ବ୍ୟବସ୍ଥାକୁ ସମାଜର ବିକାଶକୁ ବୁଝାଇବାରେ ସକ୍ଷମ ହୋଇଛି । ବୈଜ୍ଞାନିକ ଚିନ୍ତା ପକ୍ଷରେ ତାହା ଏକ ମହାନ ବିଜୟ ।

ବୁର୍ଜୁଆ ସମାଜବିଜ୍ଞାନୀ, ଅର୍ଥନୀତିଜ୍ଞ ଓ ଐତିହାସିକମାନେ ଇତିହାସର ବସ୍ତୁବାଦୀ ଧାରଣାକୁ ଖଣ୍ଡନ କରିପାରିବେ ନାହିଁ, କିମ୍ବା ଅଧିକାଂଶ ବୁର୍ଜୁଆ ବୈଜ୍ଞାନିକ-

ଙ୍କର ଗ୍ରହଣଯୋଗ୍ୟ ହେଲା ଭଳି ଏକ ତତ୍ତ୍ୱ ଦ୍ୱାରା ଏହାର ବିରୋଧ କରିପାରିବେ ନାହିଁ । ତଥାପି ବହୁ ବୁର୍ଜୁଆ ବୈଜ୍ଞାନିକ ଜିଦ୍‌ଖୋରଭାବେ ଐତିହାସିକ ବସ୍ତୁବାଦକୁ ଅସ୍ୱୀକାର କରୁଛନ୍ତି । କାହିଁକି ? ତାହାର କାରଣ, ପୁଞ୍ଜିବାଦୀ ବ୍ୟବସ୍ଥାର "ଅମରତ୍ୱ" କୁ ଏହା ଖଣ୍ଡନ କରେ । ପୁଣି, ଯଦି ବସ୍ତୁଗତ ନିୟମ ଅନୁଯାୟୀ ଏକ ସାମାଜିକ ବ୍ୟବସ୍ଥାରୁ ଅନ୍ୟ ଏକ ବ୍ୟବସ୍ଥାକୁ ସମାଜର ରୂପାନ୍ତର ଘଟୁଥାଏ ତେବେ ସେଥିରୁ ବୁଝିବାକୁ ହେବ ଯେ ପୁଞ୍ଜିବାଦୀ ସାମାଜିକ ବ୍ୟବସ୍ଥା, ତା'ଠାରୁ ଅଧିକ ପ୍ରଗତିଶୀଳ ସାମାଜିକ ସଙ୍ଗଠନ ଲାଗି ମାର୍ଗ ଉନ୍ମୁକ୍ତ କରିବାକୁ ବାଧ୍ୟ ହେବ । କିନ୍ତୁ ଏହା ଏପରି ଗୋଟିଏ ଜିନିଷ ଯେ, କେବଳ ପୁଞ୍ଜିପତିମାନେ ନୁହନ୍ତି, ସେମାନଙ୍କ ଉପରେ ବୈଷୟିକ ଓ ଆଧ୍ୟାତ୍ମିକଭାବେ ନିର୍ଭରଶୀଳ ବୈଜ୍ଞାନିକମାନଙ୍କ ପକ୍ଷରେ ମଧ୍ୟ ତାକୁ ସ୍ୱୀକାର କରିବା ଅତ୍ୟନ୍ତ ତିକ୍ତ ଓ କଠିନ ହୋଇପଡ଼େ ।

ଶ୍ରେଣୀସମାଜର ଇତିହାସରେ ନିଜର ଅନିବାର୍ଯ୍ୟ ଧ୍ୱଂସକୁ ଶୋଷକଶ୍ରେଣୀ କେବେ ହେଲେ ବିଶ୍ୱାସ କରିନାହିଁ । ଦାସ-ମାଲିକମାନେ ବିଶ୍ୱାସ କରୁଥିଲେ ଯେ ସେମାନଙ୍କର ବ୍ୟବସ୍ଥା ଚିରସ୍ଥାୟୀ ; ତା' କଣ ଐଶ୍ୱରିକ ଇଚ୍ଛା ଦ୍ୱାରା ପ୍ରତିଷ୍ଠିତ ହୋଇ-ନାହିଁ ? ସେମାନଙ୍କ ସ୍ଥାନ ଦଖଲ କରିଥିବା ସାମନ୍ତବାଦୀ ରାଜାମହାରାଜାମାନେ ମଧ୍ୟ ସେମିତି ବିଶ୍ୱାସ କରୁଥିଲେ ଯେ ତାଙ୍କ ବ୍ୟବସ୍ଥା ବି ଐଶ୍ୱରିକ ଇଚ୍ଛାନୁଯାୟୀ ସଂସ୍ଥାପିତ ଏବଂ ତାହା ଚିରସ୍ଥାୟୀ । କିନ୍ତୁ ସେମାନେ ବୁର୍ଜୁଆମାନଙ୍କୁ ରାସ୍ତା ଛାଡ଼ିବାକୁ ବାଧ୍ୟ ହେଲେ । ଏବେ ବୁର୍ଜୁଆମାନଙ୍କର କହିବାର ପାଳି ପଡ଼ିଛି ଯେ, ପୁଞ୍ଜିବାଦ "ଚିର ଅମର" ଓ "ଅପରାଜେୟ", ଆଉ ଏଇ ମୋହ ଭିତରେ ସେମାନେ ସାନ୍ତ୍ୱନା ଲାଭ କରନ୍ତି ।

ସାମାଜିକ ବ୍ୟବସ୍ଥାର ବିକାଶ ଓ ପରିବର୍ତ୍ତନ କେତେକ ସ୍ୱଭାବଗତ ନିୟମ ଅନୁସରଣ କରି ଚାଲେ ଯାହା ଶାସକଶ୍ରେଣୀମାନଙ୍କର ବା ସେମାନଙ୍କ ତତ୍ତ୍ୱବିଦ୍-ମାନଙ୍କ ଇଚ୍ଛା ଉପରେ ନିର୍ଭର କରେ ନାହିଁ—ଏଇ ସତ୍ୟର ଖଣ୍ଡନ ଲାଗି, ପୁଞ୍ଜିବାଦ ସହିତ ସମ୍ପର୍କ ତୁଟାଇବାକୁ ଅନିଚ୍ଛୁକ ବହୁ ବିଦ୍ୱାନ ସମାଜବିଜ୍ଞାନୀ ଓ ଐତିହାସିକ ସବୁ ପ୍ରକାର ଉପାୟ ଅବଲମ୍ବନ କରିଥାନ୍ତି ।

ଏଣୁ ବୁର୍ଜୁଆ ତତ୍ତ୍ୱବିଦ୍‌ମାନେ ଇତିହାସର ମାର୍କ୍ସବାଦୀ ଧାରଣା ବିରୁଦ୍ଧରେ ଯେ ଯୁଦ୍ଧ ଘୋଷଣା କରନ୍ତି, ତା'ର କାରଣ ନୁହେଁ ଯେ ଏହା ଭୁଲ ; ତାହା ଯେ ନିରାଟ ସତ୍ୟ, ସେଇଥିପାଇଁ ।

ଯେଉଁସବୁ ନିୟମ ଦ୍ୱାରା ସମାଜ ଓ ପ୍ରକୃତିର ଶକ୍ତିର ବିକାଶ ଏବଂ କ୍ରିୟାପ୍ରଣାଳୀ ପରିଚାଳିତ ହୁଏ ତାକୁ ଉଦ୍‌ଘାଟିତ କରିବା ଦ୍ୱାରା, ପ୍ରକୃତ ବିଜ୍ଞାନ ଆବିର୍ଭାବ ପୂର୍ବରୁ ସର୍ବଦା ନୂତନକୁ ଦେଖିପାରେ । ସାମାଜିକ ବିକାଶର ମାର୍କ୍ସବାଦୀ ବିଜ୍ଞାନ ଆମକୁ ସାମାଜିକ ଦ୍ୱନ୍ଦ୍ୱର ଗୋଲକଧନ୍ଦା ମାଧ୍ୟମରେ କେବଳ

ନିର୍ଭୁଲ ମାର୍ଗ ନିର୍ଣ୍ଣୟରେ ଯେ ସାହାଯ୍ୟ କରେ ତାହା ନୁହେ, ତାହା ଆମକୁ ଘଟଣାବଳୀର ଗତିମାର୍ଗ, ଐତିହାସିକ ପ୍ରଗତିର ଦିଗ ଏବଂ ସାମାଜିକ ଅଗ୍ରଗତିର ପରବର୍ତ୍ତୀ ସ୍ତରମାନଙ୍କ ସମ୍ପର୍କରେ ଭବିଷ୍ୟତର ସୂଚନା ଦେଇଥାଏ ।

ତେଣୁ ମାର୍କ୍ସବାଦ-ଲେନିନବାଦ ଆମକୁ ଏପରି ଏକ ଯନ୍ତ୍ର ଦେଇଛି, ଯାହା ଦ୍ୱାରା ଆମେ ଭବିଷ୍ୟତ ପ୍ରତି ଦୃଷ୍ଟିପାତ କରିପାରୁ, ଆସନ୍ନ ଐତିହାସିକ ପରିବର୍ତ୍ତନର ସୀମାରେଖା ଦେଖିପାରୁ । ଏହି "ସମସ୍ତ ଦୂରବୀଣରେ" ଶେଷ ଶୋଷଣବ୍ୟବସ୍ଥା ପୁଞ୍ଜିବାଦର ଶୃଙ୍ଖଳରୁ ମୁକ୍ତ ମାନବସମାଜର ସମୁଜ୍ଜ୍ୱଳ ଭବିଷ୍ୟତ ପ୍ରକାଶ ପାଏ । କିନ୍ତୁ ଯେତେବେଳେ ପ୍ରଗତିଶୀଳ ବିଜ୍ଞାନ, ବୁର୍ଜୁଆ ବୈଜ୍ଞାନିକମାନଙ୍କୁ ( ଯେଉଁମାନେ ଭବିଷ୍ୟତ ସମ୍ପର୍କରେ "ପୂର୍ବରୁ କିଛି କୁହାଯାଇପାରିବ ନାହିଁ" ବୋଲି ଦାବୀ କରନ୍ତି) ଏହି "ମାର୍କ୍ସବାଦୀ ସମସ୍ତ ଦୂରବୀଣ" ପ୍ରୟୋଗ କରିବା ଲାଗି ଆହ୍ୱାନ କରେ, ସେତେବେଳେ ସେମାନେ କେବଳ ଆଖି ବୁଜିଦିଅନ୍ତି—ଭବିଷ୍ୟତକୁ ଅନାଇବା ପାଇଁ ତାଙ୍କର ଭୟ ହୁଏ ।

କିନ୍ତୁ ମାର୍କ୍ସବାଦୀମାନେ ଭବିଷ୍ୟତକୁ ଡରନ୍ତି ନାହିଁ । ଯେଉଁ ଶ୍ରେଣୀ ଭବିଷ୍ୟତର ଅଧିକାରୀ, ତାଙ୍କର ପ୍ରତିନିଧି ସେମାନେ । ତାଙ୍କ ପକ୍ଷରେ ମରୀଚିକା ପଛରେ ଧାଇଁବା ଅନାବଶ୍ୟକ । କାରଣ, ବିଜ୍ଞାନ ସହିତ, ଘଟଣାବଳୀ ସହିତ ସମ୍ପର୍କ ହେଲାକ୍ଷଣି ତାହା ଚୂରମାର ହୋଇଯାଏ ।

ରୁଷର ମାର୍କ୍ସବାଦୀମାନେ ଲେନିନଙ୍କ ନେତୃତ୍ୱରେ, ସମାଜବାଦୀ ବିପ୍ଳବକୁ ଇତିହାସ ଦ୍ୱାରା ପରିପକ୍ୱ ବ୍ୟବସ୍ଥାରେ ପହଞ୍ଚିଥିବା ଏକ କର୍ତ୍ତବ୍ୟଭାବେ ପୂର୍ବରୁ ଦେଖିପାରିଥିଲେ । ତଦନୁଯାୟୀ ସେମାନେ ଶୋଷଣବ୍ୟବସ୍ଥା ବିରୁଦ୍ଧରେ ଚୂଡ଼ାନ୍ତ ସଂଗ୍ରାମ ପାଇଁ ଶ୍ରମିକଶ୍ରେଣୀକୁ ସମବେତ କଲେ, ଶୋଷକଶ୍ରେଣୀର ଦୁର୍ଗ ଉପରେ ଆକ୍ରମଣ ଲାଗି ସେମାନଙ୍କୁ ସଙ୍ଗଠିତ କଲେ ଏବଂ ପୂର୍ଣ୍ଣ ବିଜୟ ହାସଲ କଲେ ।

ସୋଭିଏତ୍ ରୁଷର ମାର୍କ୍ସବାଦୀ-ଲେନିନବାଦୀମାନେ, ତାଙ୍କର ବିଶାଳ ଦେଶରେ ସମାଜବାଦ ନିର୍ମାଣର ସମ୍ଭାବନାକୁ ପୂର୍ବରୁ ଦେଖିପାରିଥିଲେ । ସେ ମହାନ କର୍ତ୍ତବ୍ୟ ପୂରଣ ନିମନ୍ତେ ସେମାନେ ଶ୍ରମଜୀବୀ ଜନସାଧାରଣଙ୍କୁ ଏକଜୁଟ କଲେ, ସମାଜବାଦର ବିଜୟ ଦିଗରେ ସେମାନଙ୍କୁ ପରିଚାଳିତ କଲେ ।

ସୋଭିଏତ୍ ୟୁନିୟନ ଓ ଅନ୍ୟାନ୍ୟ ଦେଶର ମାର୍କ୍ସବାଦୀ-ଲେନିନବାଦୀମାନେ, ଫାସିଷ୍ଟ ଜର୍ମାନୀ ଦ୍ୱାରା ଆରମ୍ଭ ହେବାକୁ ଯାଉଥିବା ଦ୍ୱିତୀୟ ମହାଯୁଦ୍ଧର ସମ୍ଭାବନାକୁ ପୂର୍ବରୁ ଦେଖିପାରିଥିଲେ । ସେମାନେ ସବୁ ଦେଶକୁ ସତର୍କ କରିଦେଲେ ଏବଂ ଜର୍ମାନୀର ପରାଜୟ ସମ୍ପର୍କରେ ଭବିଷ୍ୟତବାଣୀ ଶୁଣାଇଥିଲେ । ଦ୍ୱିତୀୟ ମହାଯୁଦ୍ଧରେ

ପ୍ରଧାନତଃ ସୋଭିଏତ୍ ଜନତା ଓ ତାଙ୍କର ଗୌରବମୟ ସେନାବାହିନୀର ବୀରତ୍ୱପୂର୍ଣ୍ଣ ଉଦ୍ୟମ ଯୋଗୁଁହିଁ ଆକ୍ରମଣକାରୀ ଜର୍ମାନ୍‌ଶକ୍ତି ଓ ତା'ର ବନ୍ଧୁବର୍ଗ ସମୂଳେ ବିଧ୍ୱସ୍ତ ହେଲେ ।

ଜନତାର ଗଣତାନ୍ତ୍ରିକ ଦେଶମାନଙ୍କର ମାର୍କ୍‌ସବାଦୀ-ଲେନିନବାଦୀମାନେ ସେମାନଙ୍କ ଦେଶରେ ପୁଞ୍ଜିବାଦକୁ ଧ୍ୱଂସ କରିବା, ଶ୍ରମଜୀବୀ ଜନସାଧାରଣଙ୍କ ଶାସନ ପ୍ରତିଷ୍ଠା କରିବା ଏବଂ ଆବଶ୍ୟକୀୟ ସମାଜବାଦୀ ପରିବର୍ତ୍ତନ ଆଣିବାର ସମ୍ଭାବନା ଓ ଐତିହାସିକ ଆବଶ୍ୟକତାକୁ ପୂର୍ବରୁ ଦେଖିପାରିଥିଲେ ।

ଚୀନର ମାର୍କ୍‌ସବାଦୀ-ଲେନିନ୍‌ବାଦୀମାନେ ସେଠାର ଲୋକସାଧାରଣଙ୍କୁ, ବିଦେଶୀ ଉପନିବେଶବାଦୀ ଓ ତାଙ୍କର ସ୍ୱଦେଶୀ ସହଯୋଗୀଙ୍କ ଆଧିପତ୍ୟରୁ ମୁକ୍ତ କରି ପ୍ରକୃତ ଲୋକପ୍ରିୟ ଶାସନ ପ୍ରତିଷ୍ଠା କରିବାର ଐତିହାସିକଭାବେ ପରିପକ୍ୱ ସମ୍ଭାବନା ତଥା ଆବଶ୍ୟକତାକୁ ପୂର୍ବରୁ ଦେଖିପାରିଥିଲେ । ଶ୍ରମିକଶ୍ରେଣୀ ଓ କମ୍ୟୁନିଷ୍ଟ ପାର୍ଟିର ନେତୃତ୍ୱରେ ପରିଚାଳିତ ଜନତାର ଚୀନ ନିଜର ବିରାଟ ରୂପରେ ଜାଗିଉଠିଛି, ଭିତର ଓ ବାହାରର ଶତ୍ରୁମାନଙ୍କୁ ପରାସ୍ତ କରିଛି, ବୁର୍ଜୁଆ ଗଣତାନ୍ତ୍ରିକ ବିପ୍ଳବର କଠିନ ସମସ୍ୟାଗୁଡ଼ିକୁ ସଫଳତାର ସହିତ ଆୟତ୍ତ କରିପାରିଛି, ସମାଜବାଦୀ ନିର୍ମାଣରେ ଏକ ବଳିଷ୍ଠ ଯୋଜନା ଆରମ୍ଭ କରିଛି ଏବଂ ତାକୁ ପୂର୍ଣ୍ଣ କରିବା ଦିଗରେ ନିଜର ସମସ୍ତ ଶକ୍ତି ବିନିଯୋଗ କରୁଛି । ପୁରୁଣା ଚୀନ ବିସ୍ମୟକର ବେଗରେ ପରିବର୍ତ୍ତିତ ହେଉଛି ।

ଅତଏବ ଚଳନ୍ତି ଶତାବ୍ଦୀର ପ୍ରଥମାର୍ଦ୍ଧର ଗୁରୁତ୍ୱପୂର୍ଣ୍ଣ ଘଟଣାଗୁଡ଼ିକ ଅକାଟ୍ୟ-ଭାବେ ପ୍ରମାଣ କରନ୍ତି ଯେ, କମ୍ୟୁନିଷ୍ଟମାନେ ମାର୍କ୍‌ସବାଦୀ ତତ୍ତ୍ୱରେ ସୁସଜ୍ଜିତ ହୋଇ ଇତିହାସର ସାଧାରଣ ଗତିଧାରା ସମ୍ପର୍କରେ ମୋଟ ଉପରେ ସଠିକ ଭବିଷ୍ୟତବାଣୀ କରିପାରିଛନ୍ତି । ଇତିହାସ ସମ୍ପର୍କରେ ମାର୍କ୍‌ସବାଦୀ-ଲେନିନବାଦୀ ଧାରଣାର ସତ୍ୟତା ବ୍ୟାବହାରିକ କର୍ମ ମଧ୍ୟରେ ପୂର୍ଣ୍ଣ ପ୍ରମାଣିତ ହୋଇଛି ।

ମାର୍କ୍‌ସବାଦୀ-ଲେନିନବାଦୀ ତତ୍ତ୍ୱ ଏକ ମନ୍ତ୍ର ନୁହେ; ତାହା କର୍ମର ନିର୍ଦ୍ଦେଶକ । କିନ୍ତୁ ତା'ର ନିର୍ଭୁଲ ପ୍ରୟୋଗ ଶିକ୍ଷା କରିବାକୁ ପଡ଼ିବ ।

ଆଗରେ ଥିବା ପଥକୁ ତାହା ଆଲୋକିତ କରେ । ପ୍ରଗତିଶୀଳ ଲୋକମାନେ ମଧ୍ୟ, ମାର୍କ୍‌ସବାଦୀ-ଲେନିନବାଦୀ ଜ୍ଞାନ ବିନା, ତାଙ୍କ ଚତୁର୍ଦ୍ଦିଗରେ ଘଟୁଥିବା ଘଟଣାବଳୀର ବାସ୍ତବ ଗମ୍ଭୀରତା ଉପଲବ୍ଧି କରି ନ ପାରି ଅନ୍ଧକାରରେ ଧନ୍ଦି ହେଉଥାନ୍ତି ।

ମାର୍କ୍‌ସବାଦୀ-ଲେନିନବାଦୀ ତତ୍ତ୍ୱ, ବୈପ୍ଳବିକ ନୀତି ପାଇଁ ଏକ ବୈଜ୍ଞାନିକ ଭିତ୍ତି ଯୋଗାଇଥାଏ । ଯିଏ ଆପଣାର ଆତ୍ମଗତ ଇଚ୍ଛା ଉପରେ ନିଜର ନୀତି ଗଠନ କରେ ସିଏ ଏକ ବ୍ୟର୍ଥ ସ୍ୱପ୍ନବିଳାସୀ ହୋଇ ରହେ କିମ୍ବା ଇତିହାସର ଧକ୍କାରେ ପଛକୁ ଠେଲି ହୋଇ ପଡ଼ିବାର ବିପଦ ସେ ବରଣ କରିନିଏ । କାରଣ ମନୁଷ୍ୟର

ଇଚ୍ଛା ଯଦି ଇତିହାସର ନିୟମ ଅନୁସରଣ କରି ନ ଚ୍ଚଲେ ତେବେ ଇତିହାସ ମନୁଷ୍ୟ ଇଚ୍ଛାର ଅନୁରୂପ ହୋଇପାରିବ ନାହିଁ । ସେଇ କାରଣରୁ ପାର୍ଟିର ରାଜନୈତିକ ନୀତିନିର୍ଦ୍ଧାରଣ ଓ ପରେ ବୈପ୍ଳବିକ ଦୃଢତାର ସହିତ ତାକୁ କାର୍ଯ୍ୟକାରୀ କରିବାର ଭିତ୍ତିସ୍ୱରୂପ, ବାସ୍ତବ ଅବସ୍ଥା ଏବଂ ବିବର୍ତ୍ତନର ବାସ୍ତବ ଧାରାକୁ, ଧୀରସ୍ଥିର ଭାବେ ବୈଜ୍ଞାନିକ ଦୃଷ୍ଟିରୁ ପର୍ଯ୍ୟାଲୋଚନା କରିବାର ପ୍ରୟୋଜନୀୟତା ଉପରେ ଲେନିନ ବିଶେଷ ଜୋର ଦେଉଥିଲେ । ମାର୍କ୍ସ କହିଥିଲେ :

"ବସ୍ତୁ ଯେମିତି ରହିଛି ଆମକୁ ସେମିତି ତାହା ଦେଖିବାକୁ ହେବ । ଅର୍ଥାତ୍ ବୈପ୍ଳବିକ ଆଦର୍ଶକୁ ଏପରି ରୂପରେ ଧରିବାକୁ ହେବ, ଯାହାକି ପରିବର୍ତ୍ତିତ ଅବସ୍ଥା ସହିତ ଖାପ୍ ଖାଉଥିବ ।"

ଯେଉଁ ମାର୍କ୍ସବାଦୀ ତତ୍ତ୍ୱ ସବୁ ଦେଶ, ସବୁ ଜାତିର ବୈପ୍ଳବିକ ଚିନ୍ତା ଓ ଅଭିଜ୍ଞତା ମଧ୍ୟରୁ ଜନ୍ମଲାଭ କରିଛି ତାହା ସମଗ୍ର ଶୋଷିତ ଅତ୍ୟାଚାରିତ ଲୋକଙ୍କ ବିରାଟ ମୁକ୍ତି ଆନ୍ଦୋଳନର ନେତା ଓ ଅଗ୍ରଣୀ ଶ୍ରମିକଶ୍ରେଣୀର ଐତିହାସିକ ଲକ୍ଷ୍ୟ ସହିତ ସମାନ । ସର୍ବହରା ଯେପରି ମାର୍କ୍ସବାଦକୁ ତା'ର ଆଧ୍ୟାତ୍ମିକ ଅସ୍ତ୍ରରୂପେ ଲାଭ କରିଚି, ମାର୍କ୍ସବାଦୀ ବିଶ୍ୱଦୃଷ୍ଟିଭଙ୍ଗୀ ଠିକ୍ ସେହିପରି ସର୍ବହରାକୁ ତା'ର ଭୌତିକ ଅସ୍ତ୍ରଭାବେ ପାଇଚି ।

ଅତଏବ, ସମସ୍ତ ଶ୍ରମଜୀବୀ ଜନତା, ପ୍ରତ୍ୟେକ ପ୍ରଗତିଶୀଳ ନରନାରୀ, ଯେଉଁମାନେ ବିଶ୍ୱଜଗତ ସମ୍ପର୍କରେ ନିର୍ଭୁଲ ଧାରଣା ଲାଭ କରିବାକୁ ଚାହାନ୍ତି, ପୁଣି ଯେଉଁମାନେ ପରିସ୍ଥିତିର ଦାସ ନ ହୋଇ, ବିଶ୍ୱ ସଂସାରରେ ଆତ୍ମପ୍ରକାଶ କରି ଚାଲିଥିବା ଘଟଣାବଳୀରେ ସଚେତନ ଅବଦାନ ଦେବାକୁ ଚାହାନ୍ତି, ସେ ସମସ୍ତଙ୍କ ପକ୍ଷରେ ମାର୍କ୍ସବାଦ ଲେନିନବାଦ ହେଲା ଅତ୍ୟନ୍ତ ମୂଲ୍ୟବାନ ଶକ୍ତିକେନ୍ଦ୍ର । ସେ ଦିଗରେ ଆଗ୍ରହୀ ସ୍ତ୍ରୀପୁରୁଷ ଲକ୍ଷ ଲକ୍ଷ ସଂଖ୍ୟାରେ ରହିଛନ୍ତି ; ଆଉ ସଦାସର୍ବଦା ସେମାନଙ୍କ ସଂଖ୍ୟା ବୃଦ୍ଧି ପାଇବାରେ ଲାଗିଛି । ଅଧିକରୁ ଅଧିକ ସାଧାରଣ ଲୋକ ବହୁ ସଂଖ୍ୟାରେ ଗତିଶୀଳ ହୋଇ ଉଠୁଛନ୍ତି—ସେମାନେ ଉଦ୍ଦେଶ୍ୟହୀନଭାବେ ବଞ୍ଚିବାକୁ ଚାହାନ୍ତି ନାହିଁ । ଐତିହାସିକ ଅଗ୍ରଗତିରେ ସେମାନେ ସକ୍ରିୟ ଓ ସଚେତନ-ଭାବେ ଅଂଶ ଗ୍ରହଣ କରିବାକୁ ଇଚ୍ଛୁକ । ସେମାନଙ୍କ ଲାଗି ମାର୍କ୍ସବାଦ-ଲେନିନବାଦ ଏକ ଅପରିମେୟ ସହାୟ ଓ ନିର୍ଦ୍ଦେଶ । ତାହା ବିଶେଷତଃ ଯୁବସମ୍ପ୍ରଦାୟ ପ୍ରତି ପ୍ରଯୋଜ୍ୟ । ଜୀବନର ଅନୁଭୂତି ବଢିବା ସଙ୍ଗେ ସଙ୍ଗେ ଯେଉଁ ରାଜନୈତିକ ପରିପକ୍ୱତା ଆସେ ତାହା ଖୁବ୍ ଶୀଘ୍ର ହାସଲ କରିବା ଦିଗରେ ମାର୍କ୍ସବାଦ-ଲେନିନବାଦ ସେମାନଙ୍କୁ ସାହାଯ୍ୟ କରେ ; ସେମାନଙ୍କର ଯୁବସୁଲଭ ଶକ୍ତିକୁ ମାନବସେବାର ନିର୍ଭୁଲ ମାର୍ଗରେ ପରିଚାଳିତ କରିବାରେ ସାହାଯ୍ୟ କରେ ।

ମାର୍କ୍ସବାଦୀ-ଲେନିନ୍‌ବାଦୀ ବିଶ୍ୱଦୃଷ୍ଟିଭଙ୍ଗୀ, ବୈଜ୍ଞାନିକ ଉଦ୍ୟମର ପ୍ରତ୍ୟେକ କ୍ଷେତ୍ରରେ,—କେବଳ ସାମାଜିକ କ୍ଷେତ୍ରରେ ନୁହେଁ, ପ୍ରକୃତିବିଜ୍ଞାନ କ୍ଷେତ୍ରରେ ମଧ୍ୟ,—ଏକ ନିର୍ଭୁଲ ଦିଗନିର୍ଣ୍ଣୟକାରୀ ଯନ୍ତ୍ର । କାରଣ, ଏହା ଠିକ୍ ନୁହେଁ କି ଯେ,—ବିଶ୍ୱ ଜଗତ୍, ତା'ର ସାଧାରଣ ନିୟମ, ପାରସ୍ପରିକ ସମ୍ପର୍କ ଏବଂ ପ୍ରତିକ୍ରିୟାଆଦିର ନିର୍ଭୁଲ ଜ୍ଞାନ ପ୍ରକୃତିବିଜ୍ଞାନୀମାନଙ୍କୁ ସେମାନଙ୍କର ସୃଜନଶୀଳ ଗବେଷଣାରେ ବିଶେଷ ସାହାଯ୍ୟ କରେ ? ସେଇ ଜ୍ଞାନ ମାର୍କ୍ସବାଦ-ଲେନିନ୍‌ବାଦହିଁ ଯୋଗାଇଥାଏ ।

ଏବେ ବହୁ ପ୍ରସିଦ୍ଧ ବୈଜ୍ଞାନିକଙ୍କ ଗବେଷଣାର ଅଭିଜ୍ଞତା ସେମାନଙ୍କୁ ପ୍ରତ୍ୟକ୍ଷ ମାର୍କ୍ସବାଦ ଗ୍ରହଣ କରିବାରେ ଅଥବା ତା'ର କେତେକ ବିଷୟକୁ ପରୋକ୍ଷରେ ମାନିନେବାଲାଗି ଅନୁପ୍ରାଣିତ କରୁଛି । କାରଣ, ସେମାନଙ୍କର ଆଶା ଯେ ତା'ଦ୍ୱାରା ସେମାନେ ପ୍ରକୃତିର ରହସ୍ୟ ସମ୍ପର୍କରେ ଗଭୀର ଜ୍ଞାନ ଅର୍ଜନ କରିପାରିବେ, ମାନବ-ସମାଜର ସେବାରେ ନିଜକୁ ନିୟୋଜିତ କରିବାରେ ଅଧିକ ସମର୍ଥ ହେବେ । ଏହା ଏକ ଆକସ୍ମିକ ଘଟଣା ନୁହେଁ ।

ମାର୍କ୍ସବାଦୀ-ଲେନିନ୍‌ବାଦୀ ଦୃଷ୍ଟିଭଙ୍ଗୀ କଳା ଓ ସାହିତ୍ୟ କ୍ଷେତ୍ରରେ ଶ୍ରମିକମାନଙ୍କ ପାଇଁ ଏକ ମହାନ ଆଭିମୁଖ୍ୟର ଦ୍ୱାର ଉନ୍ମୁକ୍ତ କରେ । ତାହା ସେମାନଙ୍କର ସୃଜନଶୀଳ ଉଦ୍ୟମକୁ ଶିଳ୍ପକଳାର ମାଧ୍ୟମରେ ବାସ୍ତବତାର ସୁଗଭୀର ସମୃଦ୍ଧିଶୀଳ ପ୍ରତିଫଳନ ଦିଗରେ ନେଇଯାଏ । ଏକ ସ୍ପଷ୍ଟ, ପ୍ରଗତିଶୀଳ ବିଶ୍ୱ-ଦୃଷ୍ଟିଭଙ୍ଗୀର ସୁମଙ୍ଗଳ ପ୍ରଭାବ ବିନା ସମସାମୟିକ ଶିଳ୍ପୀ ଓ ଲେଖକମାନଙ୍କର କାର୍ଯ୍ୟ, ସର୍ବଶେଷରେ ନିର୍ଜୀବ ରକ୍ତହୀନ ହୋଇପଡ଼େ । ଆମ ସମୟରେ, ମାର୍କ୍ସବାଦ-ଲେନିନ୍‌ବାଦ ଶିଳ୍ପୀଙ୍କୁ ବିଶ୍ୱଜଗତ ସମ୍ପର୍କରେ ଏକ ପରିପୂର୍ଣ୍ଣ ସୁସ୍ପଷ୍ଟ ଧାରଣା ଯୋଗାଇଥାଏ ।

ଯେତେବେଳେ ବୁର୍ଜୁଆ ସାହିତ୍ୟ ଅଧିକରୁ ଅଧିକ ନିବିଡ଼ ନୈରାଶ୍ୟବାଦ ଓ ହତାଶାର ପଙ୍କରେ ନିମଜ୍ଜିତ ସେତେବେଳେ ପ୍ରଗତିଶୀଳ କବି ଓ ଲେଖକମାନଙ୍କର ରଚନା ଜୀବନ-ସାବ୍ୟସ୍ତକାରୀ ଆଶାବାଦରେ ଉଚ୍ଛ୍ୱସିତ ; ଉଜ୍ଜ୍ୱଳ ଭବିଷ୍ୟତ ଉପରେ ଦୃଢ଼ ବିଶ୍ୱାସ ଏବଂ ସେ ଭବିଷ୍ୟତ ନିର୍ମାଣ ଲାଗି ଆହ୍ୱାନ ଦ୍ୱାରା ସେମାନଙ୍କ ଶିଳ୍ପକଳାର ସୃଷ୍ଟି ଅନୁପ୍ରାଣିତ ।

ଯେତେବେଳେ ପାଶ୍ଚାତ୍ୟ ବୁର୍ଜୁଆ ମତବାଦ ମାନବ ସମ୍ପର୍କରେ ଓ ସଭ୍ୟତାର ଭବିଷ୍ୟତ ସମ୍ପର୍କରେ ବିଶ୍ୱାସହୀନତାର ହତାଶାମୟ ସଙ୍କଟରେ ନିମଗ୍ନ ସେତେବେଳେ ମାର୍କ୍ସବାଦୀ-ଲେନିନ୍‌ବାଦୀ ଦୃଷ୍ଟିଭଙ୍ଗୀ ମହାନ୍ ଗୌରବମୟ ସାମାଜିକ ଆଦର୍ଶ ପାଇଁ କାର୍ଯ୍ୟ କରିବାର ଆକାଙ୍କ୍ଷାକୁ ଅନୁପ୍ରାଣିତ କରିଥାଏ ।

ମାର୍କ୍ସବାଦ-ଲେନିନ୍‌ବାଦକୁ ଭଲଭାବେ ଆୟତ୍ତ କରିବା ଦ୍ୱାରା ଲୋକ କେବଳ ଶ୍ରମିକର ଆଦର୍ଶ ସମ୍ପର୍କରେ ଗମ୍ଭୀର ଦୃଢ଼ବିଶ୍ୱାସ ଲାଭ କରେ ନାହିଁ, ତାହା ସମଗ୍ର ଜଗତରେ ସମାଜବାଦର ଆସନ୍ନ ବିଜୟର ଐତିହାସିକ ଅନିବାର୍ଯ୍ୟତା ସମ୍ପର୍କରେ ଗମ୍ଭୀର ଦୃଢ଼ ବିଶ୍ୱାସ ଆଣିଦିଏ । ଏପରିକି ଦୁର୍ବଳ ପ୍ରତି ମଧ୍ୟ ମାର୍କ୍ସବାଦ-ଲେନିନ୍‌ବାଦ ଶକ୍ତିର ଏକ ଉତ୍ସ, ଅଟଳ ରାଜନୈତିକ ନୀତିର ଉତ୍ସ । ତାହା ଦ୍ୱିଧାହୀନ ଆଦର୍ଶଗତ ଦୃଢ଼ତା ସଞ୍ଚାର କରି ମଣିଷକୁ ସମସ୍ତ ପ୍ରକାର କଠୋର ପରୀକ୍ଷା ଉତ୍ତୀର୍ଣ୍ଣ ହେବାରେ ସମର୍ଥ କରିଥାଏ ।

ପୃଥିବୀର ପ୍ରତ୍ୟେକ କୋଣରେ କୋଟି କୋଟି ମାନବ ସେମାନଙ୍କ ଆନ୍ଦୋଳନର ମହାନ୍ ଆଦର୍ଶ ଏଥିରୁ ଗ୍ରହଣ କରିଛନ୍ତି; ଉକ୍ତ ଆଦର୍ଶକୁ ଜୀବନରେ କାର୍ଯ୍ୟକାରୀ କରିବା ଦିଗରେ ଆବଶ୍ୟକୀୟ ଅସୀମ ଶକ୍ତି ସେଇ ସୃଜନଶୀଳ ଉତ୍ସ ମଧ୍ୟରୁ ଆହରଣ କରିଛନ୍ତି ।

ଏକ ପ୍ରଗତିଶୀଳ ବିଶ୍ୱ-ଦୃଷ୍ଟିଭଙ୍ଗୀବିହୀନ ଜୀବନ ! ଏହା କ'ଣ କୌଣସି ବୁଦ୍ଧିମାନ୍ ଲୋକ ଆଜି ସ୍ୱୀକାର କରିପାରିବ ? ବିଶ୍ୱଦୃଷ୍ଟିଭଙ୍ଗୀ ପରିବର୍ତ୍ତେ ହୀନ ନିକୃଷ୍ଟ ନୀତିକୁ ସନ୍ତୋଷ ଦେଉଥିବା ଏକ କଦର୍ଯ୍ୟ ପ୍ରତିକଳ୍ପ ଉପରେ ନିର୍ଭର କରିବା ତା'ଠାରୁ ଅଧିକ ମାରାତ୍ମକ ।

ମାର୍କ୍ସବାଦ-ଲେନିନ୍‌ବାଦର ମୂଳତତ୍ତ୍ୱକୁ ସମ୍ପୂର୍ଣ୍ଣ ଆୟତ୍ତ କରିବା ଦିଗରେ ଆବଶ୍ୟକୀୟ ଉଦ୍ୟମ କରିବା ଏବଂ ସେଥିପାଇଁ ମାନବସମାଜର ସାମ୍ରାଜ୍ୟବାଦୀ ଶତ୍ରୁମାନଙ୍କ (dark) ପ୍ରତିକ୍ରିୟାଶୀଳଶକ୍ତି-ବିରୋଧୀ ସଂଗ୍ରାମରେ ପ୍ରୟୋଜନୀୟ ନୈତିକ ସମ୍ପଦ ଓ ଉତ୍କର୍ଷ ଅର୍ଜନ କରିବା ଏସବୁ ଦୃଷ୍ଟିରୁ ଆଜି ସହସ୍ର ଗୁଣ ଶ୍ରେୟସ୍କର ।

# ପ୍ରଥମ ଭାଗ

# ମାର୍କ୍‌ସବାଦୀ-ଲେନିନବାଦୀ ବିଶ୍ୱଦୃଷ୍ଟିଭଙ୍ଗୀର ଦାର୍ଶନିକ ମୂଳ ଭିତ୍ତି

## ପ୍ରଥମ ଅଧ୍ୟାୟ

## ଦାର୍ଶନିକ ବସ୍ତୁବାଦ

ମାର୍କ୍‌ସବାଦ-ଲେନିନ୍‌ବାଦ ସୌଧର ଅବିନଶ୍ୱର ଭିତ୍ତି ହେଉଛି ତା'ର ଦର୍ଶନ---ଦ୍ୱନ୍ଦ୍ୱମୂଳକ ଓ ଐତିହାସିକ ବସ୍ତୁବାଦ ।

ଏଇ ଦର୍ଶନ, ଜଗତ ଯେଉଁଭଳି ବିଦ୍ୟମାନ ତାକୁ ସେଇପରି ଗ୍ରହଣ କରେ, ସାମାଜିକ ବ୍ୟାବହାରିକ କର୍ମ ଓ ପ୍ରଗତିଶୀଳ ବିଜ୍ଞାନଲବ୍ଧ ତଥ୍ୟ ଦୃଷ୍ଟିରୁ ଅବଲୋକନ କରେ । ବହୁଶତାବ୍ଦୀଲବ୍ଧ ବୈଜ୍ଞାନିକ ଜ୍ଞାନର ଯୁକ୍ତିଯୁକ୍ତ ଫଳ ହେଉଛି ମାର୍କ୍‌ସବାଦୀ ବସ୍ତୁବାଦୀ ଦର୍ଶନ ।

### (୧) ଅଜ୍ଞତା ଓ ପ୍ରତିକ୍ରିୟା-ବିରୋଧୀ ସଂଗ୍ରାମରେ ପ୍ରଗତିଶୀଳ ବସ୍ତୁବାଦୀ ବିଜ୍ଞାନର ବିକାଶ

ବିଜ୍ଞାନର ଇତିହାସ, ଅଜ୍ଞତା ଓ ଅନ୍ଧବିଶ୍ୱାସ ବିରୁଦ୍ଧରେ, ରାଜନୈତିକ ଓ ଆଦର୍ଶଗତ ପ୍ରତିକ୍ରିୟା ବିରୁଦ୍ଧରେ ପ୍ରଗତିଶୀଳ ବୈଜ୍ଞାନିକ ଓ ଦାର୍ଶନିକମାନଙ୍କର ଅବିଶ୍ରାନ୍ତ ସଂଗ୍ରାମ ଦ୍ୱାରା ଲିପିବଦ୍ଧ ହୋଇଛି । ପ୍ରତ୍ୟେକ ଶୋଷକ ଶ୍ରେଣୀସମାଜରେ ପ୍ରତିକ୍ରିୟାଶୀଳ ସାମାଜିକ ଶ୍ରେଣୀ ଅଛନ୍ତି । ପ୍ରଗତିଶୀଳ ବୈଜ୍ଞାନିକ ମତର ପ୍ରସାର ଦ୍ୱାରା ସେମାନେ କ୍ଷତିଗ୍ରସ୍ତ ହେବା ସୁନିଶ୍ଚିତ । ଅତୀତ କାଳରେ ସେମାନେ କେଉଁଠି କେଉଁଠି ସିଧାସଳଖ ବିଜ୍ଞାନର ବିରୋଧ କରିଛନ୍ତି ଏବଂ ପ୍ରଗତିଶୀଳ ବୈଜ୍ଞାନିକ ଓ ଦାର୍ଶନିକମାନଙ୍କୁ ନିର୍ଯ୍ୟାତିତ କରିଛନ୍ତି । ଏପରିକି, ସେମାନଙ୍କୁ କାରାରୁଦ୍ଧ କରିବନ୍ତ ଅବା ଯୂପକାଷ୍ଠରେ ଦଗ୍ଧ କରିଛନ୍ତି । ଅନ୍ୟ କେଉଁଠି ସେମାନଙ୍କର ବୈଜ୍ଞାନିକ ଆବିଷ୍କାରକୁ ଏପରି ବିକୃତ ଓ କଦର୍ଥ କରିବାକୁ ଉଦ୍ୟମ କରନ୍ତି ଯେଉଁଥିରେ ତାହାର ପ୍ରଗତିଶୀଳ ବସ୍ତୁବାଦୀ ତାତ୍ପର୍ଯ୍ୟ ବିନଷ୍ଟ ହୋଇଯିବ ।

ପ୍ରାଚୀନ ଗ୍ରୀସ ଦେଶରେ ପ୍ରତିକ୍ରିୟାଶୀଳ ସମ୍ଭ୍ରାନ୍ତ ଲୋକେ ବସ୍ତୁବାଦୀ ଦାର୍ଶନିକ ଡିମୋକ୍ରିଟିସ୍‌ଙ୍କ ରଚନାବଳୀକୁ ଧ୍ୱଂସ କରିଦେଇଥିଲେ । କାରଣ, ଡିମୋକ୍ରିଟିସ୍ ଥିଲେ ବସ୍ତୁର ଆଣବିକ ତତ୍ତ୍ୱର ପ୍ରତିଷ୍ଠାତା, ଆଉ ସେ ପ୍ରକୃତି ଓ ମନୁଷ୍ୟର ବିଷୟ ବ୍ୟାପାରରେ ଐଶ୍ୱରିକ ହସ୍ତକ୍ଷେପକୁ ଅସ୍ୱୀକାର କରୁଥିଲେ । ଅନ୍ୟ ଜଣେ ବସ୍ତୁବାଦୀ ଦାର୍ଶନିକ ଅଙ୍ଗଗୋରସଙ୍କୁ ଏଥେନସ୍‌ରୁ ନିର୍ବାସିତ କରାଯାଇଥିଲା । କାରଣ ସେ ଥିଲେ ନାସ୍ତିକ ।

ଡିମୋକ୍ରିଟିସ୍‌ଙ୍କ ଶିଷ୍ୟ, ପ୍ରାଚୀନ ଗ୍ରୀସର ବସ୍ତୁବାଦୀ ଦାର୍ଶନିକ ଏପିକରସ୍, ଭଗବାନଙ୍କ ଭୟରୁ ମନୁଷ୍ୟକୁ ମୁକ୍ତ ଦେଇଥିବା ହେତୁ ଓ ବିଜ୍ଞାନର ସତ୍ୟତା ପ୍ରାଚାର କରୁଥିବା ଯୋଗୁଁ ଯେ ପ୍ରାଚୀନ ସଭ୍ୟଜାତିମାନଙ୍କ ଭକ୍ତିଭାଜନ ହୋଇଥିଲେ, ତାଙ୍କୁ ଧର୍ମଯାଜକମାନେ ଦୁଇହଜାର ବର୍ଷକାଳ ଅଭିଶାପଯୁକ୍ତ କରି ରଖିଥିଲେ । ତାଙ୍କ ବିରୋଧରେ ମିଥ୍ୟାରୋପ ସେମାନେ କରିଥିଲେ ଯେ ସେ ନୈତିକତାର ଶତ୍ରୁ ଓ ପାପାଚାରର ପ୍ରଚାରକ ।

ଆଲେକଜାଣ୍ଡ୍ରିଆର ସୁପ୍ରସିଦ୍ଧ ପାଠାଗାର, ଯାହା ଅତି ପ୍ରାଚୀନ ଲେଖକ ଓ ବୈଜ୍ଞାନିକମାନଙ୍କ ସାତ ଲକ୍ଷ ଗ୍ରନ୍ଥର ଆଧାର ଥିଲା, ତାହାକୁ ୩୯୧ ଖ୍ରୀଷ୍ଟାବ୍ଦରେ ଖ୍ରୀଷ୍ଟିଆନ ଧର୍ମଯାଜକମାନେ ପୋଡ଼ି ପାଉଁଶ କରିଦେଇଥିଲେ । ଧର୍ମମୁକ୍ତ ବିଦ୍ୟା ଓ ବିଜ୍ଞାନର ଅନ୍ୟତମ ଉତ୍କଟ ଶତ୍ରୁ ପୋପ୍ ପ୍ରଥମ ଗ୍ରେଗରି (୫୯୦-୬୦୪) ପ୍ରାଚୀନ ଲେଖକଙ୍କ କୃତ ବହୁ ମୂଲ୍ୟବାନ ଗ୍ରନ୍ଥ, ବିଶେଷତଃ ବସ୍ତୁବାଦୀ ଦାର୍ଶନିକମାନଙ୍କର ଗ୍ରନ୍ଥସବୁ ଧ୍ୱଂସ କରିଦେଇଥିଲେ ।

କ୍ୟାଥଲିକ୍ ଗୀର୍ଜାର ବିରୋଧୀ ସମସ୍ତ ମତକୁ ଦମନ କରିବା ପାଇଁ ପୋପଶାସନ ଯେଉଁ 'ଇନକୁଇଜିଶନ' (ବିରୋଧୀ ଧର୍ମମତର ଦଳନ ଉଦ୍ଦେଶ୍ୟରେ ଗଠିତ ବିଚାରାଳୟ) ଆବିଷ୍କାର କଲା ତାହା ସମସ୍ତ ପ୍ରଗତିଶୀଳ ଚିନ୍ତାନାୟକମାନଙ୍କୁ ଅତି ବର୍ବର ଭାବରେ ନିର୍ଯାତିତ କରିଥିଲା । ୧୬୦୦ ଖ୍ରୀ: ରେ, ଏଇ 'ଇନକୁଇଜିଶନ'ର ଆଦେଶରେ, କପରନିକସ୍ ମତବାଦର ସମର୍ଥକ ଦାର୍ଶନିକ ଓ ବୈଜ୍ଞାନିକଶିରୋମଣି ଜିଓର୍ଡାନୋ ବ୍ରୁନୋଙ୍କୁ ଯୂପକାଷ୍ଠରେ ଜୀବନ୍ତ ଦଗ୍ଧ କରାଯାଇଥିଲା । ୧୬୧୯ ରେ ଅପର ଏକ ମହାନ୍ ଚିନ୍ତାଶୀଳ ବ୍ୟକ୍ତି ଲୁସିଲିଓ ଭାନିନିଙ୍କୁ ଫ୍ରାନ୍ସର ତୁଲୋ ସହରରେ ହତ୍ୟା କରାଯାଇଥିଲା । 'ଇନକୁଇଜିଶନ'ର ନିର୍ଦ୍ଦେଶରେ ତାଙ୍କ ଜିହ୍ୱାକୁ ଓଟାରି ଛିଣ୍ଡାଇ ଦିଆହୋଇଥିଲା, ଆଉ ଅବଶେଷରେ ତାଙ୍କୁ ଯୂପକାଷ୍ଠରେ ଦଗ୍ଧ କରାଗଲା । ଏଇ 'ଇନକୁଇଜିଶନ' ଇଟାଲିର ବିଖ୍ୟାତ ଜ୍ୟୋତିର୍ବିଦ୍ ଗାଲିଲିଓଙ୍କୁ, ଯେ କି କପରନିକସ୍ ତତ୍ତ୍ୱର ପ୍ରଧାନ ବାର୍ତ୍ତାବହ ଥିଲେ, ତାଙ୍କୁ ତାଙ୍କର ମତ ପରିହାର କରିବାକୁ ବାଧ୍ୟ କରିଥିଲେ । 'ଜ୍ଞାନାଲୋକ' ( ଏନ୍‌ଲାଇଟନ୍‌ମେଣ୍ଟ୍ ) ଯୁଗର ଫରାସି ଦାର୍ଶନିକ

ଭଲଟେୟାରଙ୍କୁ ବାଷ୍ଟାଇଲ ଦୁର୍ଗରେ ବନ୍ଦୀ କରାହୋଇଥିଲା । ଆଉ ଜଣେ ଅଷ୍ଟାଦଶ ଶତାବ୍ଦୀର ଫରାସି ବସ୍ତୁବାଦୀ ବୈଜ୍ଞାନିକ ଡିଡେରୋଟଙ୍କୁ ମଧ୍ୟ କାରାକକ୍ଷରେ ନିକ୍ଷେପ କରାଯାଇଥିଲା ।

ବିଜ୍ଞାନ ବିରୁଦ୍ଧରେ ପ୍ରତିକ୍ରିୟାଶୀଳମାନଙ୍କର ସଂଗ୍ରାମ କେବଳ ପ୍ରାଚୀନ ବା ମଧ୍ୟଯୁଗରେ ସୀମାବଦ୍ଧ ଥିଲା ବୋଲି ଭାବିବା ଭୁଲ ହେବ । ଏବେ ପୁଞ୍ଜିବାଦୀ ଯୁଗରେ ମଧ୍ୟ ସେ ଅଭିଯାନ ଚାଲିଛି । ଗଣିତ, ପଦାର୍ଥ ବିଜ୍ଞାନ ଓ ରସାୟନ ଶାସ୍ତ୍ର ଆଦି ଯାହା ଯାହା ସବୁ ଯନ୍ତ୍ରବିଦ୍ୟାର ପ୍ରସାର ସହିତ ପ୍ରତ୍ୟକ୍ଷଭାବେ ଜଡ଼ିତ ସେ ସମସ୍ତ ପ୍ରାକୃତିକ ବିଜ୍ଞାନର ଉନ୍ନତିରେ ପୁଞ୍ଜିବାଦୀ ଶ୍ରେଣୀ ଆଗ୍ରହୀ । ଅଥଚ ବସ୍ତୁବାଦୀ ଦର୍ଶନ, ବୈଜ୍ଞାନିକ ବିଶ୍ୱଦୃଷ୍ଟିଭଙ୍ଗୀର ପ୍ରସାରରେ ସେ ଆଦୌ ଆଗ୍ରହଶୀଳ ନୁହେ, ଯଦିଓ ତାହାହିଁ ବାସ୍ତବତାକୁ ନିର୍ଭୁଲଭାବେ ଉପଲବ୍ଧି କରିବା ଲାଗି ମନୁଷ୍ୟକୁ ସମର୍ଥ କରେ ; ପୁଣି, ତଦନୁଯାୟୀ ନିଜର କାର୍ଯ୍ୟକ୍ରମରେ କିପରି କ୍ରିୟାଶୀଳ ହେବାକୁ ହେବ ତାହା ବୁଝିବା ନିମନ୍ତେ ମଧ୍ୟ ମନୁଷ୍ୟ ସକ୍ଷମ ହୁଏ ।

ଠିକ୍ ସେହି ହେତୁରୁ ବୁର୍ଜୁଆ ମତାଦର୍ଶବାଦୀମାନେ, ବୈଜ୍ଞାନିକ ଆବିଷ୍କାରରୁ ବସ୍ତୁବାଦୀ ଓ ନାସ୍ତିକତାର ସିଦ୍ଧାନ୍ତରେ ଜନସାଧାରଣ ଯେପରି ଉପନୀତ ନ ହେବେ ସେ ଦିଗରେ ଯଥାସମ୍ଭବ ଚେଷ୍ଟା କରିଥାନ୍ତି । ଏହାର କାରଣ, ତାଙ୍କ ବିଚାରରେ, ସେ ପ୍ରକାର ସିଦ୍ଧାନ୍ତ ପୁଞ୍ଜିବାଦର ଆଧିପତ୍ୟ ପ୍ରତି ବିପଜ୍ଜନକ ।

ମାର୍କ୍ସବାଦ-ଲେନିନବାଦ ଏବଂ ତା'ର ଦର୍ଶନ — ଦ୍ୱନ୍ଦ୍ୱମୂଳକ ଓ ଐତିହାସିକ ବସ୍ତୁବାଦ — ପ୍ରତିକ୍ରିୟାଶୀଳ ବୁର୍ଜୁଆମାନଙ୍କ ପକ୍ଷରେ ବିଶେଷ ଘୃଣ୍ୟ । ସତକୁ ସତ, ବୁର୍ଜୁଆ ପ୍ରଫେସରଙ୍କର ଗୋଟାଏ ସେନାବାହିନୀ ମାର୍କ୍ସବାଦ "ଖଣ୍ଡନ" କାର୍ଯ୍ୟରେ ବିଶେଷଜ୍ଞ ସାଜିଛନ୍ତି ।

ଏହା ଅବଶ୍ୟ ସତ୍ୟ ଯେ ଆମ ଯୁଗର ପ୍ରତିକ୍ରିୟାଶୀଳ ବୁର୍ଜୁଆମାନେ ଯୂପକାଷ୍ଠର ଅଗ୍ନିରେ ପ୍ରଗତିଶୀଳ ବୈଜ୍ଞାନିକ ଓ ଦାର୍ଶନିକମାନଙ୍କୁ ଦଗ୍‌ଧ କରୁନାହାନ୍ତି । ତେବେ ସେମାନଙ୍କ ଉପରେ ଚାପ ପକାଇବାର ଅନ୍ୟାନ୍ୟ କୌଶଳ ତାଙ୍କ ହାତରେ ରହିଚି । ଦୃଷ୍ଟାନ୍ତସ୍ୱରୂପ, ବିଶ୍ୱବିଦ୍ୟାଳୟ ଓ ବୈଜ୍ଞାନିକ ସଂସ୍ଥାମାନଙ୍କରୁ ସେମାନଙ୍କୁ ବିତାଡ଼ନ କରିବା, ସେମାନଙ୍କର ଗ୍ରନ୍ଥପ୍ରକାଶନରୁ ସେମାନଙ୍କୁ କାର୍ଯ୍ୟତଃ ବଞ୍ଚିତ କରିବା ତଥା ନୈତିକ ଓ ରାଜନୈତିକଭାବେ ସେମାନଙ୍କ ଦୁର୍ନାମ କରିବା ଇତ୍ୟାଦି । "ବିପଦପୂର୍ଣ୍ଣ ଚିନ୍ତାଧାରା"କୁ ପ୍ରତିହତ କରିବାର ଏଇସବୁ ଉପାୟ ଆଜିକାଲି ଆମେରିକା ଓ ଅନ୍ୟାନ୍ୟ ବହୁଦେଶରେ ବ୍ୟାପକଭାବେ ପ୍ରୟୋଗ କରାଯାଉଛି । ଏଇ ଉପାୟରେ, ଆଉ ପ୍ରତିକ୍ରିୟାଶୀଳ ମତବାଦର ପ୍ରଚାର ଦ୍ୱାରା, ଶାସକଶ୍ରେଣୀ ଲୋକଙ୍କର ମନକୁ "ଗଢ଼େ", ସେମାନଙ୍କ ଭିତରେ, ନିଜେ ସେମାନଙ୍କ ପାଇଁ ଉପଯୁକ୍ତ ବିବେଚୁଥିବା ଧାରଣା ଭର୍ତ୍ତି କରେ ଏବଂ ପ୍ରଗତିଶୀଳ ବସ୍ତୁବାଦୀ ମତବାଦର ପ୍ରସାରକୁ ବାଧା ଦିଏ ।

କିନ୍ତୁ ବିଜ୍ଞାନ ଓ ବସ୍ତୁବାଦୀ ଦର୍ଶନର ପଥ କଣ୍ଟକିତ ହୋଇଥିଲେହେଁ ଏବଂ ଶୋଷକସମାଜରେ ତାହା ବହୁ ବାଧାବିପଦର ସମ୍ମୁଖୀନ ହେଲେ ସୁଦ୍ଧା, ଅବଶେଷରେ ସମସ୍ତ ପ୍ରତିବନ୍ଧକକୁ ଅତିକ୍ରମ କରିବାକୁ ଓ ଦୃଢ଼ତାର ସହିତ ଅଗ୍ରସର ହେବାପାଇଁ ଏହା ସମର୍ଥ ହୁଏ । ପ୍ରଗତିଶୀଳ ବସ୍ତୁବାଦୀ ବିଜ୍ଞାନ ଓ ଦର୍ଶନର ଶକ୍ତି ଏଥିରୁ ଯେ ତାହା ପ୍ରକୃତି ଓ ସମାଜର ନିୟମକୁ ଉଦ୍‌ଘାଟିତ କରେ, ମାନବସମାଜର ସ୍ୱାର୍ଥ ଦୃଷ୍ଟିରୁ ସେହି ନିୟମକୁ ପ୍ରୟୋଗ କରିବାର ଶିକ୍ଷା ଦିଏ, ଏବଂ ପ୍ରକୃତ ଜ୍ଞାନର ଆଲୋକରେ ଅଜ୍ଞାନ ଅନ୍ଧକାରକୁ ବିନାଶ କରେ ।

## (୨) ବସ୍ତୁବାଦ ଓ ଭାବବାଦ

ଦର୍ଶନଶାସ୍ତ୍ର ବିଶ୍ୱଦୃଷ୍ଟିଭଙ୍ଗୀର ଅତି ସାଧାରଣ ବୈଶିଷ୍ଟ୍ୟଗୁଡ଼ିକର ଚର୍ଚ୍ଚା କରେ ।

ଚନ୍ଦ୍ରସୂର୍ଯ୍ୟ, ଗ୍ରହତାରା, ସାଗରପର୍ବତ, ବନଉପତ୍ୟକା, ଜୀବଜନ୍ତୁ ଏବଂ ଚିନ୍ତା କରିବାକୁ ସକ୍ଷମ ଓ ଚେତନାଯୁକ୍ତ ମାନବ—ପ୍ରକୃତିର ଏହି ସକଳ ଅସ୍ତିତ୍ୱକୁ ସ୍ୱୀକାର କରିବାର ଭିତ୍ତି ଉପରେ ବସ୍ତୁବାଦୀ ଦର୍ଶନ ପ୍ରତିଷ୍ଠିତ । କୌଣସି ଅପ୍ରାକୃତ ପ୍ରପଞ୍ଚ ବା ଶକ୍ତି ନାହିଁ ବା ରହି ନ ପାରେ । ବହୁରୂପବିଶିଷ୍ଟ ପ୍ରକୃତିର ମନୁଷ୍ୟ ଏକ କଣା ମାତ୍ର । ଚେତନା ହେଉଛି ତା'ର ଏକ ଗୁଣ, ଏକ ମୌଳିକ ମାନସଶକ୍ତି । ପ୍ରକୃତିର ଅସ୍ତିତ୍ୱ ବସ୍ତୁଗତ, ବାସ୍ତବ ; ତାହା ମାନବମନର ବାହାରେ, ତା'ଠାରୁ ସ୍ୱତନ୍ତ୍ର ।

କିନ୍ତୁ ଦାର୍ଶନିକ ଅଛନ୍ତି, ଯେଉଁମାନେ ଏହାକୁ ଅସ୍ୱୀକାର କରନ୍ତି । ସେମାନଙ୍କର ଦାବୀ ଯେ କେବଳ ମନ, ଚିନ୍ତା, ଚେତନା, ଆତ୍ମା ବା ଭାବ ହେଉଛି ସର୍ବପ୍ରଥମ, ମୌଳିକ ; ଆଉ ଏହି ଭୌତିକ ବିଶ୍ୱ ସେହି ଚେତନା ବା ଆତ୍ମାରୁ ନିଃସୃତ, ତା'ରି ଉପରେ ନିର୍ଭରଶୀଳ ।

ଆଧୁନିକ ଯୁଗର ଦର୍ଶନ ସମେତ ସକଳ ଦର୍ଶନର ମୌଳିକ ସମସ୍ୟା ହେଉଛି ଭୌତିକ ସତ୍ତା ସହିତ ମାନବମନର ସମ୍ପର୍କ ପ୍ରଶ୍ନ । ଏ ଦୁହିଁଙ୍କ ମଧ୍ୟରେ କେଉଁଟି ଆଗ ? ସତ୍ତା ନା ଚିନ୍ତା ? ଏହି ପ୍ରଶ୍ନର ଉତ୍ତରକୁ ନେଇ ଦାର୍ଶନିକମାନେ ଦୁଇଟି ବୃହତ୍ତ ଶିବିରରେ ବିଭକ୍ତ ।

ଯେଉଁମାନେ ଭାବନ୍ତି ଯେ ଭୌତିକ ଭିତ୍ତି—ପ୍ରକୃତି ହେଉଛି ପ୍ରଥମ ଓ ମୌଳିକ ଏବଂ ଚିନ୍ତା ଓ ଆତ୍ମା ସେହି ବସ୍ତୁର ଏକ ଗୁଣ, ସେମାନେ ସମସ୍ତେ ବସ୍ତୁବାଦୀ ଶିବିରଭୁକ୍ତ । ଯେଉଁମାନଙ୍କ ବିଚାର ଅନୁସାରେ ଚିନ୍ତା, ଆତ୍ମା ବା ଭାବ ପ୍ରକୃତି ପୂର୍ବରୁ ବିଦ୍ୟମାନ ଏବଂ ଏହି ପ୍ରକୃତି କୌଣସି ନା କୌଣସି ଭାବରେ ସେହି

ଆତ୍ମାର ସୃଷ୍ଟି ତଥା ତାହା ଉପରେ ନିର୍ଭରଶୀଳ, ସେମାନେ ଭାବବାଦୀ ଶିବିରର ଅନ୍ତର୍ଭୁକ୍ତ । "ଭାବବାଦ" ଓ "ବସ୍ତୁବାଦ"—ଏହି ପଦମାନଙ୍କର ଏହାହିଁ ଏକମାତ୍ର ଦାର୍ଶନିକ ଅର୍ଥ ।

ଅତି ପ୍ରାଚୀନ କାଳରୁ ଭାବବାଦୀ ଓ ବସ୍ତୁବାଦୀ ମତର ସମର୍ଥକମାନଙ୍କ ମଧ୍ୟରେ ଅବିଶ୍ରାନ୍ତ ସଂଘର୍ଷ ଚାଲିଆସିଛି । ବସ୍ତୁତଃ ଦର୍ଶନର ଇତିହାସ ହିଁ ହେଉଛି, ଭାବବାଦ ଓ ବସ୍ତୁବାଦ—ଏହି ଦୁଇ ଦଳ, ଦୁଇ ଶିବିର ମଧ୍ୟରେ ସଂଗ୍ରାମର ଇତିହାସ ।

## ସ୍ୱତଃସ୍ଫୂର୍ତ୍ତ ବସ୍ତୁବାଦ

ମନୁଷ୍ୟର ଚତୁର୍ଦ୍ଦିଗରେ ଯେଉଁ ସକଳ ବସ୍ତୁ ଏବଂ ପ୍ରକୃତିର ଯେଉଁ ପ୍ରପଞ୍ଚ ବିଦ୍ୟମାନ ସେ ସମସ୍ତ ଯେ ମନୁଷ୍ୟର ଚେତନାଠାରୁ ଭିନ୍ନ, ସ୍ୱତନ୍ତ୍ର, ଏ ବିଷୟରେ ଆପଣାର ଦୈନନ୍ଦିନ କର୍ମ ଭିତରେ ମନୁଷ୍ୟ ମନରେ ସଂଶୟ ଆସେ ନା । ତା ଅର୍ଥ, ମନୁଷ୍ୟ ସ୍ୱତଃସ୍ଫୂର୍ତ୍ତଭାବେ ବସ୍ତୁବାଦୀ ଦୃଷ୍ଟିଭଙ୍ଗୀକୁ ଗ୍ରହଣ କରିଥାଏ ।

ଲେନିନ ଲେଖିଛନ୍ତି ଯେ "ପାଗଳା ଗାରଦରେ ଯିଏ ନାହିଁ କିମ୍ବା କୌଣସି ଭାବବାଦୀ ଦାର୍ଶନିକର ଶିଷ୍ୟତ୍ୱ ଯିଏ ଗ୍ରହଣ କରିନାହିଁ ସେଭଳି ସୁସ୍ଥ ମନୁଷ୍ୟର" ସ୍ୱତଃସ୍ଫୂର୍ତ୍ତ ବସ୍ତୁବାଦର "ବାହାରେ ପଦାର୍ଥ, ପରିବେଶ ଓ ପୃଥିବୀ ଆମର ସଂବେଦନ, ଆମ ଚେତନାଠାରୁ, ଆମର ଆତ୍ମସତ୍ତାଠାରୁ, ଏପରିକି ସାଧାରଣଭାବେ ମନୁଷ୍ୟଠାରୁ ସ୍ୱତନ୍ତ୍ରଭାବେ ବିଦ୍ୟମାନ ।"

ମନୁଷ୍ୟ କେବଳ ଭାବ ଆଉ ଧାରଣା ଦ୍ୱାରା ବଞ୍ଚିପାରେ ନାହିଁ, କିମ୍ବା ତା'ର ନିଜର ସଂବେଦନ ଉପରେ ତିଷ୍ଠି ନ ପାରେ; ଏ ସମସ୍ତ ତା'ର କଳ୍ପନାପ୍ରସୂତ । କାର୍ଯ୍ୟକ୍ଷେତ୍ରରେ ସମସ୍ତେ ଏହା ଭଲକରି ବୁଝନ୍ତି । ଏପରିକି ଯେଉଁ ଦାର୍ଶନିକମାନେ ଭାବ, ଧାରଣା ଏବଂ ସଂବେଦନରୁ ଭୌତିକ ପଦାର୍ଥର ଉତ୍ପତ୍ତି ବୋଲି ଅନୁମାନ କରି ଭାବବାଦୀ ତତ୍ତ୍ୱମାନ ଅବିଷ୍କାର କରିଥାନ୍ତି ସେମାନଙ୍କୁ ମଧ୍ୟ ଏହା ଭଲରୂପେ ଜଣା ଅଛି । ବାରମ୍ବାର ସେମାନଙ୍କୁ ଏହା ସ୍ୱୀକାର କରିବାକୁ ହୋଇଛି ଯେ ନିଜ ଦର୍ଶନକୁ ସେମାନେ ନିଜେ ଅସ୍ୱୀକାର କରି ବଞ୍ଚନ୍ତି; ଆଉ ଜଗତରେ ଯଦି ଭୌତିକ ପଦାର୍ଥ ନ ଥାନ୍ତା, ତେବେ ଜନସାଧାରଣ ଅନାହାରରେ ପ୍ରାଣତ୍ୟାଗ କରନ୍ତେ ।

ଏହି ସ୍ୱତଃସ୍ଫୂର୍ତ୍ତ ଅଚେତନ ବସ୍ତୁବାଦ, ବହୁ ଅଧିକସଂଖ୍ୟକ ପ୍ରକୃତି-ବିଜ୍ଞାନୀଙ୍କର ଗୋଟାଏ ବୈଶିଷ୍ଟ୍ୟ । ସେମାନେ ସାଧାରଣତଃ ଦାର୍ଶନିକ ସମସ୍ୟାବଳୀର ଗଭୀର ଅନୁଧ୍ୟାନ କରନ୍ତି ନାହିଁ; ଯେଉଁସବୁ ବୈଜ୍ଞାନିକ ତଥ୍ୟାବଳୀ ସେମାନେ ଆଲୋଚନା କରନ୍ତି, ତା'ର ଯୁକ୍ତିକୁ ସେମାନେ ସ୍ୱତଃସ୍ଫୂର୍ତ୍ତଭାବେ ଅନୁସରଣ କରିଥାନ୍ତି । ତାଙ୍କର ଗବେଷଣାର ବିଷୟବସ୍ତୁ ହେଲା ପ୍ରକୃତି । ସେମାନେ ଅନୁସନ୍ଧାନ କରୁଥିବା

ପ୍ରପଞ୍ଚର ଭୌତିକତାକୁ ତାହା ପଦେ ପଦେ ପ୍ରକାଶ କରେ । ଅନ୍ତରୀକ୍ଷର ଗ୍ରହତାରା କିମ୍ବା ଅତି କ୍ଷୁଦ୍ରତମ କଣା, ଅଣୁ ପରମାଣୁ, ବିଦ୍ୟୁତ୍ ଅଥବା ଚୁମ୍ବକ, ଉଦ୍ଭିଦ ବା ଜୀବଜଗତ—ତାଙ୍କର ଅନୁସନ୍ଧାନର କ୍ଷେତ୍ର ଯାହା ହେଉ ନା କାହିଁକି, ବୈଜ୍ଞାନିକମାନେ ସଦା ସର୍ବଦା ବସ୍ତୁଗତ ପ୍ରକ୍ରିୟା, ଭୌତିକ ପଦାର୍ଥ ଏବଂ ସେମାନଙ୍କ ଗୁଣରେ ଆଲୋଚନା କରନ୍ତି ଏବଂ ମନୁଷ୍ୟର ମନ ବା ଚେତନାଠାରୁ ସ୍ୱାଧୀନ ସ୍ୱତନ୍ତ୍ରଭାବେ ବିଦ୍ୟମାନ ପ୍ରକୃତିର ନିୟମକୁ ଆଲୋଚନା କରିଥାନ୍ତି ।

ବୁର୍ଜୁଆ ସମାଜରେ ସବୁଠାରୁ ଦୃଢ଼ ଓ ନିର୍ଭୀକ ବୈଜ୍ଞାନିକମାନେ ହିଁ ନିଜକୁ ଦାର୍ଶନିକ ବସ୍ତୁବାଦର ଅନୁଗାମୀ ବୋଲି ପ୍ରକାଶ୍ୟରେ ଘୋଷଣା କରିଥାନ୍ତି । ଅଧିକାଂଶ ବୈଜ୍ଞାନିକ ସରକାରୀ ବୁର୍ଜୁଆ ମତବାଦ, ଗୀର୍ଜା, ମଠମନ୍ଦିର, ଭାବବାଦୀ ଦର୍ଶନ ତଥା ଅନ୍ୟାନ୍ୟ ପ୍ରପଞ୍ଚଜନିତ ପରିସ୍ଥିତି ଦ୍ୱାରା ଏପରି ଚାପିହୋଇ ରହିଛନ୍ତି ଯେ ସେମାନେ ବସ୍ତୁବାଦ ସହିତ ଖୋଲଖୋଲି ଆପଣାକୁ ସାମିଲ କରିବାକୁ ଭୟ କରନ୍ତି, ସେମାନେ ଦ୍ୱିଧାଗ୍ରସ୍ତ ରହନ୍ତି, ଅଧିକାଂଶ କ୍ଷେତ୍ରରେ ଭାବବାଦୀ ବିବୃତିମାନ ଦାଖନ୍ତି ଅଥବା ଆପଣା ମନୋଭାବକୁ ଚାପି ରଖନ୍ତି । ତେବେ ତାଙ୍କର ବୈଜ୍ଞାନିକ ଅଧ୍ୟୟନରେ, ବିଷୟବସ୍ତୁର ପ୍ରକୃତ ଚରିତ୍ରଦ୍ୱାରା ପ୍ରଭାବିତ ହୋଇ, ଯାହା ମୌଳିକଭାବେ ବସ୍ତୁବାଦୀ ସେଇଭଳି ମତ ପ୍ରକାଶ କରିବାକୁ ସେମାନେ ବାଧ୍ୟ ହୁଅନ୍ତି ।

ଏ ସମ୍ପର୍କରେ ଊନବିଂଶ ଶତାବ୍ଦୀର ଇଂରେଜ ପ୍ରକୃତିବାଦୀ ଟି. ଏଚ. ହକ୍ସ୍‌ଲିଙ୍କର ଦୃଷ୍ଟାନ୍ତ ରହିଛି । ସେ ନିଜକୁ ବସ୍ତୁବାଦୀ ବୋଲି ମାନୁ ନ ଥିଲେ । ଅଥଚ ପ୍ରାଣୀବିଜ୍ଞାନ, ତୁଳନାତ୍ମକ ଶରୀରବିଜ୍ଞାନ, ନୃତତ୍ତ୍ୱ ଏବଂ ବିବର୍ତ୍ତନର ଅନୁଧ୍ୟାନ ସମୟରେ ସେ ବସ୍ତୁବାଦୀ ମତକୁ ସମର୍ଥନ କରିଛନ୍ତି । ତାଙ୍କ ମତରେ ଦାର୍ଶନିକ ଭାବବାଦ କେବଳ ବିଭ୍ରାନ୍ତି ଓ ଅଜ୍ଞାନ ଅନ୍ଧକାର ଭିତରକୁ ନେଇଯାଏ । ଏଙ୍ଗେଲ୍‌ସ୍ ଏପ୍ରକାର ବୈଜ୍ଞାନିକମାନଙ୍କୁ ‘ଲଜ୍ଜାଶୀଳ ବସ୍ତୁବାଦୀ’ ବୋଲି ଅଭିହିତ କରିଥିଲେ । ଆଉ ଲେନିନ କହିଥିଲେ ଯେ ହକ୍ସ୍‌ଲିଙ୍କର ବସ୍ତୁବାଦବିରୋଧୀ ନୀରବତା, ତାଙ୍କର ପ୍ରତ୍ୟକ୍ଷ ଭିତ୍ତି ପ୍ରାକୃତ-ବୈଜ୍ଞାନିକ ବସ୍ତୁବାଦକୁ ଢାଙ୍କିବାର ଏକ ଆବରଣ ମାତ୍ର ।

ଅନେକ ସମୟରେ, ଆଧୁନିକ ପ୍ରକୃତିବିଜ୍ଞାନୀମାନେ ଆପଣାର ବୈଜ୍ଞାନିକ ଆବିଷ୍କାରର ଗୋଟାଏ ଦାର୍ଶନିକ ବ୍ୟାଖ୍ୟା କରିବାର ଉଦ୍ୟମ କରିଛନ୍ତି । ଯେଉଁମାନେ ଏହା କରିଛନ୍ତି ସେମାନେ ଭାବବାଦୀ ସିଦ୍ଧାନ୍ତରେ ଉପନୀତ ହୋଇଛନ୍ତି । କିନ୍ତୁ ଯେ ପର୍ଯ୍ୟନ୍ତ ସେମାନେ ବିଜ୍ଞାନ କ୍ଷେତ୍ରରେ ଅଛନ୍ତି, ଗବେଷଣାଗାର, କଳକାରଖାନା କିମ୍ବା ପରୀକ୍ଷାମୂଳକ କୃଷିଫାର୍ମର ବ୍ୟାବହାରିକ କର୍ମମଧ୍ୟରେ ଲିପ୍ତ ରହିଛନ୍ତି, ଯେଉଁ ପର୍ଯ୍ୟନ୍ତ ସେମାନେ ଦାର୍ଶନିକ ତତ୍ତ୍ୱ ବଖାଣିବାରେ ବ୍ୟସ୍ତ ନ ରହି ପ୍ରାକୃତିକ ପ୍ରପଞ୍ଚର ଗବେଷଣାରେ ଆତ୍ମନିୟୋଗ କରିଛନ୍ତି, ସେ ପର୍ଯ୍ୟନ୍ତ ସେମାନେ ସ୍ୱତଃସ୍ଫୂର୍ତ୍ତ ବସ୍ତୁବାଦୀଙ୍କ ଭଳି କାର୍ଯ୍ୟ କରିଥାନ୍ତି ।

ଆମ ସମୟର ସର୍ବଶ୍ରେଷ୍ଠ ପଦାର୍ଥବିଜ୍ଞାନୀଙ୍କ ଭିତରୁ ଜଣେ ହେଉଛନ୍ତି ଆଲବର୍ଟ ଆଇନଷ୍ଟାଇନ୍ । ତାଙ୍କର କେତେକ ଦାର୍ଶନିକ ଧାରଣା ଭାବବାଦ ଦ୍ୱାରା ପ୍ରଭାବିତ । କିନ୍ତୁ ବିଜ୍ଞାନକ୍ଷେତ୍ରରେ ସେ ତାଙ୍କର ଆପେକ୍ଷିକ ତତ୍ତ୍ୱ ଲାଗି ପ୍ରସିଦ୍ଧ, ଯେଉଁ ତତ୍ତ୍ୱର ଅନ୍ତର୍ନିହିତ ବିଷୟବସ୍ତୁ ହେଉଛି ବସ୍ତୁବାଦୀ ।

ଆଉ ଜଣେ ସୁବିଖ୍ୟାତ ବୈଜ୍ଞାନିକ ହେଉଛନ୍ତି ମାକ୍ସ ପ୍ଲାଙ୍କ୍, ଆଧୁନିକ କ୍ୱାଣ୍ଟମ୍ (quantum) ପଦାର୍ଥବିଜ୍ଞାନ ତତ୍ତ୍ୱର ପ୍ରତିଷ୍ଠାତା । ଯଦ୍ୟପି ସେ ମଧ୍ୟ ନିଜକୁ ବସ୍ତୁବାଦୀ ବୋଲି କହୁନାହାନ୍ତି ତଥାପି ପଦାର୍ଥବିଜ୍ଞାନ ଓ ଦର୍ଶନକ୍ଷେତ୍ରରେ ନିଜ କ୍ରିୟାକଳାପ ମାଧ୍ୟମରେ ସେ ଏକ "ସୁସ୍ଥ ବିଶ୍ୱଦୃଷ୍ଟିଭଙ୍ଗୀ"ର ସମର୍ଥକ । ଏହା ପ୍ରକୃତିର ଅସ୍ତିତ୍ୱକୁ ମନୁଷ୍ୟର ମନ ଓ ଚେତନାଠାରୁ ସ୍ୱତନ୍ତ୍ର ଓ ସ୍ୱାଧୀନଭାବେ ସ୍ୱୀକାର କରେ । ପ୍ଲାଙ୍କ ଦାର୍ଶନିକ ଭାବବାଦକୁ ଖଣ୍ଡନ କରିଥିଲେ । ନାମତଃ ନ ହେଲେ ବି କାର୍ଯ୍ୟତଃ ସେ ଜଣେ ବସ୍ତୁବାଦୀ ।

ତେବେ ବିଜ୍ଞାନ ସମ୍ପର୍କରେ ଭାବବାଦ ବିଜ୍ଞାନୀର ବୈଜ୍ଞାନିକ ତଥ୍ୟର ବ୍ୟାଖ୍ୟା ଉପରେ ପ୍ରତିକୂଳ ପ୍ରଭାବ ପକାଏ । ଏଥିରୁ ପରିଷ୍କାର ଜଣାଯାଏ ଯେ ସ୍ୱତଃସ୍ଫୂର୍ତ୍ତି ବସ୍ତୁବାଦ, ଭାବବାଦ ବିରୁଦ୍ଧରେ ଆବଶ୍ୟକୀୟ ପ୍ରତିରକ୍ଷାର କବଚ ନୁହେଁ । କେବଳ ଚେତନାଶୀଳଭାବେ ଦ୍ୱନ୍ଦ୍ୱମୂଳକ ବସ୍ତୁବାଦକୁ ଗ୍ରହଣ କରିବାହିଁ ହେଉଛି ଭାବବାଦୀ ପ୍ରମାଦ ବିରୁଦ୍ଧରେ ରକ୍ଷାକବଚ ।

## ବସ୍ତୁବାଦ—ଏକ ପ୍ରଗତିଶୀଳ ଦର୍ଶନ

ଦାର୍ଶନିକ ବସ୍ତୁବାଦ, ପ୍ରଗତିଶୀଳ ବିଜ୍ଞାନ ଓ ସାମାଜିକ ବ୍ୟାବହାରିକ କର୍ମ ଉପରେ ପର୍ଯ୍ୟବସିତ ବସ୍ତୁବାଦୀ ଧାରଣାକୁ ବୈଜ୍ଞାନିକ ଭାବେ ପ୍ରତିପାଦିତ କରେ, ତା'ର ସମ୍ପ୍ରସାରଣ କରେ ଏବଂ ଦୃଢ଼ ପ୍ରୟୋଗ କରି ଚାଲିଥାଏ । ସ୍ୱତଃସ୍ଫୂର୍ତ୍ତି ବା ସାଦାସିଧା ବସ୍ତୁବାଦ ତାହା କରେ ନା ।

ବସ୍ତୁବାଦୀ ଦର୍ଶନ ଆଧ୍ୟାତ୍ମିକ ପ୍ରତିକ୍ରିୟାର ଅନିଷ୍ଟକର ପ୍ରଭାବ ବିରୁଦ୍ଧରେ ଏକ ଫଳପ୍ରଦ ଅସ୍ତ୍ର । ମନୁଷ୍ୟର ମନକୁ ଆଲୋଡ଼ିତ କରୁଥିବା ଦାର୍ଶନିକ ସମସ୍ୟା ସମାଧାନର ମାର୍ଗ ପ୍ରଦର୍ଶନ ଦିଗରେ ତାହା ଜୀବନବ୍ୟାପୀ ଏକ ନିର୍ଦ୍ଦେଶିକା ଯୋଗାଇଥାଏ ।

ଜନସାଧାରଣଙ୍କ ଭିତରେ ଈଶ୍ୱରଙ୍କ ପ୍ରତି ଭୀତି ଏବଂ ପାର୍ଥିବ ଜୀବନ ପ୍ରତି ବିତୃଷ୍ଣା ଓ ତାଚ୍ଛିଲ୍ୟ ସୃଷ୍ଟି କରିବାରେ ଗୀର୍ଜା ଓ ଧର୍ମପ୍ରଚାରକମାନେ ଯୁଗ ଯୁଗ ଧରି ଚେଷ୍ଟା କରିଛନ୍ତି । ଜନସାଧାରଣଙ୍କୁ, ବିଶେଷତଃ ଅତ୍ୟାଚାରିତ ମାନବସମାଜକୁ ସେମାନେ ଶିକ୍ଷା ଦେଇଆସନ୍ତି ଯେ, ତାଙ୍କର ଭାଗ୍ୟର ଲିଖନ ହେଉଛି ଖଟିବା ଓ ଭଗବାନଙ୍କ

ଆରାଧନା କରିବା, ପୁଣି 'ଅଶ୍ରୁର ଏ ସନ୍ତପ୍ତ ସାଗର'ରେ ସୁଖ ଅପ୍ରାପ୍ୟ, ଅତଏବ ବାଧ୍ୟ ଓ ବଞ୍ଚିତ ରହିଲେହିଁ ତା'ର ପୁରସ୍କାରସ୍ୱରୂପ କେବଳ ପରଲୋକରେ ସୁଖ ମିଳିପାରେ । ଭଗବାନଙ୍କ ଦ୍ୱାରା ପ୍ରତିଷ୍ଠିତ ଶୋଷକଶ୍ରେଣୀର ଶାସନ ବିରୁଦ୍ଧରେ ଯେଉଁମାନେ ବିଦ୍ରୋହ କରିବାର ଔଦ୍ଧତ୍ୟ କରନ୍ତି ସେମାନଙ୍କ ପ୍ରତି ଭଗବାନଙ୍କ କ୍ରୋଧ ଓ ନର୍କଯନ୍ତ୍ରଣାର ଧମକ ଧର୍ମାଧୀଶମାନେ ଦେଇଥାନ୍ତି ।

ବସ୍ତୁବାଦୀ ଦର୍ଶନର ଏହା ଏକ ବିରାଟ ଐତିହାସିକ ଅବଦାନ ଯେ ତାହା ମନୁଷ୍ୟକୁ ସକଳ ଅନ୍ଧବିଶ୍ୱାସରୁ ମୁକ୍ତି ପାଇବାରେ ସାହାଯ୍ୟ କରିଛି । ଅତି ପ୍ରାଚୀନ କାଳରୁ ମନୁଷ୍ୟ ପ୍ରତି ତା'ର ଶିକ୍ଷା ହେଲା—ମୃତ୍ୟୁକୁ ଭୟ କର ନାହିଁ, ଦେବାଦେବୀଙ୍କୁ ଡର ନାହିଁ, ଅନ୍ୟାନ୍ୟ ଅପ୍ରାକୃତ ଶକ୍ତିକୁ ଭୟ କର ନାହିଁ ।

ଆମ ପ୍ରତି ତା'ର ଶିକ୍ଷା ହେଲା—ମୃତ୍ୟୁ ପରେ ସୁଖର ଆଶା ରଖ ନାହିଁ, ଏହି ପୃଥିବୀରେହିଁ ଜୀବନକୁ ଆଦର କରି ଶିଖ ଓ ତାକୁ ଉନ୍ନତ କରିବାର ଉଦ୍ୟମ କର । ସର୍ବପ୍ରଥମେ ବସ୍ତୁବାଦହିଁ ମନୁଷ୍ୟକୁ ତା'ର ବିଚାରଶକ୍ତି ଓ ମାନବିକ ମର୍ଯ୍ୟାଦାବୋଧ ଉପଲବ୍ଧି କରିବାକୁ ଶିଖାଇଲା । ତାହା ଘୋଷଣା କଲା ଯେ ମନୁଷ୍ୟ, କୀଟ ଭଳି ଧୂଳିରେ ଘୁରି ବୁଲିବା ପାଇଁ ଅଭିଶପ୍ତ ନୁହେଁ । ସେ ହେଉଛି ପ୍ରକୃତିର ସର୍ବଶ୍ରେଷ୍ଠ ସୃଷ୍ଟି; ପ୍ରକୃତିର ଶକ୍ତିକୁ ଆୟତ୍ତ କରି, ତାକୁ ନିଜର ସେବାରେ ନିୟୋଗ କରିବାରେ ସେ ସମର୍ଥ ।

ମନୁଷ୍ୟର ବିଚାରବୁଦ୍ଧି, ତା'ର ଜ୍ଞାନର ଶକ୍ତି, ତାକୁ ବେଢ଼ି ରହିଥିବା ବିଶ୍ୱ-ବ୍ରହ୍ମାଣ୍ଡର ସମସ୍ତ ଗୂଢ଼ ରହସ୍ୟ ଭେଦ କରିବାରେ ତା'ର ସାମର୍ଥ୍ୟ ଏବଂ ଯୁକ୍ତି ଓ ନ୍ୟାୟ ଉପରେ ପ୍ରତିଷ୍ଠିତ ଏକ ସାମାଜିକ ବ୍ୟବସ୍ଥା ଗଠନ—ଏସବୁ ପ୍ରତି ଗଭୀର ବିଶ୍ୱାସରେ ବସ୍ତୁବାଦ ପରିପ୍ଳୁତ ।

ଅନେକ ସମୟରେ ଭାବବାଦୀମାନେ ବସ୍ତୁବାଦକୁ ମନୁଷ୍ୟଜୀବନର ଏକ "ଅଶୁଭ, ଦୁରାଶାମୟ ଓ ଦୁଃସ୍ୱପ୍ନକାତରୀୟ" ଦୃଷ୍ଟିଭଙ୍ଗୀରୂପେ ବର୍ଣ୍ଣନା କରି ତା'ର ଅପବାଦ ରଟନା କରନ୍ତି । ( ଉଇଲିୟମ ଜେମ୍ସ )

ଅଥଚ ପ୍ରକୃତରେ ଭାବବାଦହିଁ, ବିଶେଷରୂପେ ତା'ର ପରବର୍ତ୍ତୀ ଯୁଗର ପରିଚୟ, ଏକ ନିରାଶାବାଦୀର ଦର୍ଶନ । ବସ୍ତୁବାଦ ନୁହେଁ, ଭାବବାଦହିଁ ମନୁଷ୍ୟର ଜ୍ଞାନ ଆହରଣ ଶକ୍ତିକୁ ଅସ୍ୱୀକାର କରେ, ବିଜ୍ଞାନ ପ୍ରତି ସନ୍ଦେହ, ଅବିଶ୍ୱାସ ପ୍ରଚାର କରେ । ବସ୍ତୁବାଦ ନୁହେଁ, ଭାବବାଦହିଁ ମୃତ୍ୟୁର ପୂଜା ଉପାସନାକୁ ଉଚ୍ଛ୍ୱସିତ ପ୍ରଶଂସା କରିଥାଏ । ଜାତି ବର୍ଣ୍ଣବୈଷମ୍ୟ ତତ୍ତ୍ୱ ଏବଂ ଫାସିଷ୍ଟ ସଂସ୍କୃତି-ଦ୍ରୋହ—ମାନବିକତା ବିରୋଧୀ ଏଇ ଅତି ଘୃଣ୍ୟ ଭାବଧାରାର ଉଦ୍‌ଭବ ଓ ପ୍ରକାଶ ଦିଗରେ ଭାବବାଦ ସଦାସର୍ବଦା ଉର୍ବର କ୍ଷେତ୍ର ହୋଇଆସିଛି ।

ଦାର୍ଶନିକ ଭାବବାଦ ବାହ୍ୟ ଭୌତିକ ଜଗତର ବାସ୍ତବତାକୁ ସ୍ୱୀକାର କରେ ନାହିଁ, ତାକୁ ଖଣ୍ଡନ କରେ ; ଅବାସ୍ତବ ବୋଲି ଘୋଷଣା କରେ ; ଆଉ ତା ପରିବର୍ତ୍ତେ ଏକ କାଳ୍ପନିକ ଅଣଭୌତିକ ଜଗତକୁ ଆଣି ଥୁଏ ।

ଅନ୍ୟ ପକ୍ଷରେ ବସ୍ତୁବାଦ ଆତ୍ମା, ଭଗବାନ, ଈଶ୍ୱର ସୃଷ୍ଟିକର୍ତ୍ତା ଆଦି କୌଣସି ପ୍ରକାର ଅନାବଶ୍ୟକ ଜିନିଷ ସଂଯୋଗ ନ କରି ବିଶ୍ୱଜଗତର ଏକ ପ୍ରକୃତ ଚିତ୍ର ଦେଇଥାଏ । ବସ୍ତୁବାଦୀମାନେ ଅପ୍ରାକୃତ ଶକ୍ତିମାନଙ୍କଠାରୁ କୌଣସି ସାହାଯ୍ୟ ଆଶା କରନ୍ତି ନାହିଁ । ମନୁଷ୍ୟ ଉପରେହିଁ ତାଙ୍କର ଅଟଳ ଆସ୍ଥା । ମନୁଷ୍ୟ ନିଜର ଉଦ୍ୟମ ବଳରେ ଏ ଜଗତକୁ ପରିବର୍ତ୍ତନ କରିବ ଓ ତାକୁ ମନୁଷ୍ୟୋପଯୋଗୀ-ଭାବେ ନିର୍ମାଣ କରିବ, ଏହା ଉପରେ ସେମାନଙ୍କର ପୂର୍ଣ୍ଣ ବିଶ୍ୱାସ ।

ବସ୍ତୁବାଦର ସାର କଥା ବା ନିର୍ଯ୍ୟାସ ହେଲା ଯେ ତାହା ଆଶାବାଦୀ ; ଜୀବନର ଜୟଜୟକାର କରୁଥିବା ଏକ ଜ୍ୱଳନ୍ତ ଦର୍ଶନ । ସେଥିରେ ନିରାଶାବାଦର ସ୍ଥାନ ଆଦୌ ନାହିଁ । ସେଥିନିମିତ୍ତ, ସଚରାଚର ଏହା ପ୍ରଗତିଶୀଳ ସାମାଜିକ ଗୋଷ୍ଠୀର ଓ ଶ୍ରେଣୀମାନଙ୍କର ବିଶ୍ୱଦୃଷ୍ଟିଭଙ୍ଗୀ ।

ତେଣୁ ତା'ର ସମର୍ଥକମାନେ ନିର୍ଭୟରେ ବହୁଦୂରକୁ ଦେଖନ୍ତି ; ଆପଣା ଆଦର୍ଶର ଯୌକ୍ତିକତା ବିଷୟରେ ସେମାନେ ଆଦୌ ସଂଶୟାକୁଳ ହୁଅନ୍ତି ନାହିଁ ।

ଭାବବାଦର ସମର୍ଥକମାନେ ଏକଥା କହି ବସ୍ତୁବାଦର କୁତ୍ସା ପ୍ରଚାରର ଚେଷ୍ଟା ସର୍ବଦା କରିଆସିଛନ୍ତି ଯେ ବସ୍ତୁବାଦୀଙ୍କର ନୈତିକ ମୂଲ୍ୟବୋଧ ଏବଂ ଉଚ୍ଚ ଆଦର୍ଶ ନାହିଁ ; ଭାବବାଦୀ ଦର୍ଶନର ସମର୍ଥକମାନେ ହିଁ କେବଳ ତହିଁର ଅଧିକାରୀ । କିନ୍ତୁ ପ୍ରକୃତପକ୍ଷେ ପ୍ରଗତିଶୀଳ ଭାବଧାରା, ନୈତିକ ନୀତିନିୟମ ଓ ଉଚ୍ଚ ଆଦର୍ଶକୁ ପ୍ରତ୍ୟାଖ୍ୟାନ କରିବା ପରିବର୍ତ୍ତେ, ମାର୍କ୍ସ ଓ ଏଙ୍ଗେଲ୍ସଙ୍କର ଦ୍ୱନ୍ଦ୍ୱମୂଳକ ଓ ଐତିହାସିକ ବସ୍ତୁବାଦ ତା ଉପରେ ଅଧିକ ଗୁରୁତ୍ୱ ଆରୋପ କରେ । ଏହା ମତରେ ବଳିଷ୍ଠ ସୃଜନଶୀଳ କାର୍ଯ୍ୟ ଏବଂ ସଂଗ୍ରାମ ପାଇଁ ଅନୁପ୍ରାଣିତ କରୁଥିବା ଏକ ମହାନ ଆଦର୍ଶ ବିନା, ପ୍ରଗତି ଏବଂ ଏକ ପ୍ରଗତିଶୀଳ ସାମାଜିକ ବ୍ୟବସ୍ଥା ଦିଗରେ ସଫଳ ସଂଗ୍ରାମ ସମ୍ଭବପର ନୁହେ ।

ବସ୍ତୁବାଦୀମାନେ ଉଚ୍ଚ ଆଦର୍ଶ ପ୍ରତି ଉଦାସୀନ,—ଏପରି ମୂଢ଼ ଭାବବାଦୀ ମିଥ୍ୟା ପ୍ରଚାରକୁ ଶ୍ରମିକଶ୍ରେଣୀ ଓ କମ୍ୟୁନିଷ୍ଟମାନଙ୍କର ସଂଗ୍ରାମ ସଂଶୟଶୂନ୍ୟ ଭାବରେ ଖଣ୍ଡନ କରିଥାଏ । କାରଣ, ସବୁଠାରୁ ଗରୀୟାନ ଓ ଉଚ୍ଚତମ ଆଦର୍ଶ ପାଇଁ, କମ୍ୟୁନିଜମ୍ ପାଇଁ ଏ ସଂଗ୍ରାମ, ଆଉ ଉକ୍ତ ଆଦର୍ଶ ପ୍ରତି ନିବିଡ଼ଭାବେ ଅନୁରକ୍ତ ନିର୍ଭୀକ ସୈନିକମାନଙ୍କର ବିପୁଳ ସେନାବାହିନୀ ଏହା ସୃଷ୍ଟି କରେ ।

## ଦ୍ୱନ୍ଦମୂଳକ ଓ ଐତିହାସିକ ବସ୍ତୁବାଦ—
## ଦାର୍ଶନିକ ଚିନ୍ତାଧାରାର ବିକାଶରେ ସର୍ବୋଚ୍ଚ ସ୍ତର

ଆଧୁନିକ ବସ୍ତୁବାଦ ହେଉଛି ମାର୍କ୍ସ ଏବଂ ଏଙ୍ଗେଲ୍ସଙ୍କ ସୃଷ୍ଟ ଦ୍ୱନ୍ଦମୂଳକ ଓ ଐତିହାସିକ ବସ୍ତୁବାଦ । ତାହା ଶୂନ୍ୟରୁ ଆସିନାହିଁ । ଦାର୍ଶନିକ ଚିନ୍ତାଧାରାରେ ସୁଦୀର୍ଘ ବିକାଶ ପ୍ରକ୍ରିୟାର ଶୀର୍ଷ ପରିଣତି ହିଁ ହେଉଛି ମାର୍କ୍ସ ଓ ଏଙ୍ଗେଲ୍ସଙ୍କ ଦର୍ଶନ ।

ପ୍ରାୟ ୨୫୦୦ ବର୍ଷ ତଳେ ଭାରତ, ଚୀନ ଓ ଗ୍ରୀସରେ ବସ୍ତୁବାଦୀ ଦର୍ଶନର ଅଭ୍ୟୁଦୟ ଘଟେ । ଏହି ସବୁ ଦେଶର ବସ୍ତୁବାଦୀ ଦାର୍ଶନିକ ଚିନ୍ତାଧାରା ଜନସାଧାରଣଙ୍କ ଦୈନନ୍ଦିନ ଅନୁଭୂତି ସହିତ ଏବଂ ପ୍ରକୃତି ସଂପର୍କରେ ଅତି ପ୍ରାଥମିକ ଜ୍ଞାନ ସହିତ ଘନିଷ୍ଠଭାବେ ସଂଯୁକ୍ତ । ସେତେବେଳେ ବିଜ୍ଞାନର ଅଗ୍ରୟମାରମ୍ଭ ମାତ୍ର । ତେଣୁ ବିଶ୍ୱ-ଜଗତ ସମ୍ପର୍କରେ ପ୍ରାଚୀନ ବସ୍ତୁବାଦୀ ଦାର୍ଶନିକମାନଙ୍କ ଧାରଣା ଭିତରେ ଯଦିଓ ବହୁ ଚମତ୍କାର ଅନୁମାନ-ଆଶ୍ରିତ ବିଷୟ ରହିଛି, ତଥାପି ତା'ର ଏକ ଦୃଢ଼ ବୈଜ୍ଞାନିକ ଭିତ୍ତିର ଅଭାବ ଥିଲା ଯେଉଁଥିପାଇଁ ତାହା ଅତିଶୟ ସରଳ ଅକପଟ ଅବସ୍ଥାରେ ରହିଗଲା ।

ସପ୍ତଦଶ ଓ ଅଷ୍ଟାଦଶ ଶତାବ୍ଦୀର ବସ୍ତୁବାଦ ବହୁପରିମାଣରେ ପୋଷିତ, କାରଣ, ପ୍ରକୃତିବିଜ୍ଞାନ ଏବଂ କାରିଗରି ବିଦ୍ୟାର ଅଗ୍ରଗତି ଦାର୍ଶନିକ ଚିନ୍ତାଧାରାକୁ ଉତ୍ସାହିତ କରିଥିଲା, ଉଦ୍ଦୀପନା ଯୋଗାଇଥିଲା । ତତ୍ ସଙ୍ଗେ ସଙ୍ଗେ ବସ୍ତୁବାଦୀ ଦର୍ଶନ ପ୍ରକୃତି-ବିଷୟକ ଅଧ୍ୟୟନକୁ ଉଦ୍ଦୀପନା ଦେଲା । ଦୃଷ୍ଟାନ୍ତସ୍ୱରୂପ, ସପ୍ତଦଶ ଶତାବ୍ଦୀର ଇଂରେଜ ବସ୍ତୁବାଦୀ ଦାର୍ଶନିକ ଫ୍ରାନ୍‌ସିସ୍ ବେକନ୍‌ଙ୍କର ଏହି ମତ ଯେ, ପରୀକ୍ଷାନିରୀକ୍ଷା ହେଲା ଜ୍ଞାନର ମୂଳଦୁଆ ଏବଂ ଜ୍ଞାନହିଁ ହେଉଛି ଶକ୍ତି । ପ୍ରକୃତିବିଜ୍ଞାନର ଅଗ୍ରଗତିକୁ ଏହା ଅତ୍ୟଧିକ ଉଦ୍ଦୀପନା ଯୋଗାଇଦେଲା ।

ଏହି ଯୁଗରେ ଗଣିତଶାସ୍ତ୍ରର ସର୍ବାଧିକ ଅଭିବୃଦ୍ଧି ଘଟିଥିଲା ; ଭୂଚର ଓ ମହାକାଶଗ୍ରହଙ୍କ ଗଠନବିଦ୍ୟା ସମ୍ପର୍କରେ ସବୁଠାରୁ ଅଧିକ ଅଗ୍ରଗତି ଏହି ସମୟରେ ହୋଇଥିଲା । ତାହା ବସ୍ତୁବାଦୀମାନଙ୍କର ସାଧାରଣ ଦାର୍ଶନିକ ତତ୍ତ୍ୱ ତଥା ବସ୍ତୁ ଓ ତା'ର ଗତି ସମ୍ପର୍କରେ ସେମାନଙ୍କ ଧାରଣା ଉପରେ ଆପଣାର ପ୍ରଭାବ ପକାଇଥିଲା । ପ୍ରକୃତିର ଧାରଣା ସମ୍ପର୍କରେ ବସ୍ତୁବାଦୀ ମତ ପୋଷଣ କରୁଥିବା ରେନେ ଡେସ୍‌କାର୍ଟ୍‌ସ୍‌-ଙ୍କର ପଦାର୍ଥ ବିଜ୍ଞାନ, ମନୁଷ୍ୟ ବିଷୟରେ ଇଂରେଜ ବସ୍ତୁବାଦୀ ଟମାସ୍ ହବ୍‌ସ୍‌ଙ୍କ ପ୍ରଦତ୍ତ ମନୁଷ୍ୟଗଠନର ଯାନ୍ତ୍ରିକ ତତ୍ତ୍ୱ ଏବଂ ବିଶେଷତଃ ଆଇଜାକ୍ ନିଉଟନ୍‌ଙ୍କର ଯନ୍ତ୍ରବିଦ୍ୟା—ଏସବୁ ବସ୍ତୁବାଦର ନୂତନ ସ୍ୱରୂପର ବିକାଶ ଦିଗରେ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ

କରିଥିଲ । ବସ୍ତୁବାଦୀ ଦାର୍ଶନିକମାନେ ପ୍ରକୃତିର ସମସ୍ତ ପ୍ରପଞ୍ଚ ଓ ସାମାଜିକ ଜୀବନକୁ ଯାନ୍ତ୍ରିକ ଦୃଷ୍ଟିକୋଣରୁ ବିଚାର କରୁଥିଲେ ; ଏବଂ ତା'ର ସାହାଯ୍ୟରେ ସେସବୁ ପ୍ରପଞ୍ଚର କାରଣ ନିର୍ଣ୍ଣୟର ଆଶା ପୋଷଣ କରିଥିଲେ । ତେଣୁ ତାଙ୍କର ବସ୍ତୁବାଦ ଯାନ୍ତ୍ରିକ ବସ୍ତୁବାଦ ନାମରେ ପରିଚିତ ହେଲା । ଅଷ୍ଟାଦଶ ଶତାବ୍ଦୀର ଏ ମତବାଦୀମାନେ ହେଲେ —ଇଂଲଣ୍ଡରେ ଜନ୍ ଟୋଲଣ୍ଡ ଓ ଯୋସେଫ୍ ପ୍ରିଷ୍ଟଲେ ଏବଂ ଫ୍ରାନ୍ସରେ ଯୁଲେନ୍ ଲା ମେଟ୍ରି, ପଲ ହୋଲବ୍ୟାକ୍, କ୍ଲଡ୍ ଆଡ୍ରିନ୍ ହେଲ୍ଭିଟିସ୍ ଓ ଡେନିସ୍ ଡିଡେରଟ୍ ।

ପ୍ରକୃତିବିଜ୍ଞାନ ସହିତ ସପ୍ତଦଶ ଓ ଅଷ୍ଟାଦଶ ଶତାବ୍ଦୀ ବସ୍ତୁବାଦର ଏଇ ଘନିଷ୍ଠ ଯୋଗାଯୋଗ ଥିଲା ତାହାର ବାସ୍ତବ ଦିଗ । କିନ୍ତୁ ସେଥିରେ ମଧ୍ୟ ତ୍ରୁଟି ରହିଛି । ତାହାର ତିନୋଟି ମୌଳିକ ଅକ୍ଷମତା ବା ତ୍ରୁଟି ଏଙ୍ଗେଲ୍ସ ଦର୍ଶାଇଛନ୍ତି :

ପ୍ରଥମଟି ହେଉଛି ଏହାର ଅଧିଯନ୍ତ୍ରବାଦୀ ଦୃଷ୍ଟିଭଙ୍ଗୀ । ସେକାଳରେ ଯନ୍ତ୍ରବିଦ୍ୟା, ବସ୍ତୁବାଦୀ ଦାର୍ଶନିକଙ୍କ ପାଇଁ ଏକ ଆଦର୍ଶସ୍ଥାନୀୟ ବିଜ୍ଞାନ ଥିଲା ; ତାହା ତାଙ୍କ ଦୃଷ୍ଟିର ପରିସରକୁ ସୀମାବଦ୍ଧ କରିଦେଇଥିଲା । ଜୈବିକ ପ୍ରକୃତିର ବିଶେଷତ୍ୱ ତଥା ସାମାଜିକ ଜୀବନର ନିୟମ ଓ ତା'ର ନିର୍ଦ୍ଦିଷ୍ଟ ରୂପରେଖକୁ ବୁଝିବାରେ ଅସମର୍ଥ ହୋଇ ସେମାନେ ସବୁ ପ୍ରକ୍ରିୟାକୁ ଏବଂ ସମସ୍ତ ପ୍ରକାର ଗତିକୁ ଯାନ୍ତ୍ରିକ ଗତିରେ ପରିଣତ କରିବାକୁ ଚେଷ୍ଟା କରିଥିଲେ ।

ସେମାନଙ୍କର ଦ୍ୱିତୀୟ ତ୍ରୁଟି ହେଲା ଯେ ସେମାନେ ପ୍ରାକୃତିକ ଘଟଣାବଳୀର ବିକାଶକୁ ଲକ୍ଷ୍ୟ କରୁଥିଲେ ସୁଦ୍ଧା ତାକୁ ବୁଝିବା ଓ ବୁଝାଇବାରେ ଅସମର୍ଥ ଥିଲେ । ସମଗ୍ରଭାବେ ପ୍ରକୃତି ସମ୍ପର୍କରେ ସେମାନଙ୍କର ଧାରଣା ହେଲା ଯେ ତାହା ନିତ୍ୟ, ଶାଶ୍ୱତ, ସନାତନ ; କାଳଚକ୍ରର ଏହା ଚିରନ୍ତନ ପ୍ରକ୍ରିୟା । ପ୍ରକୃତି ସମ୍ପର୍କରେ ଏହି ଦୃଷ୍ଟିଭଙ୍ଗୀକୁ ଅଧିବିଦ୍ୟା କହନ୍ତି । ଅତଏବ ଯାନ୍ତ୍ରିକ ବସ୍ତୁବାଦ ହେଉଛି ଏକ ଅଧିବିଦ୍ୟା ନୀତି ।

ପରିଶେଷରେ ମାର୍କ୍ସଙ୍କ ପୂର୍ବବର୍ତ୍ତୀ ଅନ୍ୟସବୁ ବସ୍ତୁବାଦୀଙ୍କ ଭଳି, ଏଇ ବସ୍ତୁବାଦୀମାନେ, ସାମାଜିକ ଘଟଣାବଳୀର ବ୍ୟାଖ୍ୟାକାଳରେ ବସ୍ତୁବାଦର ପ୍ରୟୋଗ କରି ପାରି ନ ଥିଲେ । ସେମାନେ ତା' ବସ୍ତୁବାଦୀ ଭିତ୍ତିକୁ ଦେଖି ପାରି ନ ଥିଲେ । ସେମାନଙ୍କ ମତରେ, ଜ୍ଞାନର ଅଗ୍ରଗତି, ସମାଜରେ ପ୍ରଚଳିତ ମତାମତ ଓ ଭାବର ପରିବର୍ତ୍ତନ ହେତୁ, ନିମ୍ନସ୍ତରରୁ ଉଚ୍ଚସ୍ତରକୁ ସମାଜର ପରିବର୍ତ୍ତନ ସମ୍ଭବପର ହେଉଛି । ତେବେ ଏପ୍ରକାର ବ୍ୟାଖ୍ୟା ହେଉଛି ଭାବବାଦୀ ବ୍ୟାଖ୍ୟା ।

ଅଧିକନ୍ତୁ, ବାସ୍ତବତାର ପରିବର୍ତ୍ତନ ଓ ସମାଜଜୀବନକୁ ନବକଳେବର ଦେବାରେ, ଜନସାଧାରଣଙ୍କର ତଥା ବିଭିନ୍ନ ଶ୍ରେଣୀର ବ୍ୟାବହାରିକ-ସମାଲୋଚନା-ମୂଳକ, ବୈପ୍ଳବିକ କାର୍ଯ୍ୟକଳାପର ଭୂମିକାକୁ ପ୍ରାକ୍-ମାର୍କ୍ସୀୟ ବସ୍ତୁବାଦୀମାନେ

ହୃଦୟଙ୍ଗମ କରି ପାରି ନ ଥିଲେ । ସାମନ୍ତବାଦୀ ବ୍ୟବସ୍ଥା ପରିବର୍ତ୍ତେ ବୁର୍ଜୁଆ ସାମାଜିକ ବ୍ୟବସ୍ଥା ପ୍ରତିଷ୍ଠା କରିବାର ଆବଶ୍ୟକତା ଉପରେ ସେମାନେ ଖୁବ୍ ଜୋର ଦେଉଥିଲେ ସତ, କିନ୍ତୁ ସେଥି ସଙ୍ଗେ ସଙ୍ଗେ ଏକ ନୂତନ ସାମାଜିକ ବ୍ୟବସ୍ଥା ଦିଗରେ ଜନସାଧାରଣଙ୍କ ସଂଗ୍ରାମକୁ ପ୍ରତ୍ୟାଖ୍ୟାନ କରୁଥିଲେ । ଗଣସଂଗ୍ରାମ ପ୍ରତି ସେମାନଙ୍କର ଭୟ ତାଙ୍କର ବୁର୍ଜୁଆ ଶ୍ରେଣୀସୁଲଭ ସୀମାବଦ୍ଧତାର ପରିଚୟ ।

ଊନବିଂଶ ଶତାବ୍ଦୀର ପ୍ରାରମ୍ଭରେ ଜର୍ମାନ ଦାର୍ଶନିକ ଲୁଡିଗ୍ ଫାର୍‌ବକ୍ ଏବଂ ବିଶେଷତଃ ରୁଷର ବୈଜ୍ଞାନିକ ଗଣତନ୍ତ୍ରବାଦୀ ଆଲେକ୍‌ଜାଣ୍ଡର ହେରଜେନ୍, ଭିସାରିଓନ ବେଲିନ୍‌ସ୍କି, ନିକୋଲାଇ ଚେରନିସେଭ୍‌ସ୍କି ଏବଂ ନିକୋଲାଇ ଡୋବ୍ରୋଲିଉ-ବୋଭ ଏଦିଗରେ ଏକ ନୂତନ ପଦକ୍ଷେପ ନେଇଥିଲେ । ଫାର୍‌ବକ୍ ତାଙ୍କର ପୂର୍ବବର୍ତ୍ତୀ ଅଷ୍ଟାଦଶ ଶତାବ୍ଦୀର ଦାର୍ଶନିକମାନଙ୍କର ଅଧିଯନ୍ତ୍ରବାଦୀ ସୀମାବଦ୍ଧ ଦୃଷ୍ଟି-ଭଙ୍ଗୀକୁ କେତେକାଂଶରେ ଅତିକ୍ରମ କରିବାରେ ସମର୍ଥ ହୋଇଥିଲେ ; ହେଲେ, ସେମାନଙ୍କର ଅନ୍ୟାନ୍ୟ ତ୍ରୁଟି ତାଙ୍କଠାରେ ଥିଲା । ପୁଣି, ତାଙ୍କର ଦର୍ଶନ ବ୍ୟାବହାରିକ ସାମାଜିକ ଓ ରାଜନୈତିକ କାର୍ଯ୍ୟକଳାପଠାରୁ ବିଚ୍ଛିନ୍ନ ହୋଇ ରହିଥିଲା । ଅନ୍ୟ ଦିଗରେ ରୁଷର ବସ୍ତୁବାଦୀମାନେ ପ୍ରକୃତି ସମ୍ପର୍କରେ ତାଙ୍କର ବସ୍ତୁବାଦୀ ଉପଲବ୍ଧିର ଦ୍ୱନ୍ଦାତ୍ମକ ତର୍କବିଦ୍ୟା ସହିତ ସମନ୍ୱୟ ସାଧନର ଚେଷ୍ଟା କରିଥିଲେ । ତାହା ତାଙ୍କର ଏକ ବିରାଟ କୃତିତ୍ୱ ।

ଆହୁ ମଧ୍ୟ ବିପ୍ଳବୀ ରୁଷୀୟ କୃଷକଶ୍ରେଣୀର ମତାଦର୍ଶବାଦୀଭାବେ ସେମାନେ ଦାର୍ଶନିକ ତତ୍ତ୍ୱ ମଧ୍ୟରେ ବାସ୍ତବ ଅବସ୍ଥାର କାରଣ ଯେ କେବଳ ଅବଗତ ହେଉଥିଲେ ସେତିକି ନୁହେଁ ; ଜନସାଧାରଣଙ୍କ କଲ୍ୟାଣ ଦୃଷ୍ଟିରୁ ବାସ୍ତବ ଅବସ୍ଥାର ସଂସ୍କାର ଆଣିବା ତଥା ତା'ର ପୁନର୍ଗଠନ କରିବାର ଉପାୟ ସେଥିରେ ସେମାନେ ଦେଖୁଥିଲେ ।

ଆଧୁନିକ ସମାଜର ସର୍ବଶ୍ରେଷ୍ଠ ବିପ୍ଳବୀ ଓ ପ୍ରଗତିଶୀଳ ଶ୍ରେଣୀ--ସର୍ବହରା ଶ୍ରେଣୀର ମହାନ ନେତା ଓ ଶିକ୍ଷାଗୁରୁ ମାର୍କ୍‌ସ୍ ଓ ଏଙ୍ଗେଲ୍‌ସଙ୍କ ଦ୍ୱାରା ପ୍ରତିଷ୍ଠିତ ଦ୍ୱନ୍ଦମୂଳକ ଓ ଐତିହାସିକ ବସ୍ତୁବାଦ ମାଧ୍ୟମରେ ବସ୍ତୁବାଦ ଏକ ନୂତନ ପର୍ଯ୍ୟାୟରେ, ତା'ର ଶୀର୍ଷତମ ପର୍ଯ୍ୟାୟରେ ପହଞ୍ଚିଛି । ଦର୍ଶନଶାସ୍ତ୍ରରେ ମାର୍କ୍‌ସ ଓ ଏଙ୍ଗେଲ୍‌ସ ସ୍ୱୀତିମତ ଏକ ବିପ୍ଳବ ସାଧନ କରିଥିଲେ ।

ସମସାମୟିକ ସାମାଜିକ ଓ ପ୍ରାକୃତିକ ବିଜ୍ଞାନର ସର୍ବଶ୍ରେଷ୍ଠ ସାଫଲ୍ୟ ସହିତ ଘନିଷ୍ଠଭାବେ ପରିଚିତ ହୋଇ ପୂର୍ବତନ ଦାର୍ଶନିକ ଚିନ୍ତାଧାରାର କ୍ରମବିକାଶ ଫଳରେ ଯାହାକିଛି ମୂଲ୍ୟବାନ ସେ ସମସ୍ତକୁ ସୃଜନଶୀଳଭାବେ ବ୍ୟାଖ୍ୟା ଓ ଅନୁଭବ କରି ମାର୍କ୍‌ସ ଓ ଏଙ୍ଗେଲ୍‌ସ ଦ୍ୱନ୍ଦମୂଳକ ଓ ଐତିହାସିକ ବସ୍ତୁବାଦ ସୃଷ୍ଟି କଲେ । ତାହା ବସ୍ତୁବାଦର ଏକ ନୂତନ ରୂପ ; ପୂର୍ବବର୍ତ୍ତୀ ଅଗ୍ରଦୂତମାନଙ୍କର ଦୋଷତ୍ରୁଟିରୁ ତାହା ମୁକ୍ତ ।

ମାର୍କସ୍‌ବାଦୀ ଦର୍ଶନରେ, ଏକ ଅଙ୍ଗଗତ ଐକ୍ୟ ଆଣିବାପାଇଁ ଦ୍ୱନ୍ଦ୍ୱାତ୍ମକ ତର୍କବିଦ୍ୟା ସହିତ ବସ୍ତୁବାଦର ସମନ୍ୱୟ ହୋଇଛି । ପୁଣି, ତାହା ବିଜ୍ଞାନର ଉଚ୍ଚତର ସ୍ତର, ପ୍ରକୃତ ବିଜ୍ଞାନର ନୂତନ ଆବିଷ୍କାରମାନଙ୍କ ଉପରେ ପ୍ରତିଷ୍ଠିତ । ତାହା ମଧ୍ୟରେ ବିଶେଷ ଗୁରୁତ୍ୱପୂର୍ଣ୍ଣ ଆବିଷ୍କାରମାନ ହେଲା—ଶକ୍ତିର ସଂରକ୍ଷଣ ଓ ରୂପାନ୍ତରର ନିୟମ, ଜୀବକୋଷର ଆବିଷ୍କାର ଏବଂ ଡାରୁଇନଙ୍କ ଦ୍ୱାରା ପ୍ରାଣୀଜଗତର ଉତ୍ପତ୍ତି-ତତ୍ତ୍ୱର ଆବିଷ୍କାର । ବିକାଶତତ୍ତ୍ୱ ପାଇଁ ତଥା ପ୍ରାକୃତିକ ପ୍ରପଞ୍ଚର ଐକ୍ୟ ଓ ସର୍ବବ୍ୟାପୀ ପାରସ୍ପରିକ ସଂପର୍କ ଲାଗି, ପ୍ରକୃତିବିଜ୍ଞାନର ସଫଳତା ଗୋଟିଏ ସଠିକ ବୈଜ୍ଞାନିକ ଭିତ୍ତି ଯୋଗାଇଦେଲା ।

ମାନବ ଓ ପ୍ରକୃତି ସମ୍ପର୍କରେ ଏକତରଫା ଯାନ୍ତ୍ରିକ ଦୃଷ୍ଟିଭଙ୍ଗୀ ପରିବର୍ତ୍ତେ ମାର୍କ୍‌ସ ଓ ଏଙ୍ଗେଲ୍‌ସ ତାଙ୍କ ବିକାଶର ତତ୍ତ୍ୱ ଉପସ୍ଥାପିତ କଲେ । ଉକ୍ତ ତତ୍ତ୍ୱ ବାସ୍ତବତାର ସମସ୍ତ କ୍ଷେତ୍ର ପ୍ରତି ପ୍ରଯୋଜ୍ୟ । ସେଥି ସଙ୍ଗେ ସଙ୍ଗେ ତାହା ପ୍ରତ୍ୟେକର ନିର୍ଦ୍ଦିଷ୍ଟ ଚରିତ୍ର ମଧ୍ୟ ବିଚାର କରେ, ଯଥା—ଅଜୈବିକ ପ୍ରକୃତି, ଜୈବିକ ଜଗତ, ସାମାଜିକ ଜୀବନ ଏବଂ ମାନବିକ ଚେତନା ।

ସର୍ବପ୍ରଥମେ ମାର୍କ୍‌ସ ଓ ଏଙ୍ଗେଲ୍‌ସ ସାମାଜିକ ଜୀବନକୁ ବୁଝିବା ଦିଗରେ ବସ୍ତୁବାଦକୁ ପ୍ରୟୋଗ କଲେ । ସେମାନେ ଭୌତିକ କ୍ରିୟାଶକ୍ତି ଓ ସାମାଜିକ ବିକାଶର ନିୟମମାନ ଆବିଷ୍କାର କଲେ । ଏହିପରିଭାବେ ସମାଜର ଇତିହାସକୁ ସେମାନେ ଏକ ବିଜ୍ଞାନରେ ରୂପାୟିତ କଲେ ।

ପରିଶେଷରେ ସେମାନେ ବସ୍ତୁବାଦୀ ଦର୍ଶନକୁ ଏକ ବିମୂର୍ତ୍ତ ତତ୍ତ୍ୱରୁ, ସମାଜକୁ ରୂପାନ୍ତରିତ କରିବାର ଏକ ଶକ୍ତିଶାଳୀ ଉପାୟରେ ପରିଣତ କଲେ ; ସମାଜବାଦ ଓ ସାମ୍ୟବାଦ ପ୍ରତିଷ୍ଠାଲାଗି ସଂଗ୍ରାମରେ ଶ୍ରମିକଶ୍ରେଣୀର ଏକ ଆଦର୍ଶଗତ ହତିଆରରେ ପରିଣତ କଲେ ।

ସବୁ ଦେଶର ଶ୍ରମଜୀବୀ ଜନସାଧାରଣଙ୍କ ମଧ୍ୟରେ ମାର୍କ୍‌ସ ଓ ଏଙ୍ଗେଲ୍‌ସଙ୍କ ଦାର୍ଶନିକ ମତବାଦ ବ୍ୟାପକ ସ୍ୱୀକୃତି ଲାଭ କରିଛି । ଏହା ହେଉଛି ଜନସାଧାରଣଙ୍କର ପ୍ରକୃତ ଦର୍ଶନ ।

## (୩) ବସ୍ତୁର ଦାର୍ଶନିକ ଧାରଣା

ମାର୍କ୍‌ସବାଦୀ ଦାର୍ଶନିକ ବସ୍ତୁବାଦରେ 'ବସ୍ତୁ' ଧାରଣାଟିକୁ ବ୍ୟାପକ ଅର୍ଥରେ ବ୍ୟବହାର କରାଯାଇଛି । ପ୍ରତ୍ୟେକ ପଦାର୍ଥ, ବାସ୍ତବରେ ଯାହାର ଅସ୍ତିତ୍ୱ ରହିଛି, ଯାହା ଆମର ମନଚୈତନ୍ୟଠାରୁ ସ୍ୱତନ୍ତ୍ର ଓ ସ୍ୱାଧୀନଭାବେ ଅବସ୍ଥିତ ଏବଂ ଆମର

ସଂବେଦନରେ ଯାହା ପ୍ରତିଫଳିତ, ତାକୁ ବସ୍ତୁ କୁହାଯାଏ । ଲେନିନ୍ ଲେଖିଛନ୍ତି, "ବସ୍ତୁ ହେଉଛି ଆମର ସଂବେଦନରେ ପ୍ରଦତ୍ତ ବସ୍ତୁସାର ବାସ୍ତବତା ।"

'ବସ୍ତୁ'—ଏହି ଧାରଣାର ବ୍ୟାପକ ଅର୍ଥ ବୁଝିବା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ପୁରାତନ ପ୍ରାକ୍-ମାର୍କ୍ସୀୟ ବସ୍ତୁବାଦୀମାନେ, ଅଧିକାଂଶ, ବସ୍ତୁ ବୋଇଲେ ଅତି କ୍ଷୁଦ୍ର କ୍ଷୁଦ୍ର କଣା, ପରମାଣୁ ଓ ରେଣୁ ବୁଝୁଥିଲେ, ଯାହାଦ୍ୱାରା ଏଇ ସମସ୍ତ ପଦାର୍ଥଗତ ପିଣ୍ଡମାନ ଗଠିତ । ଦୃଷ୍ଟାନ୍ତ ସ୍ୱରୂପ, ଡିମୋକ୍ରିଟିସ୍ ଏବଂ ଏପିକ୍ୟୁରସ୍ ବିଶ୍ୱାସ କରୁଥିଲେ ଯେ, ଏ ବିଶ୍ୱବ୍ରହ୍ମାଣ୍ଡ ପରମାଣୁର ସମଷ୍ଟି ; ଶୂନ୍ୟରେ, ମହାଶୂନ୍ୟରେ ତାହା ପରିଭ୍ରମଣ କରୁଛି ; ପଦାର୍ଥମାନ ହେଉଛନ୍ତି କେବଳ ପରମାଣୁର ସମ୍ମିଶ୍ରଣ । ପଦାର୍ଥ ଯେ ପରମାଣୁମାନଙ୍କ ଦ୍ୱାରା ନିର୍ମିତ, ଏହି ଚମତ୍କାର ଅନୁମାନକୁ ପଦାର୍ଥବିଜ୍ଞାନ ପରେ ପ୍ରମାଣିତ କରିଥିଲା । କେବଳ ଅଣୁମାନଙ୍କରେ ସୀମାବଦ୍ଧ ହୋଇ ରହିଥିବା ବସ୍ତୁର ଏ ଧାରଣା ଅତ୍ୟନ୍ତ ସୋଜାସରଳ କଥା । ଭୌତିକ ଜଗତର ଉପଲବ୍ଧି ଲାଗି ତାହା ଯଥେଷ୍ଟ ନୁହେଁ । ତଥାପି ତାହା ଊନବିଂଶ ଶତାବ୍ଦୀର ଶେଷଭାଗ ପର୍ଯ୍ୟନ୍ତ ଲାଗି ରହିଥିଲା ।

ମାର୍କ୍ସବାଦୀ ଦାର୍ଶନିକ ବସ୍ତୁବାଦରେ 'ବସ୍ତୁ' ଶବ୍ଦ, ବସ୍ତୁଗତ ବାସ୍ତବତାର ନାନା ରୂପ ଆକୃତିର ଯାବତୀୟ ପରିପ୍ରକାଶକୁ ବୁଝାଏ । ବସ୍ତୁ କେବଳ କ୍ଷୁଦ୍ର କଣାର ସମଷ୍ଟି ନୁହେଁ, ଯାହା ଦ୍ୱାରା କି ସମସ୍ତ ପଦାର୍ଥ ଗଠିତ ; ତାହା ହେଉଛି ଏଇ ସୀମାତୀତ ଅସୀମ ବିଶ୍ୱବ୍ରହ୍ମାଣ୍ଡ ମଧ୍ୟରେ ଅସୀମ ଅସଂଖ୍ୟ ବିଶ୍ୱଜଗତର ସମଷ୍ଟି, ଅନ୍ତରୀକ୍ଷୀୟ ଧୂମ ଓ ଧୂଳିର ପଟଳ, ସୂର୍ଯ୍ୟ ଓ ଗ୍ରହମାନଙ୍କ ସମେତ ଆମର ଏଇ ସୌରଜଗତ ଏବଂ ଆମର ଏଇ ପୃଥିବୀ ଓ ତନ୍ମଧ୍ୟରେ ଅବସ୍ଥିତ ଅନ୍ୟାନ୍ୟ ପଦାର୍ଥନିଚୟ । ଆହୁରି ମଧ୍ୟ ତାହା ହେଉଛି ରଶ୍ମି, ବିକିରଣ, ପଦାର୍ଥଗତ କ୍ଷେତ୍ର, ଯାହାକି ଏକ ଦେହ ବା କଣାର ନିସ୍ତାକ୍ତି ଅନ୍ୟ ଏକ ଦେହ ବା କଣାକୁ ସ୍ଥାନାନ୍ତରିତ କରେ ଏବଂ ସେମାନଙ୍କୁ ସଂଯୁକ୍ତ କରିଥାଏ, ଯଥା—ବିଦ୍ୟୁତ୍-ଚୁମ୍ବକ ଓ ପାରମାଣବିକ କ୍ଷେତ୍ର । ସଂକ୍ଷେପରେ କହିଲେ, ମନଚୈତନ୍ୟର ବାହାରେ ସ୍ୱାଧୀନ ଓ ସ୍ୱତନ୍ତ୍ରଭାବେ ବିଦ୍ୟମାନ ପ୍ରତ୍ୟେକ ପଦାର୍ଥ ବସ୍ତୁ ଧାରଣାର ଅନ୍ତର୍ଭୁକ୍ତ ।

ବସ୍ତୁସାର ବାସ୍ତବତାର ଅଧ୍ୟୟନରେ ବ୍ୟାପୃତ ଥିବା ସମସ୍ତ ବିଜ୍ଞାନ, ବସ୍ତୁକୁ, ତା'ର ବିଭିନ୍ନ ଗୁଣ ଓ ଅବସ୍ଥାକୁ ଅନୁଧ୍ୟାନ କରିଥାଏ ।

ପଦାର୍ଥବିଜ୍ଞାନ ବସ୍ତୁର ପଦାର୍ଥଗତ ଅବସ୍ଥାକୁ ବିଚାର କରେ । ଆଧୁନିକ ପଦାର୍ଥ ବିଜ୍ଞାନ ପ୍ରମାଣ କରିଛି ଯେ ପୂର୍ବତନ ଅଣୁର ଗଠନପ୍ରଣାଳୀ ଜଟିଳ ; ଅଣୁବିତ୍-ମାନେ ଯେପରି ଭାବୁଥିଲେ, ଅଣୁର ଗଠନପ୍ରଣାଳୀ ସେପରି ଆଦୌ ସରଳ ନୁହେଁ, ଅବିଭାଜ୍ୟ ଓ ଅପରିବର୍ତ୍ତନଶୀଳ କଣିକା ନୁହେଁ । ବିଜ୍ଞାନୀ ଆଉ ବି ପ୍ରମାଣ କରିଛନ୍ତି ଯେ ଅଣୁର ନିଉକ୍ଲି (nuclei) ଗୁଡ଼ିକୁ ରୂପାନ୍ତରିତ କରିବାଦ୍ୱାରା ଏକ ଉପାଦାନର

ଅଣୁକୁ ଅନ୍ୟ ଏକ ଉପାଦାନର ଅଣୁରେ ପରିଣତ କରାଯାଇପାରେ । ଦୃଷ୍ଟାନ୍ତସ୍ୱରୂପ, ଏକ ନାଇକ୍ଲିଅର୍ ଶୋଧନାଗାରରେ ୟୁରାନିଅମ୍ ପରମାଣୁକୁ ରଖିଦେଲେ ତାହା ପ୍ଲୁଟୋନିୟମ୍ ପରମାଣୁରେ ପରିଣତ ହୋଇଯିବ ।

ଏଇ ଶତାବ୍ଦୀର ପ୍ରଥମ ଭାଗରେ ପଦାର୍ଥବିଜ୍ଞାନରେ ଯେଉଁ ନୂତନ ଆବିଷ୍କାରମାନ (ରେଡିଓ, ଏକ୍ସ-ରେ ବା ରଞ୍ଜନ-ରଶ୍ମି ଆଦି) ହେଲା, ତାହା ପୂର୍ବରୁ ପ୍ରଚଳିତ ଅବିଭାଜ୍ୟ ଅଣୁତତ୍ତ୍ୱକୁ ଖଣ୍ଡନ କରିଦେଲା, ବସ୍ତୁର ଗଠନପ୍ରଣାଳୀ ସମ୍ପର୍କରେ ନୂତନ ତତ୍ତ୍ୱ ଆଣି ଦେଲା ଏବଂ ଶାସ୍ତ୍ରୀୟ ପଦାର୍ଥ ବିଜ୍ଞାନର ପୁରାତନ ଧାରଣାକୁ ଭଙ୍ଗ କଲା । ବହୁ ଭାବବାଦୀ ଦାର୍ଶନିକ ଓ ପଦାର୍ଥବିଜ୍ଞାନୀ, ଯେଉଁମାନେ ଭାବବାଦୀ ବିଭ୍ରାନ୍ତିର ଗହ୍ୱରରେ ପଡ଼ିଥିଲେ ସେମାନେ ସିଦ୍ଧାନ୍ତ କରିଦେଇଥିଲେ ଯେ ବିଜ୍ଞାନ ପ୍ରକୃତି ସମ୍ପର୍କରେ ବସ୍ତୁବାଦୀ ଧାରଣାକୁ ଖଣ୍ଡନ କରିଦେଇଛି । "ବସ୍ତୁର ବିଲୁପ୍ତି" କଥା କୁହାଗଲା । ଏଇସବୁ ବିଚାର ଅତିମାତ୍ରାରେ ପ୍ରମାଦପୂର୍ଣ୍ଣ । ମାର୍କ୍ସବାଦୀ ଦାର୍ଶନିକ ବସ୍ତୁବାଦ କେବେହେଲେ ବସ୍ତୁର ଗଠନପ୍ରଣାଳୀ ସମ୍ପର୍କରେ କୌଣସି ଏକତରଫା ତତ୍ତ୍ୱକୁ ଗ୍ରହଣ କରିନାହିଁ । ବସ୍ତୁ ଯେ "ବିଶ୍ୱବ୍ରହ୍ମାଣ୍ଡର ଅପରିବର୍ତ୍ତନୀୟ ଉପାଦାନମାନଙ୍କ ସମଷ୍ଟି" ତାହା କେବେହେଲେ ଏପରି ଧାରଣାରେ ପହଞ୍ଚିନାହିଁ । ବସ୍ତୁସାର ବାସ୍ତବତା, ମନୁଷ୍ୟ ମନର ବାହାରେ ରହିଚ ଏବଂ ତା'ର ଭିତରେ ହିଁ ତାହାର ପ୍ରତିଫଳନ— ସଦାସର୍ବଦା ବସ୍ତୁକୁ ତାହା କେବଳ ଏଇ ଗୋଟାଏ ଅର୍ଥରେ ବୁଝିଆସିଛି । ଜ୍ଞାନର ମୂଳାଧାର ସମ୍ପର୍କରେ, ବାହ୍ୟ ଜଗତ ସହିତ ଚେତନାର ସମ୍ପର୍କ ବିଷୟରେ ଭାବବାଦ ଓ ବସ୍ତୁବାଦ ପରସ୍ପରବିରୋଧୀ ମତ ପୋଷଣ କରିଥାନ୍ତି । ବସ୍ତୁବାଦ ଶିକ୍ଷା ଦିଏ ଯେ ବିଶ୍ୱଜଗତ ବସ୍ତୁସାରଭାବେ ଅବସ୍ଥିତ, ଆଉ ଚେତନା ହେଉଛି ସେଇ ବିଶ୍ୱଜଗତର ପ୍ରତିଫଳନ । ତେଣୁ ଏଇ ବସ୍ତୁସାର ଜଗତର ନାମକରଣ ଲାଗି ବସ୍ତୁ ହେଉଛି ଏକ ଦାର୍ଶନିକ ଧାରଣା । ଜଗତର ପଦାର୍ଥଗତ ଗଠନ ଏବଂ ତା'ର ପଦାର୍ଥଗତ ଉପାଦାନ ବିଷୟରେ ପଦାର୍ଥବିଜ୍ଞାନ ଅଧ୍ୟୟନ ଆଲୋଚନା କରୁଛି । ବିଜ୍ଞାନର ଅଗ୍ରଗତି ସଙ୍ଗେ ସଙ୍ଗେ ବସ୍ତୁର ପଦାର୍ଥଗତ ଗଠନପ୍ରଣାଳୀ ସମ୍ପର୍କରେ ଆମ ମତର ପରିବର୍ତ୍ତନ ଘଟୁଛି । ଏଇସବୁ ପରିବର୍ତ୍ତନ ଯେତେ ବିରାଟ ଯୁଗାନ୍ତକାରୀ ହେଲେ ବି, ଦାର୍ଶନିକ ବସ୍ତୁବାଦର ଏ ମତକୁ ବଦଳାଇ ଦେଇ ପାରିବ ନାହିଁ ଯେ—ଏକ ବସ୍ତୁସାର ଜଗତ ରହିଛି, ଆଉ ଅନ୍ୟାନ୍ୟ ବହୁ ବିଜ୍ଞାନ ଭଳି ପଦାର୍ଥବିଜ୍ଞାନ ସେଇ ବସ୍ତୁସାର ଭୌତିକ ଜଗତର ବିବରଣୀ କରିଥାଏ । "କାରଣ, ବସ୍ତୁର ଏକମାତ୍ର 'ଉପାଦାନ' ଯାହାର ସ୍ୱୀକୃତି ସହିତ ଦାର୍ଶନିକ ବସ୍ତୁବାଦ ସଂଯୁକ୍ତ ହୋଇ ରହିଛି ତାହା ହେଲା ବସ୍ତୁସାର ବାସ୍ତବତା ହେବାର ଏକ ଉପାଦାନ ଯାହାକି ଆମ ମନର ବାହାରେ ଅବସ୍ଥିତ"— ଏହା ଲେନିନ୍ ଲେଖିଛନ୍ତି ।

ବସ୍ତୁ ସମ୍ପର୍କରେ ଏହାହିଁ ହେଉଛି ଏକମାତ୍ର ନିର୍ଭୁଲ ଜ୍ଞାନ । ଏ ଜ୍ଞାନ ବସ୍ତୁକୁ କୌଣସି ଗୋଟାଏ ରୂପ ମଧ୍ୟରେ ଆବଦ୍ଧ ନ ରଖି, ଭୌତିକ ଜଗତର ସମସ୍ତ ବୈଚିତ୍ର୍ୟକୁ ଏହାର ଅନ୍ତର୍ଭୁକ୍ତ କରେ । ଯେଉଁମାନେ ଏହିପ୍ରକାର ମାର୍କ୍ସବାଦୀ ଧାରଣା ଦ୍ୱାରା ପରିଚାଳିତ, ସେମାନେ,—ପଦାର୍ଥବିଜ୍ଞାନର ନୂତନ ଆବିଷ୍କାର ଦ୍ୱାରା ଯେ ବସ୍ତୁର ବିଲୁପ୍ତି ପ୍ରମାଣିତ ହେଉଛି,—ଭାବବାଦୀ ମାନଙ୍କର ସେ ପ୍ରକାର ଦାବୀ ଦ୍ୱାରା ବିପଥଗାମୀ ହେବେ ନାହିଁ ।

ବସ୍ତୁର ସୃଷ୍ଟି ନାହିଁ କି ବିନାଶ ନାହିଁ । ତାହା ଚିରନ୍ତନ ପରିବର୍ତ୍ତନଶୀଳ । ପଦାର୍ଥଗତ ବା ରସାୟନିକ ବା ଅନ୍ୟାନ୍ୟ କୌଣସି ପ୍ରକାର ପ୍ରକ୍ରିୟା ଦ୍ୱାରା ଏହାର ଏକ ସୂକ୍ଷ୍ମ କଣାଟିକୁ ସୁଦ୍ଧା ଶୂନ୍ୟତାରେ ପରିଣତ କରାଯାଇ ନ ପାରେ ।

ଦାର୍ଶନିକ ବସ୍ତୁବାଦର ନିବନ୍ଧକୁ ପ୍ରତିପାଦିତ କରିବା ଦିଗରେ ବିଜ୍ଞାନ ଯଥେଷ୍ଟ ପ୍ରମାଣ ଯୋଗାଇଛି । ଗୋଟିଏ ଦୃଷ୍ଟାନ୍ତ ନିଆଯାଉ । ଆଧୁନିକ ପଦାର୍ଥବିଦ୍ୟା ପ୍ରମାଣ କରିଛି ଯେ ଏକ ନିର୍ଦ୍ଦିଷ୍ଟ ବ୍ୟବସ୍ଥାରେ, ପୋଜିଟ୍ରନ ଓ ଇଲେକ୍ଟ୍ରନ ଭଳି ବସ୍ତୁର କଣାର ବିଲୁପ୍ତି ଘଟି ତହିଁରୁ ଆଲୋକର ତରଙ୍ଗ ଫୋଟନସ୍ ଜାତ କରେ । କେତେକ ପଦାର୍ଥବିଜ୍ଞାନୀ ଏଇ ପ୍ରପଞ୍ଚକୁ "ବସ୍ତୁର ବିନାଶ" ବୋଲି କହିଥାନ୍ତି, ଯାହାର ଭାଷାଗତ ଅର୍ଥ ହେଉଛି ସମ୍ପୂର୍ଣ୍ଣ ଧ୍ୱଂସ, ଶୂନ୍ୟତା ବା ଅସ୍ତିତ୍ୱହୀନତାରେ ପରିଣତ ହେବା । ବସ୍ତୁର ବିଲୁପ୍ତି ସମ୍ପର୍କରେ ଏହାକୁ ଏକ ନୂତନ "ପ୍ରମାଣ"ଭାବେ ଭାବବାଦୀ ଦାର୍ଶନିକମାନେ ଉଲ୍ଲେଖ କରିଥାନ୍ତି ; କିନ୍ତୁ ପ୍ରକୃତରେ ବସ୍ତୁର ବିଲୁପ୍ତି ଘଟେ ନାହିଁ । ପୋଜିଟ୍ରନ ଓ ଇଲେକ୍ଟ୍ରନରୁ ଫୋଟନକୁ ରୂପାନ୍ତରିତ ହେବା ହେଉଛି ଏକ ଅବସ୍ଥାରୁ ଅନ୍ୟ ଏକ ଅବସ୍ଥାକୁ ବସ୍ତୁର ବିବର୍ତ୍ତନ, ଏକ ସ୍ଥୂଳ ଦେହରୁ ଆଲୋକକୁ ବିବର୍ତ୍ତନ । ଏହାର ବିପରୀତ ପ୍ରକ୍ରିୟା ମଧ୍ୟ ଏଇ ପ୍ରକୃତି ମଧ୍ୟରେ ଘଟିଥାଏ, ଯଥା : ଫୋଟନ ମଧ୍ୟ ପୋଜିଟ୍ରନ ଓ ଇଲେକ୍ଟ୍ରନ୍‌ରେ ରୂପାନ୍ତରିତ ହୋଇଥାଏ, ଅର୍ଥାତ୍ ଆଲୋକ ସ୍ଥୂଳ ବସ୍ତୁରେ ପରିବର୍ତ୍ତିତ ହୁଏ ।

ଏ ବିଶ୍ୱଜଗତରେ ବହୁ ବୈଚିତ୍ର୍ୟ, ବହୁ ଅସାଦୃଶ୍ୟର ଚିତ୍ର ମିଳେ : ଜୈବିକ ପ୍ରକୃତି, ଅଜୈବିକ ପ୍ରକୃତି, ପଦାର୍ଥଗତ ପ୍ରପଞ୍ଚ, ରସାୟନିକ ପ୍ରକ୍ରିୟା, ଉଦ୍ଭିଦ ଓ ପ୍ରାଣୀ-ଜୀବନ ଆଉ ସାମାଜିକ ଜୀବନ । ବିଜ୍ଞାନ ଓ ବସ୍ତୁବାଦୀ ଦର୍ଶନ ଏଇ ଅସାଦୃଶ୍ୟର ଅନ୍ତର୍ନିହିତ ଏକତାକୁ ପ୍ରକାଶ କରେ । ବସ୍ତୁର ବିଭିନ୍ନ ଅବସ୍ଥାର ସ୍ୱରୂପ, ତା'ର ଉପାଦାନ, ତା'ର ପରିପ୍ରକାଶର ସେଇସବୁ ଅସୀମ ବୈଚିତ୍ର୍ୟମୟ ପ୍ରକ୍ରିୟା ଓ ପ୍ରପଞ୍ଚକୁ ନେଇ ଏ ଏକତା ଗଠିତ । "ବିଶ୍ୱଜଗତର ଭୌତିକତା ମଧ୍ୟରେ ତା'ର ପ୍ରକୃତ ଏକତା ନିହିତ", ଏକଥା ଏଙ୍ଗେଲ୍‌ସ କହିଥିଲେ । ଆମେ ଏଇ ଯେଉଁ ଭୌତିକ ଜଗତରେ ବାସ କରୁଛୁ ଚେତନା ସେଇ ବସ୍ତୁ ଜଗତ ମଧ୍ୟରେ ହିଁ ନିହିତ ; ଅତଃପର, ପରଲୋକ

ବା ଅନ୍ୟ କୌଣସି ଜଗତରେ ତା'ର ସ୍ଥାନ ନାହିଁ । ଚେତନା ହେଉଛି ବସ୍ତୁର ଏକ ସ୍ୱତନ୍ତ୍ର ଉପାଦାନ । ଏ ସମସ୍ତ ବିଷୟ ମଧ୍ୟ ଏ ଏକତାର ଉପାଦାନ ।

ଧର୍ମମତ, ଯାହା ଜଗତକୁ ସ୍ୱର୍ଗ ମର୍ତ୍ତ୍ୟ ଦୁଇ ଭାଗରେ ବିଭକ୍ତ କରେ, ଦ୍ୱୈତବାଦ, ଯାହା ଦେହ ଓ ଆତ୍ମା, ଚେତନା ଓ ବସ୍ତୁକୁ ପରସ୍ପର ସହିତ ସମ୍ପର୍କ-ଶୂନ୍ୟ ବିଚ୍ଛିନ୍ନ ସତ୍ତାରୂପେ ବିଚାର କରେ, ଦାର୍ଶନିକ ଭାବବାଦ, ଯାହା ଜଗତର ଏକତାକୁ ଏକ ଆତ୍ମା ଓ ଚୈତନ୍ୟରୁ ଜାତ ବୋଲି ବିବେଚନା କରିଥାଏ, ସେଇସବୁ ଚିନ୍ତାଧାରା ବିରୁଦ୍ଧରେ ସଂଗ୍ରାମ ଭିତରେହିଁ ଭୌତିକ ଜଗତର ଏକତ୍ୱର ବିଶ୍ୱାସ ଜନ୍ମଲାଭ କରିଛି, ଶକ୍ତିଶାଳୀ ଓ ଦୃଢ଼ୀଭୂତ ହୋଇଛି ।

## (୪) ଭୌତିକ ଜଗତର ଅସ୍ତିତ୍ୱର ବିଶ୍ୱଜନୀନ ରୂପ

### ପ୍ରକୃତିରେ ଚିରନ୍ତନ ଗତି

ପ୍ରକୃତି ଓ ସମାଜର ପୂର୍ବାପର ସ୍ଥିର, ନିଶ୍ଚଳ, ଗତିହୀନ ଓ ପରିବର୍ତ୍ତନଶୂନ୍ୟ ଅବସ୍ଥା ନାହିଁ । ଏ ବିଶ୍ୱଜଗତ ଏକ ନିରବଚ୍ଛିନ୍ନ ଗତି ଓ ପରିବର୍ତ୍ତନର ସ୍ୱରୂପ ପ୍ରକାଶ କରେ ।

ଗତି, ପରିବର୍ତ୍ତନ ଓ ବିକାଶ ହେଉଛି ବସ୍ତୁର ଏକ ଅଚ୍ଛେଦ୍ୟ ଓ ଚିରନ୍ତନ ଗୁଣ ବା ବୈଶିଷ୍ଟ୍ୟ । ଏଙ୍ଗେଲ୍ସ କହିଥିଲେ, "ଗତିହିଁ ବସ୍ତୁର ଅସ୍ତିତ୍ୱର ରୀତି; ଗତି ନ ଥାଇ ବସ୍ତୁ ରହିଛି ଏମିତି କେବେହେଲେ କେଉଁଠି ନାହିଁ କି ଘଟି ନ ପାରେ ।" ପ୍ରତ୍ୟେକ ଭୌତିକ ଦେହ, ପ୍ରତ୍ୟେକଟି ଭୌତିକ କଣା—ଅତି କ୍ଷୁଦ୍ରତମ କଣା, ଅଣୁ, ପରମାଣୁ କିମ୍ବା ତା'ର ସୂକ୍ଷ୍ମ ଅଂଶବିଶେଷ—ସେମାନେ ପ୍ରକୃତିଗତଭାବେ ଅବିଶ୍ରାନ୍ତ ଗତିଶୀଳ ଓ ପରିବର୍ତ୍ତନଶୀଳ ।

ଗତିର ଦାର୍ଶନିକ ଅବଧାରଣା ବୋଇଲେ ମହାଶୂନ୍ୟରେ ଏକ ଦେହର ଗତିଠାରୁ ଅଧିକ ବିଷୟକୁ ବୁଝାଇଥାଏ । ବସ୍ତୁର ଅସ୍ତିତ୍ୱର ପ୍ରଣାଳୀଭାବେ ତାହା ଏ ବିଶ୍ୱଜଗତରେ ଘଟୁଥିବା ସମସ୍ତ ପ୍ରକ୍ରିୟା ଓ ପରିବର୍ତ୍ତନକୁ ବୁଝାଏ । ଏଇସବୁ ପରିବର୍ତ୍ତନ ମଧ୍ୟରେ ବସ୍ତୁର ବିକାଶର ପ୍ରକ୍ରିୟା ଏକ ବିଶେଷ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥାଏ । ତାହା ହେଉଛି ଏକ ଅବସ୍ଥାରୁ ଅନ୍ୟ ଏକ ଅବସ୍ଥାକୁ , ଉଚ୍ଚତର ଅବସ୍ଥାକୁ ବସ୍ତୁର ଗତି, ଯାହାଦ୍ୱାରା ବସ୍ତୁର ନୂତନ ରୂପ ଓ ବୈଶିଷ୍ଟ୍ୟ ପରିସ୍ଫୁଟ ହୁଏ ।

ବିଶ୍ୱଜଗତରେ କୌଣସି ଚିରସ୍ଥାୟୀ ଅଚଞ୍ଚଳ ବଦ୍ଧମୂଳ ପଦାର୍ଥ ନାହିଁ । ପଦାର୍ଥମାନ ଅଛନ୍ତି, ଯାହାଙ୍କର ପରିବର୍ତ୍ତନ ପ୍ରକ୍ରିୟା ରହିଛି । ତା' ଅର୍ଥ, କୌଣସିଠାରେ ପରିପୂର୍ଣ୍ଣ ବିଶ୍ରାମ ବା ଚରମ ସ୍ଥିରତା ନାହିଁ । ଏପରି ଅବସ୍ଥା ନାହିଁ ଯେଉଁଠି କି ଗତିକୁ ବାଦ ଦିଆଯାଇପାରେ । ବିଶ୍ରାମ କେବଳ ଏକ ଆପେକ୍ଷିକ ବିଷୟ । ପୃଥିବୀପୃଷ୍ଠସ୍ଥିତ

କୌଣସି ନିର୍ଦ୍ଦିଷ୍ଟ ବିନ୍ଦୁ ସହିତ ସମ୍ପର୍କରେ ପଦାର୍ଥବିଶେଷ ସ୍ଥିର ରହିପାରେ । କିନ୍ତୁ ପୃଥିବୀର ଗତି ସହିତ, ସମଗ୍ର ସୌରଜଗତର ଗତି ସହିତ ଉକ୍ତ ପଦାର୍ଥ ଗତି କରେ । ପୁଣି, ଏହାର ଗଠନ-ଉପାଦାନ, ଅଣୁ ଓ ପରମାଣୁ ମଧ୍ୟ ଗତି କରୁଥାନ୍ତି । ସେଇସବୁ ଗଠନକାରୀ ଅଂଶମାନଙ୍କ ଭିତରେ ଅତ୍ୟନ୍ତ ଜଟିଳ ପ୍ରକ୍ରିୟାମାନ କାର୍ଯ୍ୟ କରୁଥାଏ । ସଂକ୍ଷେପରେ କହିଲେ, ବିଶ୍ରାମ ବା ସ୍ଥିରତା କେବଳ ଆପେକ୍ଷିକ । କେବଳ ଗତି ହେଉଛି ପରମ, ଅଖଣ୍ଡ, ବ୍ୟତିକ୍ରମବିହୀନ ।

## ବସ୍ତୁର ଗତିର ରୂପ

ବସ୍ତୁ ଯେପରି ବୈଚିତ୍ର୍ୟମୟ, ତା'ର ଗତିର ରୂପ ମଧ୍ୟ ସେହିପରି ବିଚିତ୍ର । ମହାଶୂନ୍ୟରେ ଏକ ପିଣ୍ଡର ଯାନ୍ତ୍ରିକ ଗତି ହେଲା ବସ୍ତୁର ଗତିର ସରଳତମ ରୂପ । ଅଧିକ ଜଟିଳ ରୂପ ହେଉଛି ତାପଗତ ପ୍ରକ୍ରିୟା, କ୍ଷୁଦ୍ରତମ ଅଣୁଗୁଡ଼ିକର ବିଚ୍ଛୁରିତ ଗତି ଯାହାକି ଏକ ପଦାର୍ଥଗତ ପିଣ୍ଡ ସୃଷ୍ଟି କରିଥାଏ । ଆଲୋକ, ବିଦ୍ୟୁତ୍-ଚୁମ୍ବକ ବିକିରଣ (ଇଲେକ୍ଟ୍ରୋ-ମାଗ୍ନେଟିକ୍) ଏବଂ ପଦାର୍ଥଗତ କ୍ଷେତ୍ର ଯେ ଗତିଶୀଳ ବସ୍ତୁର ଏକ ନିର୍ଦ୍ଦିଷ୍ଟ ଅବସ୍ଥା ଏହା ବିଜ୍ଞାନ ପ୍ରତିପାଦନ କରିଛି । ଗତିର ଆଉ ଏକ ରୂପ ରାସାୟନିକ ପ୍ରକ୍ରିୟା ମଧ୍ୟରେ ଦେଖାଯାଏ । ଏଥିରେ ଅଣୁ ଓ ପରମାଣୁମାନଙ୍କର ମିଶ୍ରଣ ଓ ପୁନ-ର୍ମିଶ୍ରଣ ଦ୍ୱାରା ବସ୍ତୁର ରୂପାନ୍ତର ଘଟିଥାଏ । ଜୈବ ପ୍ରକୃତିର ପ୍ରାଣ, ଉଦ୍ଭିଦ ଓ ପ୍ରାଣୀଜଗତର ଶାରୀରିକ ପ୍ରକ୍ରିୟା, ଜୀବଜନ୍ତୁଙ୍କର ବିବର୍ତ୍ତନ—ଏସବୁ ମଧ୍ୟ ବସ୍ତୁର ବିଶିଷ୍ଟ ବୈଶିଷ୍ଟ୍ୟ ବା ଗୁଣର, ଅର୍ଥାତ୍ ଗତିର ନିର୍ଦ୍ଦିଷ୍ଟ ପରିପ୍ରକାଶ ।

ଏହାଠାରୁ ଆହୁରି ଅଧିକ ଜଟିଳ ଗତି ମନୁଷ୍ୟର ସାମାଜିକ ଜୀବନରେ ଦେଖାଯାଏ । ତାହା ହେଉଛି ଭୌତିକ ଉତ୍ପାଦନର ବିକାଶ, ଅର୍ଥନୈତିକ ଜୀବନ ଆଦି ।

ନ୍ୟୁକ୍ଲିୟର ଚତୁର୍ଦ୍ଦିଗରେ ପରମାଣୁ କଣାର ଗତି, ପାରମାଣବିକ ନ୍ୟୁକ୍ଲିୟସ୍ ଅଭ୍ୟନ୍ତରରେ ଅତ୍ୟନ୍ତ ଜଟିଳ ପରିବର୍ତ୍ତନ ପ୍ରକ୍ରିୟା ଆଦି—ଗତି ମଧ୍ୟରେ ବସ୍ତୁର ରୂପକୁ, ଯାହାକି ପୂର୍ବରୁ ଅଜ୍ଞାତ ଥିଲା, ସେଇଭଳି ବହୁ ନୂତନ ନୂତନ ରୂପକୁ ବିଜ୍ଞାନମାନେ ଊନବିଂଶ ଶତାବ୍ଦୀର ଶେଷ ଭାଗରୁ ଆବିଷ୍କାର କରିଛନ୍ତି ଓ ତାକୁ ସଫଳତାର ସହିତ ଅଧ୍ୟୟନ କରିଛନ୍ତି । ବିଜ୍ଞାନ ଯେ ଗତି ମଧ୍ୟରେ ବସ୍ତୁର ଆହୁରି ଅନେକ ପ୍ରକାର ରୂପକୁ ଆବିଷ୍କାର କରିବ, ତାହା ସ୍ୱଚ୍ଛନ୍ଦରେ ଆଶା କରାଯାଇପାରେ ।

ଗତିର ବିଭିନ୍ନ ରୂପ ପରସ୍ପରଠାରୁ ବିଚ୍ଛିନ୍ନ ନୁହେ । ସେମାନେ ପରସ୍ପର ସହିତ ସଂଯୁକ୍ତ, ଏକ ଅନ୍ୟ ଏକରେ ରୂପାନ୍ତରିତ ହୋଇଥାଏ । ଏହିପରିଭାବେ ଅଣୁର ବିଶୃଙ୍ଖଳ ଗତି ଉତ୍ତାପୀୟ ପ୍ରକ୍ରିୟାକୁ ଜନ୍ମ ଦିଏ ଏବଂ ଉତ୍ତାପୀୟ ପ୍ରକ୍ରିୟା ରାସାୟନିକ ପରିବର୍ତ୍ତନ ଓ ଆଲୋକ ପ୍ରପଞ୍ଚ ସୃଷ୍ଟି କରିପାରେ । ଏଇ ରାସାୟନିକ ପ୍ରକ୍ରିୟା ତା'ର

ବିକାଶର ଏକ ନିର୍ଦ୍ଦିଷ୍ଟ ସ୍ତରରେ ତା ସହିତ ସମ୍ପୃକ୍ତ ପ୍ରୋଟିନ୍ ଓ ଏନ୍‌ଜାଇମ୍ ଗଠନ କରିଥାଏ । ତାହା ହେଉଛି ଜୀବନର ସୃଷ୍ଟିର ମୂଳଭିତ୍ତି, ଅର୍ଥାତ୍ ବସ୍ତୁ ମଧ୍ୟରେ ଗତିର ଜୈବିକ ରୂପ ।

ବସ୍ତୁର ଏକ ରୂପ ଅନ୍ୟ ଏକ ରୂପରେ ପରିଣତ ହୋଇପାରେ । ପ୍ରକୃତି-ବିଜ୍ଞାନର ମୌଳିକ ନିୟମ, ଅର୍ଥାତ୍ ଶକ୍ତିର ରୂପାନ୍ତର ଓ ସଂରକ୍ଷଣ ନିୟମରେ ତାହା ବିଶେଷରୂପେ ପରିସ୍ଫୁଟ ହୋଇଥାଏ ।

ଗତିର ବିଭିନ୍ନ ରୂପ, ବସ୍ତୁର ବିକାଶ ଓ ଜଟିଳତାର ବିଭିନ୍ନ ସ୍ତରର ଅନୁରୂପ ହୋଇଥାଏ । ନିମ୍ନ ଓ ସରଳ ରୂପସବୁ ଉଚ୍ଚତର ଓ ଅଧିକ ଜଟିଳ ରୂପର ଏକ ଅଂଶ-ବିଶେଷ ହୁଅନ୍ତି । ତଥାପି ଗତିର ବିଭିନ୍ନ ରୂପ ମଧ୍ୟରେ ଗୁଣଗତ ପାର୍ଥକ୍ୟ ରହିଛି । ଉଚ୍ଚତର ଅବସ୍ଥାକୁ ନିମ୍ନତର ରୂପକୁ ହ୍ରାସ କରାଯାଇପାରେ । ଦୃଷ୍ଟାନ୍ତସ୍ୱରୂପ, ଶରୀରତତ୍ତ୍ୱ ପ୍ରକ୍ରିୟାରେ ଯାନ୍ତ୍ରିକ ଗତି—ସେଇସବୁ ପ୍ରକ୍ରିୟାରେ ମହାଶୂନ୍ୟରେ ଉପାଦାନମାନଙ୍କର ଘଟୁଥିବା ଗତି—ନିହିତ ରହିଛି ; କିନ୍ତୁ ସେମାନେ ସେଇସବୁ ଉପାଦାନମାନଙ୍କର ଯାନ୍ତ୍ରିକ ଗତିଦ୍ୱାରା କ୍ଷୟ ପାଇଯାଆନ୍ତି ନାହିଁ, କି ସେମାନଙ୍କୁ ନିଃଶେଷ କରାଯାଇ ନ ପାରେ ।

ପ୍ରାଚୀନ ପ୍ରାକ୍-ମାର୍କ୍ସୀୟ ଯାନ୍ତ୍ରିକ ବସ୍ତୁବାଦୀମାନେ ବିଶ୍ୱାସ କରୁଥିଲେ ଯେ ପ୍ରକୃତି ଓ ମାନବସମାଜରେ ଥିବା ସମସ୍ତ ଜୀବନକୁ, ମହାଶୂନ୍ୟରେ ଗତି କରୁଥିବା କ୍ଷୁଦ୍ର କ୍ଷୁଦ୍ର କଣା ଓ ପିଣ୍ଡର ଯାନ୍ତ୍ରିକ ଗତିରେ ପରିଣତ କରିଦିଆଯାଇପାରେ । ମାର୍କସ୍-ବାଦୀ ଦାର୍ଶନିକ ବସ୍ତୁବାଦ, ସାଧାରଣ ପରିବର୍ତ୍ତନ ଭଳି, ଗତି ସମ୍ପର୍କରେ ଏକ ବ୍ୟାପକ ଦୃଷ୍ଟିଭଙ୍ଗୀ ଗ୍ରହଣ କରିବାଦ୍ୱାରା ବସ୍ତୁର ଗତି ସମ୍ପର୍କୀୟ ଅତି ସରଳ ସଂକୀର୍ଣ୍ଣ ଯାନ୍ତ୍ରିକ ଧାରଣାକୁ ଅତିକ୍ରମ କରିଥାଏ ।

## ମହାଶୂନ୍ୟ ଓ କାଳ

ବସ୍ତୁ କେବଳ ମହାଶୂନ୍ୟ ଓ କାଳ ମଧ୍ୟରେ ଗତି କରିପାରେ । ନିଜେ ମନୁଷ୍ୟ ସମେତ ସମସ୍ତ ପ୍ରକାର ଦେହ, ବସ୍ତୁନିରପେକ୍ଷଭାବେ ଅବସ୍ଥିତ ବିଶ୍ୱଜଗତରେ ଘଟୁଥିବା ସମସ୍ତ ଭୌତିକ ପ୍ରକ୍ରିୟା, ଶୂନ୍ୟ ଭିତରେ ଏକ ନିର୍ଦ୍ଦିଷ୍ଟ ସ୍ଥାନ ଗ୍ରହଣ କରିଥାଏ । ସେମାନେ, ଜଣେ ଅନ୍ୟ ଜଣଙ୍କଠାରୁ ଦୂର୍ ବା ନିକଟବର୍ତ୍ତୀ ହୋଇଥିବାର ଦେଖା-ଯାଆନ୍ତି ; ଦୂରତ୍ୱ ଦ୍ୱାରା ସେମାନେ ବିଚ୍ଛିନ୍ନ ; ଏକ ଗତିଶୀଳ ଦେହ ଏକ ନିର୍ଦ୍ଦିଷ୍ଟ ମାର୍ଗରେ ଅଗ୍ରସର ହେଉଥାଏ । ଏହାସବୁ ଭୌତିକ ପଦାର୍ଥର ଗୁଣ ଓ ପ୍ରକ୍ରିୟାମାନଙ୍କୁ ପ୍ରକାଶ କରେ, ଯାହାକି ବ୍ୟାପ୍ତି ନାମରେ ପରିଚିତ ।

ମହାଶୂନ୍ୟ ହେଉଛି ବସ୍ତୁର ଅସ୍ତିତ୍ୱର ଏକ ବିଶ୍ୱଜନୀନ ସ୍ୱାଭ । ଠିକ୍ ଯେପରି ବସ୍ତୁ ବିନା ଶୂନ୍ୟ ନାହିଁ, ଠିକ୍ ସେଇପରି ବିନାଶୂନ୍ୟରେ ବସ୍ତୁ ନାହିଁ, କି ରହି ନ ପାରେ । ଏକ ନିର୍ଦ୍ଦିଷ୍ଟ ଭୌତିକ ଦେହ ଏବଂ ସମଗ୍ର ଭୌତିକ ବିଶ୍ୱଜଗତର ବ୍ୟାପ୍ତି ମଧ୍ୟରେ ଯେଉଁ ପାର୍ଥକ୍ୟ ରହିଛି ତାହା ହେଲା, ଦେହ ସସୀମ, ସୀମାବଦ୍ଧ, ଅର୍ଥାତ୍ ତା'ର ଆରମ୍ଭ ଓ ଶେଷ ରହିଛି, ଆଉ ଭୌତିକ ବିଶ୍ୱଜଗତ ହେଲା ଅସୀମ, ସୀମାହୀନ ।

ପୃଥିବୀବକ୍ଷରେ ଆମେ ଯେଉଁସବୁ ଦୂରତ୍ୱ ସହିତ ଅଭ୍ୟସ୍ତ, ବିଶ୍ୱବ୍ରହ୍ମାଣ୍ଡରେ ଥିବା ଦୂରତ୍ୱମାନ ତାହାଠାରୁ ଅତୁଳନୀୟ ଭାବେ ବିରାଟ । ଯଦିଓ ଆଲୋକ ଏକ ସେକେଣ୍ଡରେ ୩୦୦,୦୦୦ କିଲୋମିଟର ବେଗରେ ଗତି କରେ, ତେବେ ବି ଆଧୁନିକ ଦୂରବୀକ୍ଷଣ ସାହାଯ୍ୟରେ ଦେଖାଯାଉଥିବା ନକ୍ଷତ୍ରଜଗତରୁ ଯେଉଁ ଆଲୋକ ଆସୁଛି, ତାକୁ ପୃଥିବୀରେ ପହଞ୍ଚିବା ପାଇଁ କୋଟି କୋଟି ବର୍ଷ ଲାଗିଯାଉଛି । ଏପରିକି ଏଇ ମହାନ ବିଶାଳତା, ସୀମାବଦ୍ଧ ଥାଇ ସୁଦ୍ଧା, ବିଶ୍ୱବ୍ରହ୍ମାଣ୍ଡର ବିଶାଳତା—ଯାହା କି ଅସୀମ, ସୀମାହୀନ—ସେ ସମ୍ପର୍କରେ ଆମକୁ ପ୍ରକୃତ ଚିତ୍ର ଦିଏନାହିଁ । ତା'ର ଅସୀମତ୍ୱ କଳ୍ପନାର ସୀମା ବହିର୍ଭୂତ ; ତାହା କେବଳ ଏକ ବୈଜ୍ଞାନିକ ଧାରଣାଭାବେ ପ୍ରକାଶ ପାଏ ।

ଅବସ୍ଥିତ ସମସ୍ତ ପଦାର୍ଥଗତ ଦେହ ଏବଂ ମନୁଷ୍ୟର ନିଜର ମଧ୍ୟ ଗୋଟାଏ ଜୀବନ—ମିନିଟ, ଘଣ୍ଟା, ଦିନ, ବର୍ଷ ଇତ୍ୟାଦି—ଗୋଟାଏ ଜୀବନକାଳ ରହିଛି । ଜଗତରେ ପ୍ରତ୍ୟେକ ଜିନିଷର ପରିବର୍ତ୍ତନ ଘଟୁଛି । ପ୍ରତ୍ୟେକ ଦେହର, ପ୍ରକୃତିର ପ୍ରତ୍ୟେକଟି ପ୍ରପଞ୍ଚର, ଅତୀତ, ବର୍ତ୍ତମାନ ଓ ଭବିଷ୍ୟତ ରହିଛି । ଏସବୁ ହେଉଛି ସମୟର ପ୍ରକାଶ ବା ଅଭିବ୍ୟକ୍ତି । ଶୂନ୍ୟ ଭଳି କାଳ ହେଉଛି ବସ୍ତୁର ଅସ୍ତିତ୍ୱର ଏକ ବିଶ୍ୱଜନୀନ ପଦ୍ଧତି । ପ୍ରତ୍ୟେକଟି ନିର୍ଦ୍ଦିଷ୍ଟ ପଦାର୍ଥ, ପ୍ରତ୍ୟେକ ପ୍ରକ୍ରିୟା ଏବଂ ସମଗ୍ର ଭୌତିକ ବିଶ୍ୱଜଗତ କାଳର ବକ୍ଷରେ ବିଦ୍ୟମାନ ।

କିନ୍ତୁ ପୁଣି, ଏକ ନିର୍ଦ୍ଦିଷ୍ଟ ପଦାର୍ଥର ଅସ୍ତିତ୍ୱ ବା ଜୀବନକାଳ ଏବଂ ସମଗ୍ରଭାବେ ପ୍ରକୃତିର ଅସ୍ତିତ୍ୱ ବା ଜୀବନକାଳ ମଧ୍ୟରେ ପାର୍ଥକ୍ୟ ରହିଛି । ଏକ ନିର୍ଦ୍ଦିଷ୍ଟ ପଦାର୍ଥର ଅବସ୍ଥିତି ସମୟ ଭିତରେ ସୀମାବଦ୍ଧ, ଅଥଚ ସମଗ୍ରଭାବେ ପ୍ରକୃତି ଚିରନ୍ତନ, ଅନନ୍ତ କାଳ ଧରି ବିଦ୍ୟମାନ । ପ୍ରତ୍ୟେକ ପଦାର୍ଥ ଜନ୍ମ ଲଭୁଛି, ପରିବର୍ତ୍ତନ ଦେଇ ଗତି କରୁଛି, ଅବଶେଷରେ ତା'ର ଅସ୍ତିତ୍ୱର ବିଲୋପ ଘଟୁଛି । କିନ୍ତୁ ଅନ୍ୟଦିଗରେ ପ୍ରକୃତିର ଆଦି ନାହିଁ କି ଅନ୍ତ ନାହିଁ । ନିର୍ଦ୍ଦିଷ୍ଟ ପଦାର୍ଥସବୁ ଅସ୍ଥାୟୀ, କିନ୍ତୁ ଏଇ-ସବୁ ସଂଯୁକ୍ତ ସସୀମ ପଦାର୍ଥମାନଙ୍କୁ ନେଇ ଚିରନ୍ତନ ପ୍ରକୃତି ଗଠିତ, ଯାହାର ଆରମ୍ଭ ନାହିଁ କି ଶେଷ ନାହିଁ ।

ପୃଥିବୀର ବୟସ ଏବଂ ପୃଥିବୀବକ୍ଷରେ ଜୀବନର ବିକାଶର ସମସ୍ତ ହିସାବ ଆମର କଳ୍ପନାକୁ ଅଭିଭୂତ କରେ । ଆମେ ଆଜି ଯେଉଁ ମଣିଷକୁ ଜାଣୁ, ସେ ମଣିଷର

ଆବିର୍ଭାବ ପ୍ରାୟ ୫୦ରୁ ୭୦ ହଜାର ବର୍ଷ ପୂର୍ବେ ହେଲା। ବାନରରୁ ମାନବକୁ ରୂପାନ୍ତର ପ୍ରାୟ ୧୦ ଲକ୍ଷ ବର୍ଷ ତଳେ ଘଟିଥିଲା । ଉଦ୍ଭିଦ ଓ ପ୍ରାଣୀଜୀବନର ପ୍ରଥମ ଆଦିମ ରୂପ ପ୍ରାୟ ୧୦୦ କୋଟି ବର୍ଷ ପୂର୍ବେ ଦେଖା ଦେଇଥିଲା, ଏବଂ ପୃଥିବୀ ନିଜେ ଶହ ଶହ କୋଟି ବର୍ଷ ପୂର୍ବେ ଜନ୍ମଗ୍ରହଣ କରିଥିଲା । ପୃଥିବୀର ଇତିହାସର ଏଇ ହେଲା ସମୟର ମାପକାଠି । କିନ୍ତୁ ଏଇସବୁ ସଂଖ୍ୟା, ଅଥବା ଏହାଠାରୁ ବଳି ମହାନ ବିଶାଳତା ସୂଚକ, ପ୍ରକୃତିର ଚିରନ୍ତନତା ସମ୍ପର୍କରେ ଆମକୁ ଏକ ପ୍ରକୃତ ଚିତ୍ର ଦେଇ ନ ପାରେ । କାରଣ, ଚିରନ୍ତନର ଅର୍ଥ ହେଲା କାଳର ବକ୍ଷରେ ତା'ର ଅସୀମ ଅସ୍ତିତ୍ୱ। ତାହା ସୂଚାଇଦିଏ ଯେ ପ୍ରକୃତି ସର୍ବଦା ରହିଥିଲା ଓ ସର୍ବଦା ରହିଥିବ ।

ମହାଶୂନ୍ୟ ଓ କାଳ, ବସ୍ତୁସାର ବିଶ୍ୱଜଗତର ଅସ୍ତିତ୍ୱର ରୀତି ବା ପ୍ରଣାଳୀ ଭାବରେ ପରସ୍ପର ସଂଯୁକ୍ତ ଏବଂ ଗତିଶୀଳ ବସ୍ତୁଠାରୁ ତାହା ଅବିଚ୍ଛେଦ୍ୟ ।

ଆମ ସମୟର ସର୍ବଶ୍ରେଷ୍ଠ ବୈଜ୍ଞାନିକ ତତ୍ତ୍ୱ, ଆଇନଷ୍ଟାଇନଙ୍କ ଆପେକ୍ଷିକ ତତ୍ତ୍ୱ ଦ୍ୱାରା ତାହା ଅତି ବିଶ୍ୱାସଯୋଗ୍ୟଭାବେ ପ୍ରତିପାଦିତ ହୋଇଛି । ଶୂନ୍ୟ, ବସ୍ତୁର ବହିର୍ଭୂତ ଓ ସ୍ୱାଧୀନ, ଏକ ଅପରିବର୍ତ୍ତନୀୟ ଶୂନ୍ୟଗର୍ଭ ଯାହା ଭିତରେ କୌଣସି ବାହ୍ୟ ଶକ୍ତି ଦ୍ୱାରା ଭୌତିକ ଦେହସବୁ ନ୍ୟସ୍ତ ହୋଇଛନ୍ତି, ଏବଂ କାଳର ସ୍ରୋତ ସମାନ ଭାବରେ ପ୍ରବାହିତ ହେଉଛି, ଆଉ ବସ୍ତୁର ଗତି ଉପରେ ତାହା ନିର୍ଭରଶୀଳ ନୁହେ—ପୂର୍ବରୁ ପ୍ରଚଳିତ ପଦାର୍ଥବିଜ୍ଞାନର ଏଇ ଦୃଷ୍ଟିକୋଣକୁ ତାହା ଖଣ୍ଡନ କରିଥିଲା ।

ମହାଶୂନ୍ୟ ଓ କାଳ, ବସ୍ତୁର ଅସ୍ତିତ୍ୱର ବିଶ୍ୱଜନୀନ ପ୍ରଣାଳୀ ହୋଇଥିବା ହେତୁ, ତାହା ପରମ । ଶୂନ୍ୟ ଓ କାଳର ବହିର୍ଭୂତ କିଛି ନାହିଁ । କିନ୍ତୁ ସେମାନଙ୍କର ଗୁଣ ପରିବର୍ତ୍ତନଶୀଳ : ବସ୍ତୁର ଗତିର ବେଗ ଉପରେ ମହାଶୂନ୍ୟ ଓ କାଳର ସମ୍ପର୍କ ନିର୍ଭରଶୀଳ; ଭୌତିକ ପିଣ୍ଡମାନଙ୍କର ଗତି ଓ ସେମାନଙ୍କର ବଣ୍ଟନ ଅବସ୍ଥା ଅନୁଯାୟୀ ବିଶ୍ୱବ୍ରହ୍ମାଣ୍ଡର ବିଭିନ୍ନ ଅଂଶରେ ମହାଶୂନ୍ୟ ଓ କାଳର ବୈଶିଷ୍ଟ୍ୟ ଓ ଗୁଣରେ ପରିବର୍ତ୍ତନ ଘଟିଥାଏ । ସେଇ ଦୃଷ୍ଟିରୁ ମହାଶୂନ୍ୟ ଓ କାଳ ହେଉଛନ୍ତି ଆପେକ୍ଷିକ ।

## ମହାଶୂନ୍ୟ ଓ କାଳର ବସ୍ତୁସାର ଅସ୍ତିତ୍ୱକୁ ଅସ୍ୱୀକାର କରିବାର ପ୍ରଚେଷ୍ଟା

ଶୂନ୍ୟ ଓ କାଳ ବସ୍ତୁସାରରୂପେ ବିଦ୍ୟମାନ; ତାହା ବହୁ ଶତାବ୍ଦୀ ଧରି ମନୁଷ୍ୟର ଦୈନନ୍ଦିନ ଅଭିଜ୍ଞତା ଏବଂ ବୈଜ୍ଞାନିକ ତଥ୍ୟ ଦ୍ୱାରା ପ୍ରମାଣିତ ହୋଇଛି, ଯଦିଓ ଅନେକ ଭାବବାଦୀ ଦାର୍ଶନିକ ତାକୁ ଅସ୍ୱୀକାର କରିଥାନ୍ତି ।

ଆମର ଚେତନାର ବହିର୍ଭୂତ ଓ ସ୍ୱାଧୀନଭାବେ, ବସ୍ତୁସାର ମହାଶୂନ୍ୟ ଓ କାଳ ବୋଲି କୌଣସି ଜିନିଷ ନାହିଁ, ଏହା ଜର୍ମାନୀର ଭାବବାଦୀ ଦାର୍ଶନିକ ଇମାନୁଏଲ କ୍ୟାଣ୍ଟ ଦାବୀ କରିଥିଲେ । ତାଙ୍କ ମତରେ, ପ୍ରପଞ୍ଚଙ୍କର ଉପଲବ୍ଧି ଲାଗି ଶୂନ୍ୟ ଓ କାଳ ହେଉଛି କେବଳ ପ୍ରଣାଳୀ ମାତ୍ର । କାରଣ, ଶୂନ୍ୟରେ ଅବସ୍ଥିତ ତଥା କାଳବକ୍ଷରେ ଘଟୁଥିବା ସମସ୍ତ ପ୍ରପଞ୍ଚକୁ ପରିଦର୍ଶନ କରିବା ହେଉଛି ମାନବିକ ଜ୍ଞାନର ପ୍ରକୃତି । ଯଦି ମାନବିକ ଚେତନା ନ ଥାନ୍ତା ତେବେ ଶୂନ୍ୟ ଓ କାଳର ଅସ୍ତିତ୍ୱ ନ ଥାନ୍ତା ।

ପ୍ରପଞ୍ଚକୁ ପରିଦର୍ଶନ କରିବାର ମନୋଗତ ପ୍ରଣାଳୀ ଭାବରେ ଶୂନ୍ୟ ଓ କାଳର ଦୃଷ୍ଟିଭଙ୍ଗୀ ଆଧୁନିକ ଭାବବାଦୀ ଦର୍ଶନରେ ମଧ୍ୟ ପ୍ରଚଳିତ, ଯଦିଚ ତାହା ବିଜ୍ଞାନ, ଅନୁଭୂତି ଏବଂ ବ୍ୟାବହାରିକ କର୍ମର ବିରୋଧୀ, ଏବଂ ତଦ୍ୱାରା ଖଣ୍ଡିତ ଓ ଅସ୍ୱୀକୃତ ହୋଇଛି ।

ଏବେ ଏକ ଦୃଷ୍ଟାନ୍ତ ନିଆଯାଉ । ଯଦି ତମେ ପାରିସ ସହରରୁ ମସ୍କୋକୁ ଯାଅ, ତେବେ ପୂର୍ବରୁ ତମେ ଜାଣିଛ ଯେ ତା'ର ଦୂରତା ହେଉଛି ୨୫୦୦ କିଲୋମିଟର । ତାହା ବାସ୍ତବ ; କାଳ୍ପନିକ ଦୂରତା ନୁହେଁ । ଏଇ ଦୂରତା ଅତିକ୍ରମ କରିବାପାଇଁ ତମର ସମୟ ଦରକାର । ଏ ସମୟର ଦୀର୍ଘତା ତମ କଳ୍ପନା ଉପରେ ନିର୍ଭର କରେ ନାହିଁ; ତାହା ନିର୍ଭର କରେ ସେଇ ଦୁଇଟି ସହର ମଧ୍ୟରେ ଥିବା ଦୂରତ୍ୱ ଉପରେ, ପୁଣି ପରିବହନ ଉପାୟ ଉପରେ । ଟ୍ରେନରେ ଗଲେ ଦୁଇ ଦିନରୁ କମ୍ ଲାଗିବ ନାହିଁ ; କିନ୍ତୁ ଜେଟ୍ ବିମାନରେ ତାହା ୩/୪ ଘଣ୍ଟାର କଥା ମାତ୍ର ।

ବିଜ୍ଞାନ ଆମକୁ କହେ ଯେ, ମନୁଷ୍ୟ ଓ ତା'ର ଚେତନା ପୂର୍ବରୁ ଏ ବିଶ୍ୱଜଗତ ବିଦ୍ୟମାନ ରହିଛି । କିନ୍ତୁ ତାହା ଯଦି ସତ୍ୟ ହୁଏ ତେବେ ଆମେ ଏକ ସୁନିଶ୍ଚିତ ସିଦ୍ଧାନ୍ତରେ ଉପନୀତ ହେବା ଯେ ଶୂନ୍ୟ ଓ କାଳ ମନୁଷ୍ୟ ଚେତନାର ବହିର୍ଭୂତ, ସ୍ୱାଧୀନ । କାରଣ, ଭୌତିକ ବିଶ୍ୱଜଗତର ଅସ୍ତିତ୍ୱ ଶୂନ୍ୟ ଓ ସମୟ ବିନା ଅସମ୍ଭବ ।

ଆମର ଏ ଯୁଗରେ କେବଳ ବୈଜ୍ଞାନିକ ତତ୍ତ୍ୱ ନୁହେଁ, ମନୁଷ୍ୟନିର୍ମିତ ମେସିନ୍ ସୁଦ୍ଧା ଯେତେବେଳେ ଅନ୍ତରୀକ୍ଷୀୟ ଶୂନ୍ୟତା ମଧ୍ୟରେ ଅନୁପ୍ରବେଶ କରୁଛି, ସେତେବେଳେ ତାହା ଶୂନ୍ୟ ଓ କାଳର ମନୋଗତ ପ୍ରକୃତିର ଭାବବାଦୀ ତତ୍ତ୍ୱ ଉପରେ ଏକ ନୂତନ ଆଘାତ ଆଣୁଛି ।

ଶୂନ୍ୟ ଓ କାଳର ବହିର୍ଭୂତ କୌଣସି ଈଶ୍ୱର ଅଛନ୍ତି—ଧର୍ମତତ୍ତ୍ୱର ଏ ଦାବୀକୁ ଦାର୍ଶନିକ ବସ୍ତୁବାଦର ଶିକ୍ଷା ଖଣ୍ଡନ କରେ । ଏ ଶିକ୍ଷା ହେଲା, ବିଶ୍ୱ-ଜଗତ ଶୂନ୍ୟ ଓ କାଳ ମଧ୍ୟରେ ବିଦ୍ୟମାନ । ଧର୍ମତତ୍ତ୍ୱ ଦାବୀ କରେ ଯେ ବିଶ୍ୱଜଗତର ସୃଷ୍ଟି ପୂର୍ବରୁ ଭଗବାନ ଥିଲେ ; ସେ ପ୍ରକୃତିକୁ ସୃଷ୍ଟି କରିଛନ୍ତି ; ମାତ୍ର ସ୍ୱୟଂ ପ୍ରକୃତିର

ବହିର୍ଭୂତ, ତା'ର ବାହାରେ ଏକ ଅଚିନ୍ତ୍ୟନୀୟ, ଅପ୍ରାକୃତ "କୌଣସି ସ୍ଥାନ"ରେ ରହିଛନ୍ତି । ଧର୍ମତତ୍ତ୍ୱବାଗୀଶମାନେ ଜୋର୍ ଦେଇ କହନ୍ତି ଯେ ଭଗବାନ ହିଁ କେବଳ ଅସୀମ, ଅନନ୍ତ ଓ ଚିରନ୍ତନ । ଆଉ, କେବଳ ପ୍ରକୃତିର, ଉଭୟ ଶୂନ୍ୟ ଓ କାଳ ମଧ୍ୟରେ ଆଦ୍ୟ ଓ ପ୍ରାନ୍ତ ରହିଛି ।

ବିଜ୍ଞାନ ଅତି ନିଷ୍ପତ୍ତିମୂଳକଭାବେ ଦର୍ଶାଇଦେଇଛି ଯେ ଏପରି ଉଦ୍ଭଟ କଳ୍ପନା ଅସାର, ଅସମର୍ଥନୀୟ । ବିଶ୍ୱଜଗତର ବାସ୍ତବ ବୈଜ୍ଞାନିକ ଧାରଣା ମଧ୍ୟରେ ଭଗବାନଙ୍କର ସ୍ଥାନ ନାହିଁ । ଅଷ୍ଟାଦଶ ଶତାବ୍ଦୀର ଫରାସି ଜ୍ୟୋତିର୍ବିଦ୍ ଯୋଶେଫ ଲାଲାଣ୍ଡେ ମନ୍ତବ୍ୟ କରିଥିଲେ ଯେ, ସେ ସମସ୍ତ ଆକାଶ ଖୋଜିଲେ, ହେଲେ କୌଣସିଠାରେ ଭଗବାନଙ୍କୁ ଭେଟିଲେ ନାହିଁ ।

ପ୍ରକୃତି ନିଜେ ନିଜର କାରଣ, ଏହି ଚିନ୍ତାଧାରା ବସ୍ତୁବାଦୀ ଦାର୍ଶନିକ ସ୍ପିନୋଜାଙ୍କ ଦ୍ୱାରା ସପ୍ତଦଶ ଶତାବ୍ଦୀରେ ପ୍ରକାଶିତ ହୋଇଥିଲା । ଉକ୍ତ ବସ୍ତୁବାଦୀ ସୂତ୍ରର ତାତ୍ପର୍ଯ୍ୟ ହେଲା ଯେ, ପ୍ରକୃତି ପକ୍ଷରେ, ତାହା ବାହାରେ ଅଧିଷ୍ଠିତ କୌଣସି ଏକ ସୃଷ୍ଟିକର୍ତ୍ତାର ଆବଶ୍ୟକତା ନାହିଁ । ପ୍ରକୃତି ନିଜେ ଅସୀମ ଅନନ୍ତ ଗୁଣର ଅଧିକାରୀ । ଧର୍ମତତ୍ତ୍ୱବାଗୀଶମାନେ ଭଗବାନଠାରେ ଅମୂଳକ ତାହା ଆରୋପ କରନ୍ତି ।

ପ୍ରକୃତି ଯେ ଅସୃଷ୍ଟ, ଅସୀମ ଓ କାଳାତୀତ, ଏହା ପ୍ରମାଣ କରିବା ଦ୍ୱାରା ମାର୍କ୍ସବାଦୀ ବସ୍ତୁବାଦୀ ଦର୍ଶନ ନିରୀଶ୍ୱରବାଦ ଲାଗି ଏକ ଦୃଢ଼ ଭିତ୍ତି ଯୋଗାଇଥାଏ ।

## (୪) ଚେତନା—ସ୍ୱତନ୍ତ୍ରଭାବେ ସଂଗଠିତ ବସ୍ତୁର ଏକ ଗୁଣ

### ଚିନ୍ତା—ଜୀବନ୍ତ ବସ୍ତୁର ବିବର୍ତ୍ତନର ଫଳ

ଚିନ୍ତା କରିବାର ଶକ୍ତି, ଯାହାକି ମନୁଷ୍ୟର ବିଶେଷ ଚରିତ୍ର, ତାହା ଜୈବ ଜଗତରେ ଏକ ସୁଦୀର୍ଘ ବିବର୍ତ୍ତନ ପ୍ରକ୍ରିୟାର ଫଳ ।

ଜୀବନର ଭୌତିକ ଭିତ୍ତି ହେଲା ପ୍ରୋଟିନ୍ ବା ଖାଦ୍ୟସାର । ଏହା ବସ୍ତୁର ବିକାଶର ଏକ ଅତ୍ୟନ୍ତ ଜଟିଳ ଫଳ । ସମ୍ମିଶ୍ରିତ ଖାଦ୍ୟସାର ବିପାକ ପ୍ରକ୍ରିୟାରେ ନିଷ୍ପତ୍ତିମୂଳକ ଅଂଶ ଗ୍ରହଣ କରିଥାଏ । ତାହା ହେଲା ପ୍ରତ୍ୟେକ ଜୀବନ୍ତ ପ୍ରାଣୀର ସକ୍ରିୟତାର ଭିତ୍ତି । ବିପାକଗଠନ ସହିତ ଜୀବର ଅନ୍ୟାନ୍ୟ ବିଷୟଗୁଡ଼ିକ ସମ୍ପୃକ୍ତ, ଯଥା : ପ୍ରଜନନକ୍ରିୟା, ଉତ୍ତେଜନା ଇତ୍ୟାଦି । ଯଥୋଚିତ ପ୍ରକ୍ରିୟା ଦ୍ୱାରା, ଜୀବନ୍ତ

ପ୍ରାଣୀର ଅଙ୍ଗପ୍ରତ୍ୟଙ୍ଗ ଭିତରେ ଓ ବାହାରେ ଉତ୍ତେଜନାର ପ୍ରଭାବ ପଡ଼େ । ପ୍ରତିବର୍ତ୍ତୀ କ୍ରିୟାର ଏହା ହେଉଛି ଏକ ପ୍ରାଥମିକ ରୂପ । ଜୈବଜଗତ ବିକାଶର ଉଚ୍ଚତର ପର୍ଯ୍ୟାୟରେ ଏଇ ଉତ୍ତେଜନା ଗୁଣ, ଯାହାକି ଅତି ସରଳ ପ୍ରାଥମିକ ପ୍ରାଣୀ ଦେହର ବିଶେଷତ୍ୱ, ତାହା ଉଚ୍ଚତର ସ୍ନାୟବିକ କର୍ମର ଭିତ୍ତି ହୋଇଥାଏ । ଏହାକୁ ଆତ୍ମାଗତ ବା ଆତ୍ମିକ କର୍ମ ବୋଲି କହିଥାନ୍ତି ।

ଏକକୋଷୀ ପ୍ରାଣୀ ଦେହରେ ସୂକ୍ଷ୍ମ ଏପରି ବିଭିନ୍ନ ପ୍ରକାରର ଉପାଦାନ ରହିଛି ଯାହା ବାହାରର ବିଭିନ୍ନ ଉତ୍ତେଜକ ଦ୍ୱାରା ବିଶେଷଭାବେ ଅନୁଭୂତ ହୋଇଥାଏ । ବହୁକୋଷୀ ପ୍ରାଣୀମାନଙ୍କର ଆବିର୍ଭାବ ପରେ, ପ୍ରାଣୀମାନଙ୍କ ଅଙ୍ଗପ୍ରତ୍ୟଙ୍ଗର କୋଷ-ମାନଙ୍କରେ ନିର୍ଦ୍ଦିଷ୍ଟ ବିଶେଷତ୍ୱର ଉଦ୍‌ଭବ ହେଲା । ସ୍ୱତନ୍ତ୍ର ଜୀବକୋଷଗୁଡ଼ିକର ଉଦ୍‌ଭବ ପରେ ସେମାନେ ବାହ୍ୟ ଉତ୍ତେଜନାକୁ ଗ୍ରହଣ କରିବାରେ ଏବଂ ଉତ୍ତେଜନାର ଶକ୍ତିକୁ ଆବେଗରେ, ଭାବପ୍ରବଣତାରେ ପରିଣତ କରିବାରେ ସମର୍ଥ ହେଲେ । ପ୍ରାଣୀମାନଙ୍କ ଅଙ୍ଗପ୍ରତ୍ୟଙ୍ଗ ଯେମିତି ଅଧିକ ଜଟିଳ ହେବାକୁ ଲାଗିଲା, ସେମିତି ଏଇ ଜୀବକୋଷ-ଗୁଡ଼ିକ କ୍ରମେ ସ୍ନାୟୁମଣ୍ଡଳର ରୂପ ପରିଗ୍ରହ କଲେ ଏବଂ ତା'ର କେନ୍ଦ୍ର ଅଂଶ ମସ୍ତିଷ୍କ ବିକାଶ ଲାଭ କଲା ।

ମନୁଷ୍ୟ ଓ ପ୍ରାଣୀମାନଙ୍କର ଏଇ ସ୍ନାୟୁମଣ୍ଡଳ, ବିଭିନ୍ନ ଅଙ୍ଗପ୍ରତ୍ୟଙ୍ଗର କ୍ରିୟା ପ୍ରତିକ୍ରିୟାର ତଥା ବାହ୍ୟ ବାତାବରଣ ପ୍ରତି ଅଙ୍ଗପ୍ରତ୍ୟଙ୍ଗର ପ୍ରତିକ୍ରିୟାର ସମନ୍ୱୟ ସାଧନ କରେ ।

ମେରୁଦଣ୍ଡୀ ପ୍ରାଣୀମାନଙ୍କର ପ୍ରଧାନ ସ୍ନାୟୁମଣ୍ଡଳ, ମେରୁଦଣ୍ଡ ଏବଂ ବିଭିନ୍ନ-ବିଭାଗ-ସଂଯୁକ୍ତ ମସ୍ତିଷ୍କକୁ ନେଇ ଗଠିତ । ଅଧିକାଂଶ ମାଛଙ୍କ ମସ୍ତିଷ୍କ ଅପେକ୍ଷାକୃତ କ୍ଷୁଦ୍ର । ସେମାନଙ୍କର ଗୁରୁ ମସ୍ତିଷ୍କର ବିକାଶ ନାହିଁ । ଉଭୟଚର ପ୍ରାଣୀମାନଙ୍କର ମସ୍ତିଷ୍କ ବଡ଼ । ସେମାନଙ୍କ ମସ୍ତିଷ୍କର ସମ୍ମୁଖଭାଗର ଆରମ୍ଭ ଘଟିଛି । ତାହା ହେଉଛି ଗୁରୁ ମସ୍ତିଷ୍କ ବିକାଶର ମୂଳ ଭିତ୍ତି ।

ସରୀସୃପମାନଙ୍କ ମସ୍ତିଷ୍କ ଅନ୍ୟମାନଙ୍କ ତୁଳନାରେ ଅଧିକ ବିକାଶ ଲାଭ କରିଛି । ଗୁରୁ ମସ୍ତିଷ୍କର ଉପରିଭାଗରେ ସର୍ବପ୍ରଥମେ ସ୍ନାୟବିକ ଜୀବକୋଷ ଦେଖାଯାଏ, ଯେଉଁଥିରୁ କି କୋରଟେକ୍‌ସ ଗଠିତ ହୋଇଥାଏ । ପକ୍ଷୀମାନଙ୍କ କ୍ଷେତ୍ରରେ ଗୁରୁ ମସ୍ତିଷ୍କ ଅଧିକ ଉନ୍ନତ ଓ ବଡ଼, କିନ୍ତୁ କୋରଟେକ୍‌ସର ବିକାଶ ନାହିଁ ।

କୋରଟେକସର ବିକାଶ ଓ ଜଟିଳତା ଯୋଗୁ ସ୍ତନ୍ୟପାୟୀ ପ୍ରାଣୀମାନଙ୍କର ଗୁରୁ ମସ୍ତିଷ୍କ ଅଧିକ ଉନ୍ନତ । ଉଚ୍ଚତର ସ୍ତନ୍ୟପାୟୀ ପ୍ରାଣୀଙ୍କର ବିସ୍ତୃତ କୋରଟେକସ ବହୁ ବଙ୍କାବଙ୍କା ନାଳୀ ସମ୍ବଳିତ ରହିଛି, ଆଉ ଗୁରୁ ମସ୍ତିଷ୍କ ମସ୍ତିଷ୍କର ଅନ୍ୟାନ୍ୟ ଅଂଶକୁ ଆବୃତ କରିଛି ।

ସବୁଠାରୁ ଉନ୍ନତ ଗୁରୁ ମସ୍ତିଷ୍କ କୋରଟେକ୍ସ ମନୁଷ୍ୟଠାରେ ଦେଖାଯାଏ । ଏହା ଏକ ଯନ୍ତ୍ରଭଳି ଗଠିତ, ଯାହାର ସମଗ୍ର ସ୍ନାୟୁମଣ୍ଡଳ ସହିତ ସଦାସର୍ବଦା କ୍ରିୟା-ପ୍ରତିକ୍ରିୟା ଚାଲିଛି । ଏହା ଉଚ୍ଚତର ସ୍ନାୟବିକ କାର୍ଯ୍ୟର ଅଙ୍ଗ, ବାହ୍ୟ ପରିବେଶ ସହିତ ସମ୍ପର୍କର ଏହା ଉଚ୍ଚତମ ଓ ଜଟିଳତମ ରୂପ ଭାବରେ ଦେଖାଦେଇଛି । ମହାନ୍ ରୁଷୀୟ ଶରୀରତତ୍ତ୍ୱବିତ୍ ଇଭାନ ପାଭ୍‌ଲଭ କୋରଟେକ୍ସକୁ "ଅଙ୍ଗପ୍ରତ୍ୟଙ୍ଗର ସମସ୍ତ କାର୍ଯ୍ୟକ୍ରମର ପରିଦର୍ଶକ ଓ ବଣ୍ଟନକାରୀ" ବୋଲି ବର୍ଣ୍ଣନା କରିଥିଲେ, "ଅଙ୍ଗପ୍ରତ୍ୟଙ୍ଗରେ ଘଟୁଥିବା ସମସ୍ତ ପ୍ରପଞ୍ଚକୁ ପରିଚାଳିତ କରିବାର ଏକ ସର୍ବୋଚ୍ଚ ଅଙ୍ଗ ବୋଲି କହିଥିଲେ । ମସ୍ତିଷ୍କର କୋରଟେକ୍ସ ହେଲା ମନୁଷ୍ୟର ଚିନ୍ତାର ଅଙ୍ଗ ।

ବାହ୍ୟ ଓ ଅନ୍ତରର ଉତ୍ତେଜନା ଫଳରେ ସମ୍ବେଦନଶୀଳ ସ୍ନାୟୁ-ପ୍ରାନ୍ତର ଆବେଗ ଉଦ୍ଦୀପନା, କେନ୍ଦ୍ରାଭିମୁଖୀ ସ୍ନାୟୁ ଦ୍ୱାରା ମସ୍ତିଷ୍କର ଯଥାର୍ଥ ସ୍ଥଳକୁ ପ୍ରେରିତ ହୁଏ । ସେଠାରୁ ଆବେଗସ୍ପନ୍ଦନ ଅପକେନ୍ଦ୍ରୀ ସ୍ନାୟୁମାନଙ୍କ ଦ୍ୱାରା ଦେହର ବିଭିନ୍ନ ଅଙ୍ଗପ୍ରତ୍ୟଙ୍ଗକୁ ସଂଚରି-ଯାଏ, ସେମାନଙ୍କର କର୍ମକୁ ଉତ୍ତେଜିତ କରେ ।

ଏବେ ପରିଷ୍କାର ପ୍ରତି ଉତ୍ତେଜକ ଏକ ନିର୍ଦ୍ଦିଷ୍ଟ ଅଙ୍ଗର ଏବଂ ସମସ୍ତ ଅଙ୍ଗ-ପ୍ରତ୍ୟଙ୍ଗର ଏକ ପ୍ରତିବର୍ତ୍ତୀ କର୍ମ, ଏଠାରେ ଆମେ ଦେଖିବାକୁ ପାଉଁ ।

ଦୃଷ୍ଟାନ୍ତସ୍ୱରୂପ, ତୁମେ ଯେତେବେଳେ କୌଣସି ଉତ୍ତପ୍ତ ଦ୍ରବ୍ୟରୁ ନିଜ ହାତ କାଢିଆଣ ତେବେ ତାହା ହେଲା ଏକ ପ୍ରତିବର୍ତ୍ତୀ କର୍ମ । ଏହି ପ୍ରକାର କାମକୁ ମନ-ସ୍ତାତ୍ତ୍ୱିକମାନେ ଅପ୍ରତିବନ୍ଧ ପ୍ରତିବର୍ତ୍ତୀ କର୍ମ କହିଥାନ୍ତି । ତାହା ପଶୁ ଓ ମନୁଷ୍ୟ ଉଭୟ କ୍ଷେତ୍ରରେ ସହଜାତ ।

ଏଇସବୁ ଅପ୍ରତିବନ୍ଧ ପ୍ରତିବର୍ତ୍ତୀ କର୍ମମାନ ( ଆତ୍ମରକ୍ଷା, ଖାଦ୍ୟ ଇତ୍ୟାଦି ) ପ୍ରତିବନ୍ଧ ପ୍ରତିବର୍ତ୍ତୀ କର୍ମର ଭିତ୍ତି ହୋଇଥାଏ । ତାହା ବ୍ୟକ୍ତିଗତ ଅଭିଜ୍ଞତା ଭିତରେ ରୂପ ନିଏ । ଦୃଷ୍ଟାନ୍ତସ୍ୱରୂପ, କୁକୁର ହଠାତ୍ ମାଂସ କାମୁଡ଼ିଲାବେଳେ ଲାଳ ଗଡ଼ାଏ । ଏହା ହେଉଛି ଅପ୍ରତିବନ୍ଧ ପ୍ରତିବର୍ତ୍ତୀ କର୍ମ । କିନ୍ତୁ ଏଇ ଲାଳ ଗଡ଼ିବାଟା, ମାଂସ ଗନ୍ଧ ବାଜିଲେ ବା ମାଂସକୁ ଦେଖିଲାକ୍ଷଣି ହୋଇପାରେ । ଅଥବା ଯେଉଁ ଲୋକ ପ୍ରତିଦିନ ଖାଦ୍ୟ ଯୋଗାଏ ତାକୁ ଦେଖିଲାମାତ୍ରେ ବି ହୋଇପାରେ । ଏଇ ଓ ଏଇପରି ପ୍ରପଞ୍ଚକୁ ବିଶ୍ଳେଷଣ କରି ପାଭଲଭ ପ୍ରମାଣ କରିଛନ୍ତି ଯେ ଯଦି ଖାଦ୍ୟ ଖୁଆଇବା ସହିତ ଆଲୋକର ଝଲକ ଦେଖାଯାଏ ବା ଘଣ୍ଟାର ଧ୍ୱନି କରାଯାଏ ତେବେ ଏକ ନୂଆ ପ୍ରକାର ପ୍ରତିବର୍ତ୍ତୀ କର୍ମର ଉଦ୍‌ଭବ ହୋଇପାରେ । ଘଣ୍ଟାର ଧ୍ୱନି ଶୁଣିଲେ ବା ଆଲୋକର ଝଲକ ଦେଖିଲେ କୁକୁର ଲାଳ ଗଡ଼ାଇବ । ପାଭଲଭ ଏହାକୁ ପ୍ରତିବନ୍ଧ ପ୍ରତିବର୍ତ୍ତୀ କର୍ମ ବୋଲି ନାମିତ କରିଥିଲେ । କାରଣ କେତେକ ପ୍ରତିବନ୍ଧ ଉତ୍ତେଜକ (ଆଲୋକ, ଧ୍ୱନି ଆଦି ) ସହିତ ପ୍ରତିବର୍ତ୍ତୀ କର୍ମ ଜାତ କରୁଥିବା ଏକ ଅପ୍ରତିବନ୍ଧ ଉତ୍ତେଜକର ସମ୍ମିଶ୍ରଣ ଦ୍ୱାରା ତାହା ଉଦ୍‌ଭବ ହୋଇଥାଏ ।

ପ୍ରତିବନ୍ଧ ପ୍ରତିବର୍ତ୍ତୀ କର୍ମ ହେଉଛି ସାମୟିକ ସ୍ନାୟବିକ ସମ୍ପର୍କ । ତାହା ଏକ ନିର୍ଦ୍ଦିଷ୍ଟ ଅବସ୍ଥାରେ ଦେଖାଦିଏ । ଅପ୍ରତିବନ୍ଧ ଉତ୍ତେଜକର ବିନା ସାହାଯ୍ୟରେ ତାହା ଅଳ୍ପକ୍ଷଣ ବା ବହୁକ୍ଷଣସ୍ଥାୟୀ ହୋଇଥାଏ । ତା'ର ଗୁରୁତ୍ୱର କାରଣ ହେଉଛି ଯେ ତାହା ଅଙ୍ଗପ୍ରତ୍ୟଙ୍ଗକୁ ସେମାନଙ୍କ ବାତାବରଣର ପରିବର୍ତ୍ତିତ ଅବସ୍ଥା ସହିତ ଉପଯୋଗୀ ହେବାରେ ସମର୍ଥ କରିଥାନ୍ତି । ଉଦାହରଣସ୍ୱରୂପ, ଗୋଟାଏ ଅତି ଜଣାଶୁଣା କଥା ହେଲା, ଅନେକ ବନ୍ୟ ଜନ୍ତୁ ପ୍ରଥମେ ମନୁଷ୍ୟ ଦେଖିଲେ ଶଙ୍କିତ ହୁଅନ୍ତି ନାହିଁ । ଯେତେବେଳେ ମନୁଷ୍ୟ ସେମାନଙ୍କୁ ଶିକାର କରିବାକୁ ବସେ ସେମାନେ ନିଜର ବ୍ୟବହାର ପରିବର୍ତ୍ତନ କରନ୍ତି, ମନୁଷ୍ୟ ଦେଖିଲାକ୍ଷଣି ବା ତା'ର ଗନ୍ଧ ବାରିଲାମାତ୍ରେ ଲୁଚିଯାଆନ୍ତି । ସେମାନେ ଏକ ନୂତନ ପ୍ରତିବନ୍ଧ ପ୍ରତିବର୍ତ୍ତିତା ହାସଲ କରନ୍ତି । ସେମାନଙ୍କ ଲାଗି ତାହା ନିତାନ୍ତ ଆବଶ୍ୟକ । ମନୁଷ୍ୟକୁ ଦେଖିଲାମାତ୍ରେ ସେମାନଙ୍କ ମଧ୍ୟରେ ଏକ ଅପ୍ରତିବନ୍ଧ ପ୍ରତିରକ୍ଷାକାଂକ୍ଷୀ ପ୍ରତିବର୍ତ୍ତିତା ଜାତ ହୁଏ,— ଉଦ୍ଦେଶ୍ୟମୂଳକ ଉପଯୋଗୀ ପ୍ରତିକ୍ରିୟାର ତାହା ସଙ୍କେତ ।

ଦେଖାଯାଇଛି ଯେ, କୌଣସି ବିଷୟ ବା ପ୍ରାକୃତିକ ପ୍ରପଞ୍ଚ ଯଦି ଅପ୍ରତିବନ୍ଧ ପ୍ରତିବର୍ତ୍ତିତା ସହିତ ସଂଯୁକ୍ତ ହୁଏ ତେବେ ତାହା ପ୍ରତିବନ୍ଧ ପ୍ରତିବର୍ତ୍ତୀ କର୍ମ ଲାଗି ଏକ ସଙ୍କେତଭାବେ କାର୍ଯ୍ୟ କରେ । ଏଇ ସଙ୍କେତ ରୀତି ମନୁଷ୍ୟ ଓ ପଶୁ ଉଭୟଙ୍କଠାରେ ସମାନଭାବେ ରହିଛି । ପାଭଲଭ ଏହାକୁ ପ୍ରଥମ ସଂକେତ ରୀତି କହିଛନ୍ତି ।

ସେଥି ସଙ୍ଗେ ସଙ୍ଗେ ପାଭଲଭ, ପଶୁମାନଙ୍କ ତୁଳନାରେ ମନୁଷ୍ୟର ଉନ୍ନତତର ସ୍ନାୟବିକ କର୍ମର ନିର୍ଦ୍ଦିଷ୍ଟ ଚରିତ୍ର ଉପରେ ଜୋର ଦେଇଛନ୍ତି । ସେ ଦର୍ଶାଇଛନ୍ତି ଯେ ବାକ୍‌ଶକ୍ତି ସଙ୍କେତ ଦେବାର ଏକ ନୂତନ ରୀତି, ଯାହା କେବଳ ମନୁଷ୍ୟର ବିଶେଷତ୍ୱ । ତାହା ପ୍ରତିବନ୍ଧ ପ୍ରତିବର୍ତ୍ତୀ କର୍ମର ଏକ ନୂତନ ଆଧାର ହୋଇଯାଏ । ମନୁଷ୍ୟର ବିଶେଷତ୍ୱ ଏଇ ଯେଉଁ ରୀତି ପାଭଲଭ ଏହାକୁ ଦ୍ୱିତୀୟ ସଙ୍କେତ ରୀତି କହିଛନ୍ତି ।

ମନୁଷ୍ୟ ଓ ପଶୁ ମଧ୍ୟରେ ଥିବା ଉନ୍ନତତର ସ୍ନାୟବିକ କର୍ମର ଶରୀରତତ୍ତ୍ୱ ନିୟମକୁ ପାଭଲଭ ଆବିଷ୍କାର କରିଥିଲେ ଏବଂ ମନୁଷ୍ୟ ଓ ପଶୁ ମଧ୍ୟରେ କ'ଣ ସମାନ ଏବଂ କେଉଁଠି ମୌଳିକ ପାର୍ଥକ୍ୟ ରହିଛି ତାହା ସେ ଦର୍ଶାଇଥିଲେ । ମନୁଷ୍ୟର ମାନସିକ କର୍ମ ବୁଝିବା ଦିଗରେ ତାଙ୍କର ଆବିଷ୍କାର ଏକ ସୁଦୃଢ଼ ଓ ଗଭୀର ଭିତ୍ତି ଯୋଗାଇଛି ।

## ମାନବ ଚିନ୍ତାର ବିକାଶରେ ଶ୍ରମ ଓ ବାକ୍‌ଶକ୍ତିର ଭୂମିକା

ପଶୁମାନଙ୍କ ମାନସିକ କ୍ରିୟା ଯେପରି ଅତି ନିମ୍ନ ଓ ପ୍ରାଥମିକ ସ୍ତରରେ ରହିଛି, ମନୁଷ୍ୟର ମାନସିକ କ୍ରିୟା ପ୍ରାଥମିକ ଅବସ୍ଥାରେ ସେଇଭଳି ଥିଲା । କିନ୍ତୁ ମନୁଷ୍ୟ ଓ

ପଶୁ ମଧ୍ୟରେ ଗୁଣଗତ ପାର୍ଥକ୍ୟ ମଧ୍ୟ ଦେଖିବା ଆବଶ୍ୟକ । ମନୁଷ୍ୟର ମନ, ମନୁଷ୍ୟର ଚିନ୍ତା ହେଉଛି ତା'ର ମାନସିକ କ୍ରିୟାର ବିକାଶର ସର୍ବୋଚ୍ଚ ସ୍ତର । ଏକ ସାମାଜିକ ପ୍ରାଣୀ ହୋଇଥିବାରୁ, ମନୁଷ୍ୟର ଶ୍ରମକ୍ରିୟା ଦ୍ୱାରା ତା'ର ଚିନ୍ତା, ତା'ର ଅତ୍ୟୁଚ୍ଚ ମାନସିକ ଜୀବନର ସ୍ତର ନିର୍ଦ୍ଧାରିତ ହୋଇଥାଏ ।

ବିଖ୍ୟାତ ଇଂରେଜ ବୈଜ୍ଞାନିକ ଚାର୍ଲସ୍ ଡାର୍‌ଉଇନ୍ ପ୍ରମାଣ କରିଥିଲେ ଯେ ମନୁଷ୍ୟ ଓ ବର୍ତ୍ତମାନର ପ୍ରଜାତିସ୍ଥ ବାନର—ଏ ଦୁହିଁଙ୍କର ପୂର୍ବପୁରୁଷ ଏକ । ସୁଦୂର ଅତୀତରେ ମନୁଷ୍ୟର ପଶୁ-ପୂର୍ବପୁରୁଷମାନଙ୍କ ସମ୍ମୁଖ ଅଙ୍ଗଗୁଡ଼ିକର ସମୁଚିତ ବିକାଶ ହୋଇଥିଲା । ସେମାନେ ସିଧା ହୋଇ ଚାଲିବାକୁ ଶିଖିଲେ, ଖାଦ୍ୟ ସଂଗ୍ରହ କରିବାରେ ଏବଂ ନିଜର ଆତ୍ମରକ୍ଷା ଦିଗରେ ପ୍ରାକୃତିକ ପଦାର୍ଥମାନଙ୍କୁ ଅସ୍ତ୍ରରୂପେ ବ୍ୟବହାର କଲେ । ତା'ପରେ ସେମାନେ ଉକ୍ତ ଅସ୍ତ୍ରକୁ ପରିମାର୍ଜିତ କରିବା ଦିଗରେ ଅଗ୍ରସର ହେଲେ, ଆଉ ତାହାହିଁ ପଶୁ ଅବସ୍ଥାରୁ ଧୀରେ ଧୀରେ ମାନବ ଅବସ୍ଥାକୁ ସେମାନଙ୍କର ରୂପାନ୍ତର ସୂଚାଇଥାଏ । ଏହି ଅସ୍ତ୍ରର ବ୍ୟବହାର ଦ୍ୱାରା ମନୁଷ୍ୟ ଅଗ୍ନି ଭଳି ପ୍ରାକୃତିକ ଶକ୍ତିକୁ ଆୟତ୍ତ କରିବାରେ ସମର୍ଥ ହେଲା । ତା ଫଳରେ ତା'ର ଖାଦ୍ୟରେ ଉନ୍ନତି ଘଟିଲା ଏବଂ ବିଭିନ୍ନ ପ୍ରକାରର ଖାଦ୍ୟ ମଧ୍ୟ ସମ୍ଭବ ହୋଇପାରିଲା । ପୁଣି, ତାହା ତା'ର ମସ୍ତିଷ୍କର ବିକାଶକୁ ସାହାଯ୍ୟ କଲା ।

ଏଇ ଅସ୍ତ୍ର ଓ ଯନ୍ତ୍ରପାତିର ବ୍ୟବହାର ପ୍ରକୃତି ସହିତ ମନୁଷ୍ୟର ସମ୍ପର୍କରେ ପରିବର୍ତ୍ତନ ଆଣିଦେଲା । ପଶୁ ନିଷ୍କ୍ରିୟ ବା ନିଶ୍ଚେଷ୍ଟଭାବେ ନିଜକୁ ପ୍ରକୃତି ସହିତ ଖାପ ଖୁଆଇ ଚଳେ ; ପ୍ରକୃତି ଯାହା ଦେଇଛି ତାକୁହିଁ ବ୍ୟବହାର କରେ । ଅପର ପକ୍ଷରେ, ମନୁଷ୍ୟ ପ୍ରକୃତି ସହିତ ଆପଣାକୁ ସକ୍ରିୟଭାବେ ଉପଯୋଗୀ କରେ ବା ଖାପଖୁଆଇ ଚଳେ । ସେ ଉଦ୍ଦେଶ୍ୟମୂଳକଭାବେ ପ୍ରକୃତିର ପରିବର୍ତ୍ତନ କରେ । ତା'ର ଜୀବନଧାରଣର ଆବଶ୍ୟକ ଅବସ୍ଥା ନ ଥିଲେ ସେ ତାହା ସୃଷ୍ଟି କରିଯାଏ । ମନୁଷ୍ୟ ମସ୍ତିଷ୍କର ବିକାଶ କାର୍ଯ୍ୟରେ ଏବଂ ତାକୁ ପୂର୍ଣ୍ଣାଙ୍ଗ କରିବା ଦିଗରେ ଶ୍ରମ ଏକ ନିଷ୍ପତ୍ତି-ମୂଳକ ଭୂମିକା ଗ୍ରହଣ କରିଛି । ବୁଝିବାକୁ ଗଲେ ମନୁଷ୍ୟ ଓ ତା'ର ମସ୍ତିଷ୍କ ଶ୍ରମ ଦ୍ୱାରା ସୃଷ୍ଟି ହୋଇଛି ।

ମନୁଷ୍ୟ ଓ ପ୍ରକୃତି ମଧ୍ୟରେ ଥିବା ଏଇ ଅଧିକତର ଜଟିଳ କ୍ରିୟାପ୍ରତିକ୍ରିୟା, ସ୍ୱୟଂ ମନୁଷ୍ୟମାନଙ୍କ ନିଜ ମଧ୍ୟରେ ଅଧିକ ଜଟିଳ ସମ୍ପର୍କ ସୃଷ୍ଟି କଲା । ଯୌଥ ଶ୍ରମ ଲାଗି ମନୁଷ୍ୟକୁ ପରସ୍ପର ସହିତ ମିଳିତ ହେବାକୁ ପଡ଼ିଲା । ଏଥିଲାଗି, ପୂର୍ବରୁ ପଶୁ ଅବସ୍ଥାରେ ଥିଲାବେଳେ ଯେଉଁ ସୀମାବଦ୍ଧ ଶବ୍ଦଭଣ୍ଡାର ମଣିଷ ପାଇଁ ଯଥେଷ୍ଟ ହେଉଥିଲା, ତାହା ଆଉ ଅଣ୍ଟିଲା ନାହିଁ । ଶ୍ରମ ପ୍ରକ୍ରିୟା ମଧ୍ୟରେ ଧୀରେ ଧୀରେ ମନୁଷ୍ୟ କଣ୍ଠର ବିକାଶ ଘଟିଲା, ତାହା ପରିବର୍ତ୍ତିତ ହେଲା । ମନୁଷ୍ୟ ସୁସ୍ପଷ୍ଟ ସ୍ୱରମାନ ଉଚ୍ଚାରଣ କରିବାକୁ

ଶିଖିଲ । ତାହା କ୍ରମଶଃ ଶବ୍ଦ ଓ ଭାଷାରୂପେ ବିକାଶ ଲାଭ କଲା । ବାଣୀ ବା ବାକ୍‌ଶକ୍ତି ବିନା ମିଳିତ ଶ୍ରମ ଅସମ୍ଭବ ହୋଇଥାନ୍ତା ।

ଶବ୍ଦ ବିନା, ପଦାର୍ଥ ସମ୍ପର୍କୀୟ ଧାରଣା ଏବଂ ସେମାନଙ୍କର ପାରସ୍ପରିକ ସମ୍ବନ୍ଧର ଉଦ୍‌ଭବ ହୋଇ ନ ଥାନ୍ତା । ମନୁଷ୍ୟର ଚିନ୍ତାଶକ୍ତି ଅସମ୍ଭବ ହୋଇଥାନ୍ତା । ବାଣୀର ପ୍ରକାଶ ଓ ବିକାଶ ମଧ୍ୟ, ଅନ୍ୟ ଦିଗରେ, ମସ୍ତିଷ୍କର ବିକାଶକୁ ପ୍ରଭାବିତ କଲା ।

ଅତଏବ ମନୁଷ୍ୟର ସାମାଜିକ ଶ୍ରମ ଏବଂ ପରବର୍ତ୍ତୀ ସମୟରେ, ତାହା ସହିତ ବାଣୀ ମିଶି, ମନୁଷ୍ୟ ମସ୍ତିଷ୍କର ବିକାଶକୁ ପ୍ରଭାବିତ କରିବାରେ ଏବଂ ଚିନ୍ତନ ଶକ୍ତିର ବିକାଶ ଦିଗରେ ନିଷ୍ପତ୍ତିମୂଳକ ବ୍ୟବସ୍ଥା କରିଛନ୍ତି ।

## ଚେତନା ମସ୍ତିଷ୍କର ଏକ ଧର୍ମ

ଚେତନା ହେଉଛି ମନୁଷ୍ୟ ମସ୍ତିଷ୍କର କ୍ରିୟାର ଏକ ଫଳ । ତାହା ଜ୍ଞାନେନ୍ଦ୍ରିୟ ଅଙ୍ଗର ଅତି ଜଟିଳ ବସ୍ତୁ ସହିତ ସଂଯୁକ୍ତ । ମୁଖ୍ୟତଃ, ଚେତନା ହେଲା ଭୌତିକ ଜଗତର ଏକ ପ୍ରତିଫଳନ । ତାହା ଏକ ବହୁବିଧ ପ୍ରକ୍ରିୟା, ବିଭିନ୍ନ ପ୍ରକାର ମାନସିକ କ୍ରିୟାର ସମଷ୍ଟି, ଯଥା—ଇନ୍ଦ୍ରିୟାନୁଭୂତି, ଉପଲବ୍ଧି, ଧାରଣା, ଚିନ୍ତନ, ଅନୁଭବ ଓ ପ୍ରବୃତ୍ତି । ମସ୍ତିଷ୍କର ସଠିକ କାର୍ଯ୍ୟ ବିନା କୌଣସି ସାଧାରଣ କ୍ରିୟା ସମ୍ଭବ ନୁହେଁ । ଅସୁସ୍ଥତା ହେତୁ ବା ମାଦକ ଦ୍ରବ୍ୟ ଦ୍ୱାରା ଏଇ କାର୍ଯ୍ୟରେ ଅବ୍ୟବସ୍ଥା ଘଟିଲେ ସୁସ୍ଥ ମାନସିକ କ୍ରିୟାରେ ବ୍ୟାଘାତ ଆସେ । ନିଦ୍ରା ହେଉଛି, ଗୁରୁ ମସ୍ତିଷ୍କ କୋର୍‌ଟେକ୍‌ସର ଆଂଶିକ, ସାମୟିକ ବିଶ୍ରାମ ବା ବାଧା—ଏଥିରେ ଚିନ୍ତନ ବନ୍ଦ ହୋଇଯାଏ, ଆଉ ଚେତନା ଅସ୍ପଷ୍ଟ ହୋଇଉଠେ ।

କିନ୍ତୁ ଚିନ୍ତନ ଯେ ମସ୍ତିଷ୍କ ଦ୍ୱାରା ନିର୍ଗତ ଏକ ସାର, ତାହା ଉପରୋକ୍ତ ନିର୍ଭୁଲ ବସ୍ତୁବାଦୀ ଦୃଷ୍ଟିଭଙ୍ଗୀରୁ ପ୍ରକାଶ ପାଏ ନାହିଁ । ଯେପରି ଆମର ଲାଳ ଗ୍ରନ୍ଥିରୁ ଲାଳ ନିଃସୃତ ହୁଏ ବା ଯକୃତରୁ ପିତ୍ତ ବାହାରିଥାଏ, ସେଇଭଳି ଚିନ୍ତା ମସ୍ତିଷ୍କରୁ ନିର୍ଗତ ଏକ ବିଶେଷ ପଦାର୍ଥ ବୋଲି ଊନବିଂଶ ଶତାବ୍ଦୀର ଜର୍ମାନ ବୁର୍ଜୁଆ ବସ୍ତୁବାଦୀ କାର୍ଲ ଭୋଗଟ୍ କହିଥିଲେ । ଚିନ୍ତାର ପ୍ରକୃତି ସମ୍ପର୍କରେ ଏହା ଅତି ବିକୃତ ଧାରଣା । ମାନସିକ କ୍ରିୟା, ଚେତନା, ଚିନ୍ତନ—ଏସବୁ ହେଉଛି ବସ୍ତୁର ଏକ ବିଶେଷ ଧର୍ମ, ଏକ ବିଶେଷ ଧରଣର ବସ୍ତୁ ନୁହେଁ ।

ଦର୍ଶନର ମୌଳିକ ପ୍ରଶ୍ନ ବିଚାରିବେଲେ, ଆମେ ଚେତନା ଓ ବସ୍ତୁକୁ, ଆତ୍ମା ଓ ପ୍ରକୃତିକୁ ପରସ୍ପର ବିରୁଦ୍ଧରେ ଥୋଇଥାଉଁ । ଆମର ଚେତନାର ବାହାରେ, ସ୍ୱାଧୀନ ସ୍ୱତନ୍ତ୍ରଭାବେ ଯାହାକିଛି ରହିଛି ତାହା ହେଲା ବସ୍ତୁ । ତେଣୁ ଚେତନାକୁ ବସ୍ତୁର ଏକ ଅଂଶ ବୋଲି ବିଚାର କରିବା ଅତ୍ୟନ୍ତ ମାରାତ୍ମକ ଭୁଲ । ଲେନିନ୍ କହିଥିଲେ,

"ଚିନ୍ତନକୁ ବସ୍ତୁଗତ ବା ଭୌତିକ ବୋଲି ବର୍ଣ୍ଣନା କରିବା ଦ୍ୱାରା ଏକ ଭୁଲ ପଦକ୍ଷେପ ନିଆଯାଏ । ବସ୍ତୁବାଦ ଓ ଭାବବାଦ ଭିତରେ ପାର୍ଥକ୍ୟ ବୁଝିବା ଦିଗରେ ତାହା ଏକ ବିଭ୍ରାନ୍ତିକର ପଦକ୍ଷେପ ।" ବାସ୍ତବିକ ଚିନ୍ତନ ଯାହା, ବସ୍ତୁ ଯଦି ସେଇଆ ହୁଏ ତେବେ ବସ୍ତୁ ଓ ଚିନ୍ତନ ମଧ୍ୟରେ ଥିବା ସମସ୍ତ ପାର୍ଥକ୍ୟ ଲୋପ ପାଇଯାଏ । ତଦ୍ୱାରା ଚିନ୍ତନ ଓ ବସ୍ତୁ ଏକା ଜିନିଷ ହୋଇଯାନ୍ତି ।

ଚେତନାର ଭୌତିକ ପ୍ରକୃତି ରହିଛି—ମାର୍କ୍ସବାଦର ଭାବବାଦୀ ବିରୋଧୀମାନେ ମାର୍କ୍ସବାଦ ପ୍ରତି ଏଇ ମତ ଆରୋପ କରନ୍ତି । ମାର୍କ୍ସବାଦୀ ଦାର୍ଶନିକ ବସ୍ତୁବାଦକୁ ସହଜ ଉପାୟରେ "ଖଣ୍ଡନ କରିବା ଲାଗି" ସେମାନେ ତାହା କରିଥାନ୍ତି । ଏହା ଏକ ପୁରୁଣାକାଳିଆ ଚାଲି—ପ୍ରଥମେ ନିଜର ବିରୋଧୀମାନଙ୍କ ପ୍ରତି ଅସମ୍ଭବ ଅଯୌକ୍ତିକ କଥା ଆରୋପ କରିବା, ପରେ ତାକୁ "ଧ୍ୱଂସ କରିବା ଲାଗି" ସମାଲୋଚନା କରିବା ।

ଚେତନା ଓ ବସ୍ତୁକୁ ଏଇପରି ସମାନ କରି ଥୋଇବା ପ୍ରକୃତରେ ଦ୍ୱନ୍ଦ୍ୱାତ୍ମକ ବସ୍ତୁବାଦ ନୁହେଁ, ତାହା ବିକୃତ ବସ୍ତୁବାଦ । ମାର୍କସ୍‌ବାଦୀ ବସ୍ତୁବାଦୀ ଦର୍ଶନ, ବସ୍ତୁଜଗତର ପ୍ରତିଫଳନ—ଚେତନା ଓ ଖୋଦ ବସ୍ତୁ—ଏ ଦୁହିଁଙ୍କ ମଧ୍ୟରେ ରହିଥିବା ପାର୍ଥକ୍ୟ ସର୍ବଦା ଦେଖାଇଦେଇଛି ଓ ଉପରୋକ୍ତ ମତକୁ ଖଣ୍ଡନ କରିଆସିଛି ।

କିନ୍ତୁ ଏଇ ପାର୍ଥକ୍ୟକୁ ଅତିରଞ୍ଜିତ କରିବା କିମ୍ବା ତାକୁ ପୁରାପୁରି ବିଚ୍ଛିନ୍ନ କରି ଉପସ୍ଥାପିତ କରିବା ଅନୁଚିତ । ଚେତନା ଓ ବସ୍ତୁ ମଧ୍ୟରେ ଏଇ ପ୍ରକାର ବିଚ୍ଛିନ୍ନତା ଆଣିବା ହେଉଛି ମନସ୍ତାତ୍ତ୍ୱିକ-ଶରୀରବିଜ୍ଞ ସମାନ୍ତରାଳବାଦର ପ୍ରକୃତି । ତାହା କହେ ଯେ ଚିନ୍ତନ, ଚେତନା ଏକ ପ୍ରକ୍ରିୟା ତାହା ମସ୍ତିଷ୍କରେ ଘଟୁଥିବା ଭୌତିକ ପ୍ରକ୍ରିୟାରୁ ବିଚ୍ଛିନ୍ନ ଓ ସ୍ୱାଧୀନ ଏବଂ ସେଥିସହିତ ସମାନ୍ତରାଳଭାବରେ ଗତି କରିଥାଏ । ବିଜ୍ଞାନ ଏଇ ଦୃଷ୍ଟିକୋଣକୁ ପ୍ରତ୍ୟାଖ୍ୟାନ କରେ । ତାହା ପ୍ରମାଣ କରେ ଯେ ମନୁଷ୍ୟର ମାନସିକ କ୍ରିୟା ହେଉଛି ମସ୍ତିଷ୍କର ଏକ ବିଶେଷ କାର୍ଯ୍ୟ, ଅଙ୍ଗପ୍ରତ୍ୟଙ୍ଗର ସକ୍ରିୟତା କ୍ରିୟାର ଏକ ବିଶେଷ ଦିଗ ।

ଚେତନା ଓ ବସ୍ତୁ ମଧ୍ୟରେ କୌଣସି ପ୍ରକାରର ବିଚ୍ଛିନ୍ନତାକୁ ଦ୍ୱନ୍ଦ୍ୱମୂଳକ ବସ୍ତୁବାଦ ସ୍ୱୀକାର କରେ ନାହିଁ, ତାକୁ ପ୍ରତ୍ୟାଖ୍ୟାନ କରିଥାଏ । କାରଣ, ଉକ୍ତ ବିଚ୍ଛିନ୍ନତାକୁ ସ୍ୱୀକାର କରିବା ଦ୍ୱାରା ମୁଖ୍ୟତଃ ଆମକୁ ପ୍ରାଚୀନ ମାନବ ଇତିହାସର ଆଦିମ ଅଜ୍ଞାନ ଦୃଷ୍ଟିକୋଣକୁ ଫେରିଯିବାକୁ ପଡ଼ିବ । ତଦନୁଯାୟୀ ଆତ୍ମା ଦ୍ୱାରା ଜୀବନର ସମସ୍ତ ପ୍ରପଞ୍ଚକୁ ବ୍ୟାଖ୍ୟା କରାଯାଉଥିଲା । ଆତ୍ମା ଶରୀର ଭିତରେ ପ୍ରବେଶ କରି ତାକୁ ନିୟନ୍ତ୍ରଣ କରୁଥିଲା ।

ମନସ୍ତାତ୍ତ୍ୱିକ ଶରୀରବିଜ୍ଞାନର ସମସ୍ୟା ଅର୍ଥାତ୍ ମନୁଷ୍ୟର ମାନସିକ କ୍ରିୟା ଏବଂ ତା'ର ଅଙ୍ଗ, ମସ୍ତିଷ୍କ ( ଏକ ଭୌତିକ ଅଙ୍ଗ, ପଦାର୍ଥଗତ ଦେହ ) ମଧ୍ୟରେ ଥିବା

ସମ୍ପର୍କର ସମସ୍ୟା ସମାଧାନ କରିବାବେଳେ ଆମକୁ ସେମାନଙ୍କ ଭିତରେ ରହିଥିବା ପାର୍ଥକ୍ୟ ଏବଂ ସମ୍ପର୍କ ଉଭୟଙ୍କୁ ଦେଖିବାକୁ ପଡ଼ିବ । ପାର୍ଥକ୍ୟକୁ ସ୍ମରଣ ରଖିବା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ, କାରଣ ଚେତନାକୁ ବସ୍ତୁ ସହିତ ଏକ ଓ ସମାନ ବୋଲି ଧରି-ନେଲେ ତାହା କେବଳ ଅତ୍ୟନ୍ତ ଅଯୌକ୍ତିକ ହାସ୍ୟାସ୍ପଦ ଅବସ୍ଥାକୁ ଘେନିଯିବ । ଅନ୍ୟ ଦିଗରେ ମସ୍ତିଷ୍କରୁ ଚେତନାକୁ ଅଲଗା କରିଦେବା ବି ଅନୁଚିତ, କାରଣ ଚେତନା ହେଉଛି ମସ୍ତିଷ୍କର—ଏକ ସ୍ୱତନ୍ତ୍ରଭାବେ ସଂଗଠିତ ବସ୍ତୁର—କାର୍ଯ୍ୟ ।

## (୭) ଦାର୍ଶନିକ ବସ୍ତୁବାଦର ବିରୋଧୀଗଣ

ବିଶ୍ୱଜଗତର ଭୌତିକ ଐକ୍ୟକୁ ସ୍ୱୀକାର କରିବା ଦ୍ୱାରା ମାର୍କ୍ସୀୟ ଦର୍ଶନର ବସ୍ତୁବାଦିତା, ଦାର୍ଶନିକ ଅଦ୍ୱୈତବାଦ (ମନିଜମ୍ : ଗ୍ରୀକ୍ 'ମନୋସ୍' ଶବ୍ଦର ଅର୍ଥ 'ଏକ' ) ଦୃଷ୍ଟିକୋଣ ଗ୍ରହଣ କରିଛି । ମାର୍କ୍ସବାଦୀ ଦର୍ଶନର ବସ୍ତୁବାଦ ହେଉଛି ଏକ ଧାରାବାହିକ ସୁସଂଗଠିତ ମତବାଦ, ଯେହେତୁ ତା'ର ବ୍ୟାଖ୍ୟା ଅନୁସାରେ ଏକମାତ୍ର ଭୌତିକ ଭିତ୍ତିରୁହିଁ ସମସ୍ତ ପ୍ରପଞ୍ଚର ଉଦ୍‌ଭବ ଘଟୁଛି ।

କିନ୍ତୁ ଅନ୍ୟାନ୍ୟ ବହୁ ଦାର୍ଶନିକ ମତବାଦ ରହିଛି ଯେଉଁମାନେ କି ବସ୍ତୁ ବା ଆତ୍ମା କାହାରି ଆଦ୍ୟତାକୁ ସ୍ୱୀକାର କରିବାକୁ ପ୍ରସ୍ତୁତ ନୁହନ୍ତି । ସେମାନଙ୍କର ମୂଳ ଦାର୍ଶନିକ ମତ ହେଲା ଦ୍ୱୈତବାଦ । ( ଲାଟିନ 'ଦ୍ୱୋ' ଶବ୍ଦର ଅର୍ଥ 'ଦୁଇ' ) । ସେମାନେ ପ୍ରମାଣ କରିବାକୁ ଚେଷ୍ଟା କରନ୍ତି ଯେ ବିଶ୍ୱଜଗତରେ ଦୁଇଟି ପ୍ରାଥମିକ ଭିତ୍ତି ରହିଛି, ସେ ଦୁଇଟି ପରସ୍ପରଠାରୁ ସ୍ୱାଧୀନ, ସେମାନଙ୍କର ପ୍ରକୃତି ଏକାବେଳକେ ସମ୍ପୂର୍ଣ୍ଣ ଭିନ୍ନ ଓ ପୃଥକ୍, ଯଥା—ବସ୍ତୁ ଓ ଆତ୍ମା, ଦେହ ଓ ଚୈତନ୍ୟ, ପ୍ରକୃତି ଓ ଭାବ । ଫରାସି ଦାର୍ଶନିକ ଦେକାର୍ତ୍ତିସ ଏହି ମତ ପୋଷଣ କରୁଥିଲେ ।

ମନୁଷ୍ୟ ଦେହ ଉପରେ ପଡ଼ୁଥିବା ପ୍ରଭାବ ତା'ର ଚୈତନ୍ୟରେ ପରିବର୍ତ୍ତନ ଆଣେ ଏବଂ ଅପରପକ୍ଷରେ, ଚିନ୍ତନ ଦ୍ୱାରା ଦେହ ଗତିଶୀଳ ହୁଏ—ଏହି ଅତି ଜଣାଶୁଣା ସାଧାରଣ କଥାଟିକୁ ବୁଝାଇବା ପାଇଁ କିନ୍ତୁ ଦ୍ୱୈତବାଦ ଅସମର୍ଥ । ଦାର୍ଶନିକ ଦ୍ୱୈତବାଦର ଦୃଷ୍ଟିକୋଣ ସାମଞ୍ଜସ୍ୟହୀନ, ଦୃଢ଼ତାଶୂନ୍ୟ । ନିୟମ ଅନୁସାରେ ତାହା ଭାବବାଦକୁ ଘେନିଯାଏ ।

ଭାବବାଦୀ ଦାର୍ଶନିକ, ଯେଉଁମାନେ ଅଦ୍ୱୈତ, ଅଥଚ ଭାବବାଦୀ ଭିତ୍ତିରୁ, ବିଶ୍ୱ-ଜଗତର ବ୍ୟାଖ୍ୟା କରନ୍ତି ସେମାନେ ମଧ୍ୟ ଅଦ୍ୱୈତବାଦୀ । ମାତ୍ର ସେମାନଙ୍କର ଅଦ୍ୱୈତବାଦ ଭ୍ରାନ୍ତ, ବିଜ୍ଞାନବିରୋଧୀ ଭିତ୍ତି ଉପରେ ପ୍ରତିଷ୍ଠିତ । ତା'ର କାରଣ, ତାହା ଭାବ, ଚିନ୍ତନ, ଚୈତନ୍ୟକୁ ଆଦ୍ୟ ଓ ସର୍ବପ୍ରଧାନ ବିଚାରି ତାକୁହିଁ ନିଜର ପ୍ରାରମ୍ଭିକ-ବିନ୍ଦୁ ବୋଲି ଗ୍ରହଣ କରିଥାଏ । ଅନ୍ୟ ଦିଗରେ ପ୍ରକୃତି, ପଦାର୍ଥଗତ ବିଶ୍ୱ, ମାନବ

ଶରୀରକୁ ଗୌଣ ଏବଂ ତାହା ଆତ୍ମାଗତ ଭିତ୍ତିରୁ ନିଃସୃତ ବୋଲି ଧରି ନେଇଥାଏ । ସେମାନଙ୍କ ମତରେ ପ୍ରତ୍ୟେକ ଜିନିଷ ହେଉଛି ଚୈତନ୍ୟର ଫଳ ।

## ବସ୍ତୁସାର ସବବାଦ

ବିଶ୍ୱଜଗତ ସମ୍ପର୍କରେ ଭାବବାଦୀ ଦୃଷ୍ଟିଭଙ୍ଗୀର ଅତି ଆଦିମ, ଅଥଚ ଅତି ବ୍ୟାପକ ସ୍ୱରୂପ ଏକ ଅପାର୍ଥିବ ଆତ୍ମା ବା ଦେବତାର କଳ୍ପନାରେ ଆତ୍ମପ୍ରକାଶ କରେ । ତଦନୁସାରେ ପଦାର୍ଥଗତ ବିଶ୍ୱବ୍ରହ୍ମାଣ୍ଡ ପୂର୍ବରୁ ଏହାର ଅସ୍ତିତ୍ୱ ରହିଛି ଏବଂ ଏହାହିଁ ବିଶ୍ୱବ୍ରହ୍ମାଣ୍ଡର ସୃଷ୍ଟିକର୍ତ୍ତା । ବିଜ୍ଞାନର ସମଗ୍ର ଇତିହାସ ଏଇ ମତକୁ ଖଣ୍ଡନ କରିଆସେ । କାରଣ ବିଜ୍ଞାନ ନିଃସନ୍ଦେହଭାବେ ପ୍ରମାଣ କରିଛି ଯେ ମାନସିକ ପ୍ରପଞ୍ଚ ଓ ପ୍ରକ୍ରିୟା ବସ୍ତୁର ବିକାଶର ଏକ ଉନ୍ନତତର ପର୍ଯ୍ୟାୟରେ ଜନ୍ମଲାଭ କରେ, ସ୍ନାୟୁପ୍ରଣାଳୀ ଏବଂ ଗୁରୁ ମସ୍ତିଷ୍କର ଭରଟେକ୍ସ (ବହିଃସ୍ତର) ରେ ଚାଲିଥିବା ନିର୍ଦ୍ଦିଷ୍ଟ ଭୌତିକ କ୍ରିୟା ସହିତ ଏହା ଅପରିହାର୍ଯ୍ୟଭାବେ ସମ୍ପୃକ୍ତ । ଏଇସବୁ ଭୌତିକ ଦୈହିକ ପ୍ରକ୍ରିୟା ବିନା କୌଣସି ମାନସିକ ପ୍ରପଞ୍ଚ ସଙ୍ଘଟିତ ହୋଇ ନ ପାରେ । ତେଣୁ ବସ୍ତୁ ଓ ପ୍ରକୃତିର ପୂର୍ବରୁ ମନ ଚୈତନ୍ୟର ଅସ୍ତିତ୍ୱ ରହିଛି—ଏଇ ଧର୍ମମାନ୍ତ ସମ୍ପୂର୍ଣ୍ଣ ମିଥ୍ୟା ଓ ଅମୂଳକ, ବାସ୍ତବତାର ପୂର୍ଣ୍ଣ ପରିପନ୍ଥୀ ।

ଭାବବାଦର ଅଧିକ ସୂକ୍ଷ୍ମ ଓ ବିମୂର୍ତ୍ତ ରୂପ, ପ୍ଲାଟୋ, ଲିବ୍‌ନେସ୍ ଏବଂ ହେଗେଲ୍‌ଙ୍କ ଦାର୍ଶନିକ ପ୍ରଣାଳୀରେ ଦେଖାଯାଏ । ସେମାନେ ଦାବୀ କରନ୍ତି ଯେ ଭୌତିକ ପଦାର୍ଥର ଆବିର୍ଭାବ ପୂର୍ବରୁ ବିଦ୍ୟମାନ ଥିବା, ଆତ୍ମଚୈତନ୍ୟଗତ ବା ଅଣ-ଭୌତିକ କାରଣ, ଉପାଦାନ ଅଥବା ସତ୍ତା ମଧ୍ୟରେ ସମସ୍ତ ପଦାର୍ଥର ଭିତ୍ତି ଅନ୍ୱେଷଣ କରିବାକୁ ହେବ । ପ୍ଲାଟୋ ଏଇ ଅଣ-ଭୌତିକ କାରଣକୁ "ରୂପ" ବା "ଭାବ" ବୋଲି କହୁଥିଲେ । ଲିବ୍‌ନେସ୍ ବିଶ୍ୱାସ କରୁଥିଲେ, ମହାସତ୍ତାର ଏକ ବିଶେଷ ପ୍ରକାରର ଆତ୍ମିକ "ଅଣୁ"—ଆତ୍ମିକଭାବେ ସକ୍ରିୟ କ୍ଷୁଦ୍ରତମ ଅଂଶ (ଇଉନିଟ୍—ମୋନାଡ୍‌ସ)—ମଧ୍ୟରେ ସମସ୍ତ ପଦାର୍ଥର ଅନ୍ତିମ ଭିତ୍ତି ନିହିତ । ଏକ ବସ୍ତୁସାରରୂପେ ଅବସ୍ଥିତ ଧାରଣା-ଭାବେ "ଭାବ" ମଧ୍ୟରେ ସମସ୍ତ ପଦାର୍ଥର ଅନ୍ତିମ ଭିତ୍ତି ନିହିତ ବୋଲି ହେଗେଲ ଦେଖିଥିଲେ । ସେ ଲେଖିଥିଲେ, "ପ୍ରକୃତରେ ଆଦ୍ୟତା ହେଲା ଭାବ, ଏବଂ ପଦାର୍ଥ ପଦାର୍ଥ ଭଳି ରହିଛି, କାରଣ ତାଙ୍କ ମଧ୍ୟରେ ଅନ୍ତର୍ନିହିତ ଧାରଣାର କ୍ରିୟା ଓ ତା ମଧ୍ୟରେ ସେମାନଙ୍କର ପରିପ୍ରକାଶ ଘଟୁଛି ।" ହେଗେଲଙ୍କ ମତ ଅନୁସାରେ ସମଗ୍ର ପ୍ରକୃତି ମଧ୍ୟ ଏଇ ଭାବ, ଏଇ ଧାରଣାରୁ ଉଦ୍‌ଭୂତ ; ଏ ଭାବ ସାଧାରଣ ମାନବିକ ଭାବ ନୁହେଁ, ତାହା ମନୁଷ୍ୟଠାରୁ ସ୍ୱାଧୀନ ସ୍ୱତନ୍ତ୍ରଭାବେ ବିଦ୍ୟମାନ, 'ପରମ ଭାବ', ଅାଉ ତାହା ଭଗବାନଙ୍କ ସହିତ ସମାନ ।

ପ୍ଲାଟୋ, ଲିବ୍‌ନେସ୍ ଏବଂ ହେଗେଲଙ୍କ ଦର୍ଶନକୁ ବସ୍ତୁସାର ଭାବବାଦ ଆଖ୍ୟା ଦିଆଯାଇଥାଏ । କାରଣ ତାହା ମନୁଷ୍ୟର ଚେତନାଠାରୁ ପୃଥକ୍ ଏବଂ ତା'ଠାରୁ ସ୍ୱାଧୀନ ସ୍ୱତନ୍ତ୍ରଭାବେ କେତେକ "ବସ୍ତୁସାର" ଆତ୍ମିକ ଭିତ୍ତିର ଅସ୍ତିତ୍ୱକୁ ସ୍ୱୀକାର କରିଥାଏ ।

ଏ ବସ୍ତୁସାର ଭାବବାଦୀଙ୍କର ଦୃଷ୍ଟିକୋଣ ସମାଲୋଚନା ଆଗରେ ତିଷ୍ଠି ପାରେ ନାହିଁ । ଭାବ, ଧାରଣା କେବଳ ମନୁଷ୍ୟର ଚିନ୍ତାରେ ହିଁ ଅବସ୍ଥାନ କରେ । ତାହା ଖୋଦ୍ ସେଇ ବାସ୍ତବତାର ସମ୍ପଦ ଏବଂ ସାଧାରଣ ରୂପକୁ ପ୍ରତିଫଳିତ କରେ । ସେମାନେ ଭୌତିକ ଜଗତର ସାଧାରଣ ଚରିତ୍ରକୁ ପ୍ରତିଫଳିତ କରିଥାଆନ୍ତି । ଦୃଷ୍ଟାନ୍ତ-ସ୍ୱରୂପ, ଏଇସବୁ ଧାରଣା ହେଲା ମନୁଷ୍ୟ, ସମାଜ, ସମାଜବାଦ, ରାଷ୍ଟ୍ର ଇତ୍ୟାଦି ଭାବ ଓ ଧାରଣା ଯାହାକି ପ୍ରକୃତି ପୂର୍ବରୁ ବିଦ୍ୟମାନ ଏବଂ ପ୍ରକୃତିକୁ ସୃଷ୍ଟି କରିଛି ବୋଲି ଧରିନିଆଯାଏ । ତାହା କେବଳ ଭାବବାଦୀମାନଙ୍କର ରହସ୍ୟାବୃତ କଳ୍ପନା ମାତ୍ର । ଲେନିନ୍ ଲେଖିଥିଲେ, "ମାନବର ଭାବ କ'ଣ ତାହା ପ୍ରତ୍ୟେକ ଲୋକ ଜାଣନ୍ତି; କିନ୍ତୁ ମନୁଷ୍ୟ-ବହିର୍ଭୂତ, ମନୁଷ୍ୟଠାରୁ ସ୍ୱାଧୀନ, ମନୁଷ୍ୟ ପୂର୍ବର ଭାବ, ଏକ ବିମୂର୍ତ୍ତ ନିରାକାର ଭାବ—ଏକ ପରମ ଭାବ । ତାହା ହେଉଛି ଭାବବାଦୀ ହେଗେଲଙ୍କର ଧର୍ମଗତ ଉଦ୍ଭାବନ ।"

## ମନୋଗତ ଭାବବାଦ

କେତେକ ଐଶ୍ୱରିକ ଭାବ ମଧ୍ୟରୁ ପ୍ରକୃତିର ଉତ୍ପତ୍ତି—ଏହା ବିଶ୍ୱାସ କରୁଥିବା ବସ୍ତୁସାର ଭାବବାଦ ବ୍ୟତୀତ ମନୋଗତ ଭାବବାଦ ମଧ୍ୟ ରହିଛି । ତାହା ଦାବୀ କରେ ଯେ ଭୌତିକ ପଦାର୍ଥମାନ ଆମ ଇନ୍ଦ୍ରିୟାନୁଭୂତି, ଆମ ଚିନ୍ତାର ସମଷ୍ଟି ମାତ୍ର । ଏଇ ଦର୍ଶନ ବିଶ୍ୱଜଗତକୁ ମନୁଷ୍ୟର ଚିନ୍ତାର, ଅର୍ଥାତ୍ ମନୁଷ୍ୟର ବୋଧଶକ୍ତିର ଏକ ଅଂଶରୂପେ ରଚନା କରିଥାଏ ।

ମନୋଗତ ଭାବବାଦୀମାନେ ପ୍ରଶ୍ନ କରନ୍ତି : ମୋର ଚତୁଃପାର୍ଶ୍ୱରେ ଥିବା ପଦାର୍ଥମାନଙ୍କ ବିଷୟରେ ମୁଁ ବା କ'ଣ ଜାଣିବି ? ତାଙ୍କର ଉତ୍ତର ହେଉଛି : କେବଳ ଇନ୍ଦ୍ରିୟାନୁଭୂତି, ଯାହାକି ସେଇ ପଦାର୍ଥମାନଙ୍କଠାରୁ ମୁଁ ପାଇଥାଏ ଅର୍ଥାତ୍ ବର୍ଣ୍ଣ, ସ୍ୱାଦ, ଗନ୍ଧ, ରୂପ, ଘନତା ଇତ୍ୟାଦି ଇନ୍ଦ୍ରିୟାନୁଭୂତି ଭିନ୍ନ ସେଇ ଇନ୍ଦ୍ରିୟା-ନୁଭୂତିମାନଙ୍କର ସମଷ୍ଟି ବ୍ୟତୀତ ମୁଁ ଆଉ ଅଧିକ କିଛି ଦେଖେ ନାହିଁ କି ଦେଖିପାରିବି ନାହିଁ । ତାହାହେଲେ ପଦାର୍ଥସବୁ ଯେ କେବଳ ମୋର ଇନ୍ଦ୍ରିୟାନୁଭୂତିର ସମଷ୍ଟି ଏବଂ କୌଣସି ପଦାର୍ଥ ଇନ୍ଦ୍ରିୟାନୁଭୂତିର ବହିର୍ଭୂତ, ବା ତା'ଠାରୁ ସ୍ୱାଧୀନ ସ୍ୱତନ୍ତ୍ରଭାବେ ଅବସ୍ଥିତ ନୁହେଁ, ଏହା ଧରିନେବା କ'ଣ ନ୍ୟାୟସଙ୍ଗତ ହେବ ନାହିଁ ?

ମନୋଗତ ଭାବବାଦୀମାନଙ୍କର ଏଇ ପ୍ରକାର ପରିଣତି ହେଲା : ମନୁଷ୍ୟ ପଦାର୍ଥମାନଙ୍କ ଦ୍ୱାରା ପରିବେଷ୍ଟିତ ନୁହେ, ତା'ର ନିଜର ଇନ୍ଦ୍ରିୟାନୁଭୂତିର ମାନସିକ ଅବସ୍ଥା ଦ୍ୱାରା ସେ ପରିବେଷ୍ଟିତ, ଆଉ ସମଗ୍ର ପ୍ରକୃତି ହେଉଛି କେବଳ ସେଇ ଇନ୍ଦ୍ରିୟାନୁଭୂତିମାନଙ୍କର ସମଷ୍ଟି ।

ଅଷ୍ଟାଦଶ ଶତାବ୍ଦୀର ପ୍ରାରମ୍ଭରେ ଇଂରେଜ ଧର୍ମଯାଜକ ବର୍କଲେଙ୍କ ଦ୍ୱାରା ଏଇ ମତ ପ୍ରଚାରିତ ହୋଇଥିଲା । ସେ ପରିଷ୍କାରଭାବେ ଘୋଷଣା କରିଥିଲେ ଯେ, ତାଙ୍କ ଭାବବାଦୀ ଦର୍ଶନର ଏକମାତ୍ର ଉଦ୍ଦେଶ୍ୟ ହେଲା ବସ୍ତୁବାଦ ଓ ନାସ୍ତିକତାକୁ ଖଣ୍ଡନ କରିବା, ଆଉ ତା ପରିବର୍ତ୍ତେ ଭଗବାନଙ୍କର ଅସ୍ତିତ୍ୱକୁ ସାବ୍ୟସ୍ତ କରିବା ।

ମନୋଗତ ଭାବବାଦ ହେଉଛି ଆମର ଅନୁଭୂତି ଓ ପଦାର୍ଥ ମଧ୍ୟରେ ଥିବା ପ୍ରକୃତ ସମ୍ପର୍କର ଏକ ଅତି ଅପରିପକ୍ୱ ବିକୃତି । ତାହା ମାନବିକ ଅନୁଭୂତିକୁ ଅନୁଭୂତ ପଦାର୍ଥ ସହିତ ଏକ ଓ ଅଭିନ୍ନ କରିଦିଏ ।

ମନୋଗତ ଭାବବାଦର ମୌଳିକ ବିଶ୍ୱାସର ଯୁକ୍ତିଯୁକ୍ତ ପରିଣତି ହେଉଛି—ପଦାର୍ଥ ଓ ସେମାନଙ୍କର ପ୍ରତ୍ୟକ୍ଷୀକରଣ, ଏକ ଓ ଅଭିନ୍ନ । ସେ କ୍ଷେତ୍ରରେ ଆମେ ନିଶ୍ଚିତଭାବେ ଏ ସିଦ୍ଧାନ୍ତରେ ଉପନୀତ ହେବା ଯେ, ସମଗ୍ର ବିଶ୍ୱଜଗତ ମୋ ଦ୍ୱାରା, ମୋର ଚେତନା ଦ୍ୱାରା ସୃଷ୍ଟ ଏବଂ ମୋର ପିତାମାତାଙ୍କ ସମେତ ଅନ୍ୟାନ୍ୟ ସମସ୍ତ ବ୍ୟକ୍ତି କେବଳ ମୋର ମନର ପ୍ରତ୍ୟକ୍ଷୀଭୂତ; ବସ୍ତୁଗତଭାବେ ତାଙ୍କର ଅସ୍ତିତ୍ୱ ନାହିଁ । ତେଣୁ ମନୋଗତ ଭାବବାଦ ଅପରିହାର୍ଯ୍ୟଭାବେ ସୋଽହଂବାଦ ('ସୋଲିପସିଜମ୍', ଲାଟିନ ଶବ୍ଦ 'ସୋଲସ'ର ଅର୍ଥ ଏକାକୀ ଏବଂ 'ଇପ୍‌ସ'ର ଅର୍ଥ ଆତ୍ମ) ଆଡ଼କୁ ଘେନିଯାଏ । ତାହା ଏକ ଅତି ହାସ୍ୟାସ୍ପଦ ଦର୍ଶନ; ତାହାର ଦାବୀ ଯେ, କେବଳ ମୋହରି ଅସ୍ତିତ୍ୱ ରହିଛି; ଅନ୍ୟାନ୍ୟ ସମସ୍ତ ଲୋକ, ସମଗ୍ର ବିଶ୍ୱଜଗତ କେବଳ ମୋର କଳ୍ପନାର ବସ୍ତୁ ମାତ୍ର । ପାଗଲଖାନାର ଅଧିବାସୀମାନଙ୍କ ଲାଗି ଏହା ଏକ ଉପଯୁକ୍ତ ଦର୍ଶନ ବୋଲି ଲେନିନ୍ ମନ୍ତବ୍ୟ କରିଥିଲେ ।

ପ୍ରତ୍ୟେକ ପ୍ରକାରର ମନୋଗତ ଭାବବାଦ ସୋଽହଂବାଦର ସିଦ୍ଧାନ୍ତରେ ପହଞ୍ଚିବାକୁ ବାଧ୍ୟ । ତାହାହିଁ ହେଉଛି ତା'ର ଅସତ୍ୟତାର ଅକାଟ୍ୟ ପ୍ରମାଣ ।

## ଦର୍ଶନରେ ଏକ 'ତୃତୀୟ ପନ୍ଥା' ଉପସ୍ଥାପନର ପ୍ରଚେଷ୍ଟା

ଅତି ଖୋଲାଖୋଲିଭାବେ ଚୈତନ୍ୟକୁ ବିଶ୍ୱଜଗତର ଭିତ୍ତିରୂପେ ବିଚାର କରୁଥିବା ଭାବବାଦୀ ମତବାଦକୁ ଛାଡ଼ିଦେଲେ, ଆଉ ମତବାଦସବୁ ରହିଛି ଯେଉଁମାନେ ନିଜର ଭାବବାଦକୁ ଗୋପନ ରଖିବାର ଚେଷ୍ଟା କରନ୍ତି । ସେମାନେ ଏ ଧାରଣା ସୃଷ୍ଟି କରିବାକୁ ଚାହାନ୍ତି ଯେ ସେମାନେ ବସ୍ତୁବାଦ ଓ ଭାବବାଦ—ଉଭୟଙ୍କର

ଉର୍ଦ୍ଧ୍ୱରେ ଏବଂ ଦର୍ଶନରେ ଏକ 'ତୃତୀୟ' ପନ୍ଥାର ପ୍ରତିନିଧିତ୍ୱ ସେମାନେ କରନ୍ତି । ଏହିପରି ଏକ ଭାବଧାରା ହେଲା ଦୃଷ୍ଟବାଦ ।

ଗତ ଶତାବ୍ଦୀର ପ୍ରଥମାର୍ଦ୍ଧରେ ଦୃଷ୍ଟବାଦର ଜନ୍ମ । ତାହା ଅଧୁନା ବୁର୍ଜୁଆ ଜଗତର ସର୍ବାଧିକ ପ୍ରଭାବଶାଳୀ ଦାର୍ଶନିକ ଚିନ୍ତାଧାରା ମଧ୍ୟରୁ ଅନ୍ୟତମ । ପ୍ରକୃତି-ବିଜ୍ଞାନୀଙ୍କ ମଧ୍ୟରେ ଏହାର ବେଶ ପ୍ରଚଳନ ଦେଖାଯାଏ ।

ଏଇ ଦୃଷ୍ଟବାଦୀମାନେ ପୂର୍ବର ସମସ୍ତ ଦର୍ଶନକୁ ଅଧିବିଦ୍ୟା କହି ନିନ୍ଦା କରିଥାନ୍ତି । ପ୍ରତ୍ୟକ୍ଷାନୁଭୂତ ବହିର୍ଭୂତ ତଥା ବୈଜ୍ଞାନିକ ସ୍ତରରେ ସମାଧାନର ଅଯୋଗ୍ୟ, ଯାବତୀୟ ସମସ୍ୟାର ଅସାର ପାଣ୍ଡିତ୍ୟପୂର୍ଣ୍ଣ ଆଲୋଚନାକୁ ସେମାନେ ଅଧିବିଦ୍ୟା ବୋଲି କହନ୍ତି । ସେମାନେ କହନ୍ତି ଯେ ତାହା ଦର୍ଶନର ମୌଳିକ ପ୍ରଶ୍ନ ପ୍ରତି ପ୍ରଯୁଜ୍ୟ— ଆଦ୍ୟରେ କିଏ ଯେ, ପ୍ରକୃତି ନା ଚୈତନ୍ୟ ? ଦୃଷ୍ଟବାଦୀ କହନ୍ତି ଯେ ବିଜ୍ଞାନ ଏପରି ଘଟଣାବଳୀ ମଧ୍ୟରେ ନିଜକୁ ଆବଦ୍ଧ କରି ରଖିବ ଯାହାକୁ ସେ ନିରୀକ୍ଷଣ କରିବ ; ସେମାନଙ୍କର ମୂଳଭିତ୍ତି ଭୌତିକ ବା ଆଧ୍ୟାତ୍ମିକ ତାହା ଅନ୍ୱେଷଣ କରିବାକୁ ଉଦ୍ୟମ କରିବ ନାହିଁ । ସେପରି ମୌଳିକ ଭିତ୍ତି ଅନ୍ୱେଷଣ କରୁଥିବା ଯେକୌଣସି ଦର୍ଶନ ଅନାବଶ୍ୟକ । ବିଜ୍ଞାନ ବିନା ଦର୍ଶନ ବେଶ୍ ଭଲଭାବେ ଗତି କରିପାରେ । ବିଜ୍ଞାନ ହେଉଛି ନିଜେ ନିଜର ଦର୍ଶନ ।

ଦୃଷ୍ଟବାଦୀମାନଙ୍କର ଦାବୀ ହେଲା ଯେ ସେମାନେ ବସ୍ତୁବାଦୀ ନୁହନ୍ତି କି ଭାବବାଦୀ ବି ନୁହନ୍ତି ; ସେମାନେ ହେଉଛନ୍ତି ବିଜ୍ଞାନର ଲୋକ, ପରୀକ୍ଷାଲବ୍ଧ ଘଟଣା-ବଳୀର ଅନୁସନ୍ଧିତ୍ସୁ । ଏଇ ଆବରଣର ତଳେ କାର୍ଯ୍ୟତଃ ଭାବବାଦୀ ଦର୍ଶନ ଉଙ୍କି ମାରେ । କାରଣ, ଦର୍ଶନର ମୌଳିକ ପ୍ରଶ୍ନରେ ଉତ୍ତର ଦେବାକୁ ନାସ୍ତି କରି ଏବଂ ବିଜ୍ଞାନ ତା'ର ଉତ୍ତର ଦେବାକୁ ଅସମର୍ଥ ବୋଲି ଅନୁମୋଦନ କରିବା ଦ୍ୱାରା ଦୃଷ୍ଟବାଦୀମାନେ ଭୌତିକ ଜଗତରୁ ନିଜକୁ ବିଚ୍ଛିନ୍ନ କରିନିଅନ୍ତି ଏବଂ ଆପଣାର ଚେତନା ମଧ୍ୟରେ ନିଜକୁ ଆବଦ୍ଧ ରଖି ନିଃସଙ୍ଗ ହୋଇ ରହନ୍ତି । ଫଳରେ ଧୀରେ ଧୀରେ ସେମାନେ ମନୋଗତ ଭାବବାଦୀ କ୍ଷେତ୍ରକୁ ଖସିଆସନ୍ତି ।

ଅନ୍ୟ ଏକ କାରଣରୁ ମଧ୍ୟ ଏହା ପରିଷ୍କାର ଯେ ଯେଉଁ 'ତଥ୍ୟ' ଶବ୍ଦକୁ ସେମାନେ ଖୁବ ଜୋରରେ ପ୍ରୟୋଗ କରନ୍ତି ତଦ୍ୱାରା ସେମାନେ କେବଳ ଆମର ପ୍ରତ୍ୟକ୍ଷ ବିଷୟକୁ ବୁଝନ୍ତି । ଦୃଷ୍ଟବାଦୀମାନେ କହିଥାନ୍ତି ଯେ ଆମର ଇନ୍ଦ୍ରିୟାନୁଭୂତ ଓ ପ୍ରତ୍ୟକ୍ଷ ବିଷୟ କେବଳ ଆମକୁ ସତ୍ୟ ପ୍ରମାଣ ଯୋଗାଇଥାଏ ଏବଂ ଆମେ ତା'ରି ଅଧ୍ୟୟନରେ ନିଜକୁ ଆବଦ୍ଧ ରଖିବା ଉଚିତ ।

ବୁର୍ଜୁଆ ଦୃଷ୍ଟବାଦୀ ଦାର୍ଶନିକମାନେ ଜୋର ଦାବୀ କରନ୍ତି ଯେ ସେମାନେ ବସ୍ତୁବାଦ ଓ ଭାବବାଦ ଉଭୟଙ୍କର 'ଊର୍ଦ୍ଧ୍ୱରେ' । କିନ୍ତୁ ପ୍ରକୃତରେ ସେମାନେ

ଭାବବାଦୀ ଶିବିର ଅନ୍ତର୍ଭୁକ୍ତ ଏବଂ ସେହି ଭାବବାଦୀମାନଙ୍କ ସହିତ ମିଶି ବସ୍ତୁବାଦକୁ ଆକ୍ରମଣ କରନ୍ତି । ସେମାନେ ବସ୍ତୁବାଦକୁ ଅଧିବିଦ୍ୟା କହି ନିନ୍ଦା କରନ୍ତି । ଯେତେବେଳେ ବସ୍ତୁବାଦୀମାନେ କହନ୍ତି ଯେ ଏ ବିଶ୍ୱଜଗତ ଆମର ମନର ବାହାରେ ସ୍ୱାଧୀନ ସ୍ୱତନ୍ତ୍ରଭାବେ ଅବସ୍ଥିତ, ସେତେବେଳେ ସେମାନଙ୍କ ବିରୋଧରେ ଅଭିଯୋଗ ହୁଏ ଯେ ସେମାନେ "ଅନୁଭୂତିର ସୀମା ଅତିକ୍ରମ କରି" ଯାଉଛନ୍ତି । ଏ ଅଭିଯୋଗର ହାସ୍ୟାସ୍ପଦତା ପ୍ରମାଣ କରିବା କ'ଣ ଆଉ ଦରକାର ? ମନୁଷ୍ୟ ସମାଜର ପୁଞ୍ଜୀଭୂତ ଅଭିଜ୍ଞତାରୁ ହିଁ ବସ୍ତୁଗତ ଭୌତିକ ଜଗତର ବସ୍ତୁବାଦୀ ମତ ପରିଷ୍କାର ହୋଇଯାଏ ।

ମାର୍କସ୍‌ବାଦୀ ଦାର୍ଶନିକ ବସ୍ତୁବାଦ, ଅପ୍ରିଙ୍ଗହାନ 'ପରମ ସତ୍ତା' କଥା କହୁଥିବା ଅଧିବିଦ୍ୟା ସମେତ ସମସ୍ତ ପ୍ରକାର ଅଧିବିଦ୍ୟାକୁ * ସାଲଶର୍ମନ ଭାବେ ବିରୋଧ କରେ । 'ଭାବ' ହେଉଛି ବିଶ୍ୱଜଗତର ମୂଳଭିତ୍ତି ; ଭାବବାଦୀ ଅଧିବିଦ୍ୟାର ଏହି ଉଦ୍ଭାବନକୁ ଏବଂ ଧର୍ମ-ଅଧିବିଦ୍ୟାର ଏକ ଐଶ୍ୱରିକ ସତ୍ତା ଓ ଅବିନାଶୀ ଆତ୍ମାର ପ୍ରଚାର, ଏ ଉଭୟଙ୍କୁ ମାର୍କସ୍‌ବାଦୀ ଦାର୍ଶନିକ ବସ୍ତୁବାଦ ପ୍ରତ୍ୟାଖ୍ୟାନ କରିଥାଏ । ଅନ୍ୟ ଦିଗରେ, ଭୌତିକ ଜଗତ ଆମର ମନ ଓ ଚନ୍ତାର ବହିର୍ଭୂତ, ସ୍ୱାଧୀନ ସ୍ୱତନ୍ତ୍ରଭାବେ ବିଦ୍ୟମାନ, —ଏ ମତବାଦକୁ ଅଧିବିଦ୍ୟା ଆଖ୍ୟା ଦେଇ ନିନ୍ଦା କରିବାର ଦୃଷ୍ଟବାଦୀମାନଙ୍କ ପ୍ରଚେଷ୍ଟାକୁ ମଧ୍ୟ ମାର୍କ୍‌ସବାଦୀ ବସ୍ତୁବାଦ ଦୃଢ଼ଭାବେ ପ୍ରତ୍ୟାଖ୍ୟାନ କରେ । ଦୃଷ୍ଟବାଦୀମାନେ ନିଜର ପାପକୁ ଅନ୍ୟ ମୁଣ୍ଡରେ ବୋଳିଦିଅନ୍ତି । ଏକ କଳ୍ପିତ "ବସ୍ତୁବାଦୀ ଅଧିବିଦ୍ୟା" ବିରୁଦ୍ଧରେ ମୌଖିକ ଆକ୍ରମଣର ଆବରଣ ତଳେ ଦୃଷ୍ଟବାଦୀମାନେ କାର୍ଯ୍ୟତଃ ମନୋଗତ ଭାବବାଦର ଅଧିବିଦ୍ୟାକୁ ପ୍ରଚାର କରିଥାନ୍ତି ।

ବସ୍ତୁବାଦ ଓ ଭାବବାଦ,—ଏହା ଛଡ଼ା ଦର୍ଶନରେ ଯେ କୌଣସି 'ତୃତୀୟ' ପନ୍ଥା ନାହିଁ, କି ଥାଇ ନ ପାରେ, ତାହା ଦର୍ଶନର ସମସ୍ତ ଇତିହାସ ଦ୍ୱାରା ପ୍ରତିପାଦିତ ହୋଇଛି । ପାଶ୍ଚାତ୍ୟ ବିଜ୍ଞାନୀ ଓ ଶିଳ୍ପବିଜ୍ଞାନୀମାନଙ୍କ ମଧ୍ୟରେ ଥିବା ଦୃଷ୍ଟବାଦର ସମର୍ଥକଗଣ ଯେତେ ଶୀଘ୍ର ଏହା ଉପଲବ୍ଧି କରିବେ ସେମାନେ ସେତେ ଚଞ୍ଚଳ ଦୃଷ୍ଟବାଦୀ ବିଭ୍ରାନ୍ତିରୁ ମୁକ୍ତ ହୋଇପାରିବେ ଏବଂ ବସ୍ତୁବାଦୀ ଦର୍ଶନର ସୁଦୃଢ଼ ବୈଜ୍ଞାନିକ ଭିତ୍ତି ଉପରେ ନିଜକୁ ସୁପ୍ରତିଷ୍ଠିତ କରିପାରିବେ ।

ଗତ ଶତାବ୍ଦୀର ଶେଷଭାଗକୁ, ଅଷ୍ଟ୍ରିୟାର ପଦାର୍ଥବିଦ୍ୟାବିତ୍ ଓ ଦାର୍ଶନିକ ଏରନଷ୍ଟ ମ୍ୟାକ୍‌ଙ୍କ ନାମ ଅନୁଯାୟୀ, ଦୃଷ୍ଟବାଦ ମ୍ୟାକ୍‌ବାଦଭାବେ ଆବିର୍ଭୂତ

---

* ଦର୍ଶନରେ "ଅଧିବିଦ୍ୟା" ଶବ୍ଦଟି ଦୁଇଟି ଜିନିଷକୁ ବୁଝାଏ । ପ୍ରଥମରେ ବିଶ୍ୱଜଗତ ସମ୍ପର୍କରେ ଦ୍ୱନ୍ଦ-ବିରୋଧୀ ଦୃଷ୍ଟିକୋଣ, ଦ୍ୱିତୀୟରେ "ସତ୍ୟର" କଳ୍ପନାମୂଳକ ବିଜ୍ଞାନବିରୋଧୀ ପାଣ୍ଡିତ୍ୟପୂର୍ଣ୍ଣ ଉଦ୍ଭାବନ, ସତ୍ତାର ଅତି ଇନ୍ଦ୍ରିୟାନୁଭୂତ କାର୍ଯ୍ୟାସ । ଦ୍ୱିତୀୟ ଅଧ୍ୟାୟରେ ଅଧିବିଦ୍ୟାର ବିଶଦ ବିବରଣୀ ମିଳିବ ।

ହେଲା । ଏହା ମଧ୍ୟ ଅନ୍ୟ ଭାବରେ ଇମ୍ପିରିଓ-କ୍ରିଟିସିଜମ୍ (ଅଭିଜ୍ଞତାର ସମାଲୋଚନା) ନାମରେ ପରିଚିତ ।

ମ୍ୟାକ୍ ଏବଂ ତାଙ୍କର ଶିଷ୍ୟବର୍ଗ, ବିଶେଷଭାବେ ତାଙ୍କ ରୁଷୀୟ ଶିଷ୍ୟ ଏ. ବଗ୍‌ଡାନଭ୍ ଦାବୀ କରିଥିଲେ ଯେ ସେ ବସ୍ତୁବାଦ ଓ ଭାବବାଦର 'ଏକଦେଶଦର୍ଶିତାକୁ' ଅତିକ୍ରମ କରିଛନ୍ତି । କିନ୍ତୁ ପ୍ରକୃତପକ୍ଷେ ମ୍ୟାକ୍‌ଙ୍କର ଦର୍ଶନ ମୌଳିକଭାବେ ମନୋଗତ ଭାବବାଦର ଅନ୍ୟ ଏକ ସଂସ୍କରଣ ।

ମ୍ୟାକ୍ ଦୃଢ଼ ଦାବୀ କରିଥିଲେ ଯେ ବିଶ୍ୱବ୍ରହ୍ମାଣ୍ଡର ପ୍ରାଥମିକ "ଉପାଦାନ" ହେଲା ଇନ୍ଦ୍ରିୟାନୁଭୂତିର ଗୁଚ୍ଛ । ପ୍ରତ୍ୟେକ ପଦାର୍ଥ ହେଉଛି "ଉପାଦାନମାନଙ୍କର ସମ୍ମିଶ୍ରଣ" (ଇନ୍ଦ୍ରିୟାନୁଭୂତିର ଗୁଚ୍ଛ) ଏବଂ ସମଗ୍ର ପ୍ରକୃତି ହେଉଛି "ଉପାଦାନମାନଙ୍କ ଅନୁବର୍ତ୍ତିତା"ର ସମଷ୍ଟି, ଯାହାକି ବିଶ୍ୱଜଗତ ସମ୍ବନ୍ଧରେ ଚିନ୍ତାରାଜ୍ୟରେ ମନୁଷ୍ୟ ଦ୍ୱାରା "ସଜ୍ଜିତ" ହୋଇଥାଏ । ଆମକୁ ପରିବେଷ୍ଟିତ କରି ରହିଥିବା ପ୍ରତ୍ୟେକ ପଦାର୍ଥକୁ ଆମର ଇନ୍ଦ୍ରିୟାନୁଭୂତିର ଗୁଚ୍ଛାରେ ପରିଣତ କରାଯାଇପାରେ,—ଏଇ ହେଲା ବିଶ୍ୱ-ଜଗତ ସମ୍ପର୍କରେ ମ୍ୟାକ୍‌ବାଦୀ ଉପଲବ୍ଧିର ନିର୍ଯ୍ୟାସ ।

ତେବେ ଏଇସବୁ ଉପାଦାନ (ଇନ୍ଦ୍ରିୟାନୁଭୂତିର ଗୁଚ୍ଛ) ହେଉଛି 'ନିରପେକ୍ଷ', ତାହା ବସ୍ତୁବାଦୀ ନୁହେଁ କି ଭାବବାଦୀ ନୁହେଁ, ତାହା ଦୈହିକ କି ମାନସିକ ପ୍ରକୃତି-ବିଶିଷ୍ଟ ନୁହେଁ, ଏଇ କଥା ଦାବୀ କରିବାଦ୍ୱାରା ମ୍ୟାକ୍‌ବାଦୀମାନେ ସେମାନଙ୍କର ମନୋଗତ ଭାବବାଦୀ ଦର୍ଶନର ମର୍ମକୁ ଘୋଡ଼ାଇବା ଲାଗି ବିଶେଷ ଯତ୍ନ କରୁଥିଲେ ।

ସେମାନଙ୍କ ଦର୍ଶନ ପୁରାପୁରି 'ଅନୁଭୂତି' ଉପରେ ପ୍ରତିଷ୍ଠିତ ଏବଂ ଅନୁଭୂତିହିଁ ସମସ୍ତ ଜ୍ଞାନର ଉତ୍ସ, ଏଇ ଦାବୀ କରିବା ଦ୍ୱାରା ଭାବବାଦକୁ ଘୋଡ଼ାଇବାର ସେଇ ଉଦ୍ଦେଶ୍ୟ ସାଧିତ ହେଉଥିଲା ।

ଲେନିନ ତାଙ୍କର ମାଟିରିଆଲିଜମ୍ ଆଣ୍ଡ ଇମ୍ପିରିଓ-କ୍ରିଟିସିଜମ୍ (ବସ୍ତୁବାଦ ଏବଂ ଅଭିଜ୍ଞତା-ସମାଲୋଚନା) ପୁସ୍ତକରେ ମ୍ୟାକ୍‌ବାଦୀ ଦର୍ଶନର ସମାଲୋଚନା କରିଛନ୍ତି । ଲେନିନ୍ ଦର୍ଶାଇଛନ୍ତି ଯେ 'ଅନୁଭୂତି' ଉପରେ ନିର୍ଭର କରିବା ଦ୍ୱାରା ସେମାନଙ୍କର ଦର୍ଶନ ଯେ ଏକ ବିଜ୍ଞାନ-ସିଦ୍ଧ ହୋଇଗଲା, ତା ନୁହେଁ । କାରଣ 'ଅନୁଭୂତି'କୁ ବସ୍ତୁବାଦୀ ଓ ଭାବବାଦୀ ଉଭୟ ମାର୍ଗରେ ବ୍ୟାଖ୍ୟା କରାଯାଇପାରେ । ବସ୍ତୁବାଦୀମାନେ ସ୍ୱୀକାର କରନ୍ତି ଯେ ଆମର ସମସ୍ତ ଜ୍ଞାନ ଅନୁଭୂତିପ୍ରସୂତ, କିନ୍ତୁ ସେଥି ସଙ୍ଗେ ସଙ୍ଗେ ଜୋର ଦେଇ କହିଥାନ୍ତି ଯେ ଆମର ଅନୁଭୂତି ବାହ୍ୟ ବସ୍ତୁସାର ଜଗତକୁ ବିସ୍ତୃତ କରେ, ଅନ୍ୟ ଅର୍ଥରେ ଆମ ଅନୁଭୂତିର ଏକ ବସ୍ତୁସାର ମର୍ମ ରହିଛି । ଆମର ଜ୍ଞାନ ଅନୁଭୂତିପ୍ରସୂତ, ଏଇ କଥା ସହିତ ମ୍ୟାକ୍‌ବାଦୀମାନେ ଏକମତ ହେଲା-ବେଳେ ସେମାନେ, ଅନୁଭୂତିଲବ୍ଧ ବସ୍ତୁସାର ବାସ୍ତବତାର ଅସ୍ତିତ୍ୱକୁ ଅସ୍ୱୀକାର

କରନ୍ତି । ତା ପରିବର୍ତ୍ତେ ସେମାନେ ଦାବୀ କରନ୍ତି ଯେ ବସ୍ତୁସାର ବିଶ୍ୱଜଗତ ସହିତ ଅନୁଭୂତିର କୌଣସି ସମ୍ପର୍କ ନାହିଁ, ତା'ର ସମ୍ବନ୍ଧ କେବଳ ଆମ ଇନ୍ଦ୍ରିୟାନୁଭୂତି, ଆମର ପ୍ରତ୍ୟକ୍ଷ ବିଷୟ ଓ ଧାରଣାମାନଙ୍କ ସହିତ । ତାହାହିଁ ଆମ ଅନୁସନ୍ଧାନର ପରିସର ହେବା ଉଚିତ । ସଂକ୍ଷେପରେ କହିଲେ, ମ୍ୟାକ୍‌ବାଦୀମାନେ ବାସ୍ତବରେ ମନୋଗତ ଭାବବାଦୀମାନଙ୍କର ମତବାଦହିଁ ଗ୍ରହଣ କରିଥାନ୍ତି ।

'ନିରପେକ୍ଷ ଉପାଦାନ' ଏଇ ଶବ୍ଦ ପ୍ରୟୋଗ ଦ୍ୱାରା ଭାବବାଦର ଊର୍ଦ୍ଧ୍ୱକୁ ଉଠିବା ଲାଗି ମ୍ୟାକ୍‌ବାଦୀମାନେ ଯେଉଁ ଉଦ୍ୟମ କରନ୍ତି ତାହା ସେମାନଙ୍କର ଦାର୍ଶନିକ ଅପକୌଶଳ ବୋଲି ଲେନିନ ତୀବ୍ର ନିନ୍ଦା କରିଛନ୍ତି । ସେ ଲେଖିଥିଲେ :

"ମାନବିକ ଇନ୍ଦ୍ରିୟାନୁଭୂତି କ'ଣ ତା ପ୍ରତ୍ୟେକେ ଜାଣନ୍ତି; କିନ୍ତୁ ମନୁଷ୍ୟଠାରୁ ସ୍ୱାଧୀନ ଇନ୍ଦ୍ରିୟାନୁଭୂତି, ମନୁଷ୍ୟ-ପୂର୍ବ ଇନ୍ଦ୍ରିୟାନୁଭୂତି ଅର୍ଥହୀନ, ଏକ ଜୀବନହୀନ ବିମୂର୍ତ୍ତିତା, ଏକ ଭାବବାଦୀ ଚାତୁରୀ ।" ଲେନିନ୍ ଦର୍ଶାଇଥିଲେ ଯେ ସେଇ "ନିରପେକ୍ଷ ଉପାଦାନ" ହେଉଛି ପ୍ରକୃତରେ ଇନ୍ଦ୍ରିୟାନୁଭୂତି, ଏବଂ ଯେଉଁ ମତବାଦ ତାକୁ ବିଶ୍ୱଜଗତର ମୂଳଭିତ୍ତିଭାବେ ଠିଆ କରିବାକୁ ଚେଷ୍ଟା କରେ ତାହା ହେଲା ମନୋଗତ ଭାବବାଦ ।

ମନୁଷ୍ୟ ପୂର୍ବରୁ ପ୍ରକୃତିର ଅସ୍ତିତ୍ୱ ଥିଲା କି ? ମ୍ୟାକ୍‌ବାଦୀଙ୍କୁ ଲେନିନ୍ ଏ ପ୍ରଶ୍ନ ପଚାରିଥିଲେ । ଯଦି ପ୍ରକୃତି ମନୁଷ୍ୟର ମନର ସୃଷ୍ଟି, ଯଦି ତାହାକୁ ମନୁଷ୍ୟର ଇନ୍ଦ୍ରିୟାନୁଭୂତିରେ ପରିଣତ କରାଯାଇପାରେ, ତାହା ହେଲେ ଫଳ ହେବ—ମନୁଷ୍ୟହିଁ ପ୍ରକୃତିର ସୃଷ୍ଟିକର୍ତ୍ତା ; ପ୍ରକୃତି ମନୁଷ୍ୟକୁ ଗଢ଼ି ନାହିଁ । କିନ୍ତୁ ଆମେ ପ୍ରାକୃତିକ ବିଜ୍ଞାନରୁ ଜାଣୁ ଯେ ମନୁଷ୍ୟର ବହୁପୂର୍ବରୁ ପ୍ରକୃତି ବିଦ୍ୟମାନ ।

ମନୁଷ୍ୟ କ'ଣ ମସ୍ତିଷ୍କ ସାହାଯ୍ୟରେ ଚିନ୍ତା କରେ ? ଲେନିନ୍ ମ୍ୟାକ୍‌ବାଦୀମାନଙ୍କୁ ଏ ପ୍ରଶ୍ନ କରିଥିଲେ । ସେମାନଙ୍କ ମତବାଦରୁ ଏ ସିଦ୍ଧାନ୍ତରେ ପହଞ୍ଚିବାକୁ ହୁଏ ଯେ ମନୁଷ୍ୟର ମସ୍ତିଷ୍କ ନିଜେ ହେଉଛି "ଉପାଦାନମାନଙ୍କର ସମ୍ମିଶ୍ରଣ", ଇନ୍ଦ୍ରିୟାନୁଭୂତିର ସମ୍ମିଶ୍ରଣ ; ତାହା ହେଉଛି ମନୁଷ୍ୟର ମାନସିକ କ୍ରିୟାର ଫଳ । ସେ କ୍ଷେତ୍ରରେ ଆମକୁ ଧରିନେବାକୁ ପଡ଼ିବ ଯେ ମନୁଷ୍ୟ, ମସ୍ତିଷ୍କର ବିନା ସାହାଯ୍ୟରେ ଚିନ୍ତା କରେ, ମସ୍ତିଷ୍କ ହେଉଛି ଚିନ୍ତାର କେବଳ ଏକ "ସଂଗଠନ"; ମାନସିକ କ୍ରିୟାର ଏକ ଉତ୍କୃଷ୍ଟ ବ୍ୟାଖ୍ୟା ଯୋଗାଇବା ଲାଗି ତା'ର ଉଦ୍ଭାବନ ।

ମୋ ଛଡ଼ା ଅନ୍ୟ ଲୋକମାନଙ୍କର କ'ଣ ଅସ୍ତିତ୍ୱ ରହିଛି ? ଲେନିନ୍ ମ୍ୟାକ୍‌ବାଦୀମାନଙ୍କୁ ଏ ପ୍ରଶ୍ନ କରିଥିଲେ । ମ୍ୟାକ୍‌ବାଦୀ ଦର୍ଶନର ଅପରିହାର୍ଯ୍ୟ ସିଦ୍ଧାନ୍ତ ହେଉଛି ଯେ ଅନ୍ୟ ସମସ୍ତ ଲୋକ ହେଉଛନ୍ତି ଇନ୍ଦ୍ରିୟାନୁଭୂତିର ମାନସିକ ଛାୟା, ଅର୍ଥାତ୍ ମୋର ମସ୍ତିଷ୍କର ଫଳ ।

ମ୍ୟାକ୍‌ବାଦୀ ଦର୍ଶନ ସୋଽହଂବାଦ ଦଗକୁ ଟେନଯାଏ । ଏହା ତା'ର ଅସାରତାର ଚୂଡ଼ାନ୍ତ ପ୍ରମାଣ । ଚଳନ୍ତ ଶତାବ୍ଦୀର ପ୍ରାରମ୍ଭରେ ଏହାର ବ୍ୟାପକ ପ୍ରଭାବ ଥିଲା । ବିଂଶ ଦଶକରେ ତାହା ଦୃଷ୍ଟବାଦର ନୂତନ ରୂପ ଲାଗି ପଥ ଉନ୍ମୁକ୍ତ କଲା ।

**ଭାବବାଦର ମୂଳ**

ଭାବବାଦୀ ଦର୍ଶନ ବିଶ୍ୱଜଗତ ସମ୍ପର୍କରେ ଆମକୁ ଏକ ଅତି ଭ୍ରାନ୍ତ ବିକୃତ ଦୃଷ୍ଟିକୋଣ ଦଏ । ଚିନ୍ତନ ଏବଂ ତା'ର ଭୌତିକ ଭିତ୍ତି ମଧ୍ୟରେ ଥିବା ପ୍ରକୃତ ସମ୍ପର୍କକୁ ଏହା ଭୁଲଭାବେ ଉପସ୍ଥାପିତ କରେ । କେତେକ କ୍ଷେତ୍ରରେ ସତ୍ୟକୁ ଘୋଡ଼ାଇବା ବା ବିକୃତ କରିବାର ଇଚ୍ଛାକୃତ ଉଦ୍ଦେଶ୍ୟ ରଖି ଜାଣିଶୁଣି ଏହା କରା-ଯାଇଥାଏ । ଆଜିକାଲି ଏହା ବେଶି ମାତ୍ରାରେ ଦେଖାଯାଏ, ଯେହେତୁ ବୁର୍ଜୁଆ ଦାର୍ଶନିକମାନେ ଭାବବାଦ ପ୍ରଚାର ଦ୍ୱାରା ଶାସକଶ୍ରେଣୀର ଅନୁଗ୍ରହ ଲାଭ ପାଇଁ ବଡ଼ ବ୍ୟାକୁଳ । ହେଲେ, ଦର୍ଶନର ଇତିହାସରେ ଏଭଳି ବହୁ ଦୃଷ୍ଟାନ୍ତ ରହିଛି ଯେଉଁଠି ନିଷ୍ଠାପରଭାବେ ସତ୍ୟ ଅନୁସନ୍ଧାନ କରୁଥିବା ଦାର୍ଶନିକମାନଙ୍କ "ସତ୍‌-ଭ୍ରମ"ରୁ ଭାବବାଦୀ ମତବାଦର ଉଦ୍‌ଭବ ହୋଇଛି ।

ଅବଧାରଣ ପ୍ରକ୍ରିୟା ଅତୀବ ଜଟିଳ ଏବଂ ତା'ର ବହୁ ଦଗ ରହିଛି (ପାଠକମାନେ ତୃତୀୟ ଅଧ୍ୟାୟରେ ଦେଖିବେ) । ତେଣୁ ସେଥିପ୍ରତି ସର୍ବଦା ଏକଦେଶଦର୍ଶୀ ଦୃଷ୍ଟିଭଙ୍ଗୀର ସମ୍ଭାବନା ରହିଛି । ତା'ର ଏକ ବା ଅନ୍ୟ ଦଗର ତାତ୍ପର୍ଯ୍ୟକୁ ସମସ୍ତଙ୍କଠାରୁ ସ୍ୱାଧୀନ ଓ ସ୍ୱତନ୍ତ୍ରଭାବେ ଦେଖି ତାକୁ ପରମ ଓ ଅତିରଞ୍ଜିତ କରିବା ସମ୍ଭାବନା ବି ରହିଛି । ତାହା ଭାବବାଦୀ ଦାର୍ଶନିକମାନଙ୍କର ପଦ୍ଧତି । ଦୃଷ୍ଟାନ୍ତସ୍ୱରୂପ, ମ୍ୟାକ୍‌ବାଦୀ ଓ ଅପର ମନୋଗତ ଭାବବାଦୀମାନେ, ପରିବେଷ୍ଟିତ ବିଶ୍ୱଜଗତ ସମ୍ପର୍କରେ ଆମର ଯାବତୀୟ ଜ୍ଞାନ ଇନ୍ଦ୍ରିୟାନୁଭୂତି ପ୍ରଦତ୍ତ,—ଏହାକୁ ସେମାନେ ପରମ ଅବସ୍ଥାକୁ ଟେନଯାଆନ୍ତି, ଇନ୍ଦ୍ରିୟାନୁଭୂତି ଜାତ କରୁଥିବା ଭୌତିକ ପଦାର୍ଥମାନଙ୍କଠାରୁ ତାକୁ ସେମାନେ ବିଚ୍ଛିନ୍ନ କରନ୍ତି ଏବଂ ତା'ପରେ ତହିଁରୁ ଭାବବାଦୀ ସିଦ୍ଧାନ୍ତ ବାହାର କରନ୍ତି ଯେ, ବିଶ୍ୱଜଗତ କେବଳ ଇନ୍ଦ୍ରିୟାନୁଭୂତି ଭିନ୍ନ ଅନ୍ୟ କିଛି ନୁହେ ।

ଲେନିନ୍ ଦର୍ଶାଇଛନ୍ତି ଯେ ଅବଧାରଣ ଭିତରେ, ବାସ୍ତବତାରୁ କଳ୍ପନା-ବିଳାସକୁ ବିଚ୍ୟୁତ ହେବାର ସମ୍ଭାବନା, ବାସ୍ତବ ସମ୍ପର୍କ ପରିବର୍ତ୍ତେ କାଳ୍ପନିକ ପରସ୍ପର-ସମ୍ବନ୍ଧକୁ ଦେଖିବାର ସମ୍ଭାବନା ସଦାସର୍ବଦା ରହିଛି । ସଙ୍କୀର୍ଣ୍ଣତା ଓ ଏକଦେଶଦର୍ଶିତା, ମନୋଗତବାଦ ଓ ମନୋଗତ ଦୃଷ୍ଟିହୀନତା—ଏଇସବୁ ହେଲା ଭାବବାଦର ଜ୍ଞାନତାତ୍ତ୍ୱିକ ମୂଳ, ଅର୍ଥାତ୍ ସେଇ ଅବଧାରଣ ପ୍ରକ୍ରିୟା ମଧ୍ୟରେ ରହିଥିବା ତାହାର ମୂଳବୀଜ ।

କିନ୍ତୁ, ଏଇ ମୂଳବୀଜକୁ "ବୃକ୍ଷ"ରେ ରୂପାନ୍ତରିତ କରିବା ନିମନ୍ତେ, ଅବଧାରଣର ଧ୍ରୁତିକୁ ବସ୍ତୁବାଦ ତଥା ବସ୍ତୁବାଦୀ ପ୍ରାକୃତିକ ବିଜ୍ଞାନର ବିରୋଧ କରୁଥିବା ଭାବବାଦୀ ଦର୍ଶନ ବ୍ୟବସ୍ଥାର ଅନ୍ତର୍ଭୁକ୍ତ କରିବା ନିମନ୍ତେ, ନିର୍ଦ୍ଦିଷ୍ଟ ସାମାଜିକ ଅବସ୍ଥା ପ୍ରୟୋଜନ । ପୁଣି, ଏ ସମସ୍ତ ଭ୍ରାନ୍ତ ମତବାଦ ମଧ୍ୟ ନିର୍ଦ୍ଦିଷ୍ଟ ସାମାଜିକ ଶକ୍ତିପୁଞ୍ଜଙ୍କ ଅନୁକୂଳ ହୋଇଥିବା ଓ ସେମାନଙ୍କ ସମର୍ଥନ ଲାଭ କରୁଥିବା ବାଞ୍ଛନୀୟ ।

ବିଶ୍ୱବ୍ରହ୍ମାଣ୍ଡର ଅବଧାରଣ ସମ୍ପର୍କରେ ଏକଦେଶଦର୍ଶୀ ଏବଂ ମନୋଗତ ଦୃଷ୍ଟିଭଙ୍ଗୀ, ଭାବବାଦର କର୍ଦ୍ଦମ ଭିତରକୁ ଟାଣିନିଏ । ଲେନିନ୍ ଲେଖିଥିଲେ ଯେ ସେଠାରେ ତାହା "ଶାସକଶ୍ରେଣୀମାନଙ୍କର ଶ୍ରେଣୀସ୍ୱାର୍ଥ ଦ୍ୱାରା ଦୃଢ଼ୀଭୂତ ହୁଏ ।" ଏଇ ଶାସକଶ୍ରେଣୀ ହେଲେ ଦାସମାଲିକ, ସାମନ୍ତବାଦୀ ଏବଂ ବୁର୍ଜୁଆଶ୍ରେଣୀ । ଏହାର ମଧ୍ୟରେ ଭାବବାଦର ଶ୍ରେଣୀ ଭିତ୍ତି ନିହିତ ଅଛି ।

ଦାର୍ଶନିକ ଭାବବାଦର ପ୍ରତିକ୍ରିୟାଶୀଳ ପ୍ରକୃତି ଧର୍ମ ଓ ଧର୍ମଶାସ୍ତ୍ର ସହିତ ତା'ର ସମ୍ପର୍କରୁ ଅଧିକ ପରିସ୍ଫୁଟ ହୁଏ । ଲେନିନ୍ ଦର୍ଶାଇଛନ୍ତି ଯେ ପ୍ରତ୍ୟେକ ଜିନିସର ଦାର୍ଶନିକ ଭାବବାଦ, ଅନ୍ତିମ ପର୍ଯ୍ୟାଲୋଚନାରେ ଧର୍ମଶାସ୍ତ୍ର ଓ ଧର୍ମଯାଜକମାନଙ୍କର ଏକ ସୂକ୍ଷ୍ମ ରକ୍ଷାକବଚବିଶେଷ । ଯଦିଓ ଦାର୍ଶନିକ ଭାବବାଦ ଧର୍ମପ୍ରତି ତା'ର ସହାନୁଭୂତିକୁ ଖୋଲାଖୋଲି ଘୋଷଣା କରେ ନାହିଁ, ତଥାପି, ପ୍ରକୃତପକ୍ଷେ, ଧର୍ମର ଭିତ୍ତି ଯାହା ତା'ର ଭିତ୍ତି ମଧ୍ୟ ସେଇଯା । ସେଇଥିଯୋଗୁ ଗୀର୍ଜା ଓ ଧର୍ମସଂସ୍ଥାମାନେ ଏହାକୁ ବଡ଼ ଆଗ୍ରହରେ ସମର୍ଥନ କରନ୍ତି ଏବଂ ଦାର୍ଶନିକ ବସ୍ତୁବାଦ ପ୍ରତି ଶତ୍ରୁତା ଆଚରଣ କରନ୍ତି ; ସମ୍ଭବ ହେଲେ ତା'ର ସମର୍ଥକମାନଙ୍କ ପ୍ରତି ଦଣ୍ଡବିଧାନ କରନ୍ତି ।

## (୭) ସମସାମୟିକ ବୁର୍ଜୁଆ ଦର୍ଶନ

ଲେନିନ୍ ଦର୍ଶାଇଛନ୍ତି ଯେ, ଆଧୁନିକ ଦର୍ଶନଶାସ୍ତ୍ର ମଧ୍ୟ ଦୁଇ ହଜାର ବର୍ଷ ତଳର ଦର୍ଶନଶାସ୍ତ୍ର ଭଳି ଦଳୀୟ ଦର୍ଶନ । ଅନ୍ୟ ଭାଷାରେ ପୂର୍ବ ଭଳି ଆଜିକାଲିର ଦାର୍ଶନିକମାନେ ବସ୍ତୁବାଦୀ ଓ ଭାବବାଦୀ ଦୁଇଟି ପରସ୍ପରବିରୋଧୀ ଶିବିରରେ ବିଭକ୍ତ । ତେବେ ସେମାନଙ୍କ ଭିତରେ ଚାଲିଥିବା ସଂଗ୍ରାମ ଯେ ପରସ୍ପରବିରୋଧୀ ସାମାଜିକ ଶ୍ରେଣୀ ଓ ଗୋଷ୍ଠୀମାନଙ୍କ ମତ ଓ ଭାବଧାରାର ପ୍ରକାଶ ମାତ୍ର, ପର୍ଯ୍ୟାଲୋଚନା କଲେ ସହଜରେ ଏହା ଧରାପଡ଼ିଯାଏ । ଦ୍ୱନ୍ଦ୍ୱମୂଳକ ବସ୍ତୁବାଦୀ ଦର୍ଶନ ହେଲା ଶ୍ରମିକ-ଶ୍ରେଣୀର ମତବାଦ, ଆମ ଯୁଗର ପ୍ରଗତିଶୀଳ ସାମାଜିକ ଶକ୍ତିମାନଙ୍କର ମତବାଦ । ଅନ୍ୟ ପକ୍ଷରେ ଭାବବାଦୀ ଦର୍ଶନ ମଧ୍ୟରେ ଥିବା ବିଭିନ୍ନ ଭାବଧାରା, ପ୍ରତିକ୍ରିୟାଶୀଳ ଶକ୍ତିର ଓ ସାମ୍ରାଜ୍ୟବାଦୀ ବୁର୍ଜୁଆମାନଙ୍କର ବିଶ୍ୱଦୃଷ୍ଟିଭଙ୍ଗୀକୁ ହିଁ ପ୍ରକାଶ କରିଥାଏ । ଆଧୁନିକ ବୁର୍ଜୁଆ ଦର୍ଶନର ବିଶେଷ ଲକ୍ଷଣ ହେଲା ଯେ, ତାହା ମାର୍କସ, ଏଙ୍ଗେଲସ ଓ

ଲେନିନଙ୍କ ଶିକ୍ଷାକୁ ଖଣ୍ଡନ କରିବା, ସେଇସବୁ ଶିକ୍ଷା-ବିରୋଧୀ ସଂଗ୍ରାମରେ ବୁର୍ଜୁଆ ଦର୍ଶନର ଆସ୍ଥାନକୁ ବଞ୍ଚାଇ ରଖିବା ଏବଂ ପୁଞ୍ଜିବାଦୀ ସମାଜକୁ ରକ୍ଷା କରିବା ଦିଗରେ ଉଦ୍ୟମ କରିଥାଏ ।

ଆଧୁନିକ ବୁର୍ଜୁଆ ଦର୍ଶନ ଅସଂଖ୍ୟ ଧାରା, ଉପଧାରା ଓ ଗୋଷ୍ଠୀରେ ବିଭକ୍ତ । କିନ୍ତୁ ମୌଳିକଭାବେ—ଗୋପନରେ ହେଉ ବା ପ୍ରକାଶ୍ୟରେ ହେଉ—ସେମାନେ ସମସ୍ତେ ଭାବବାଦର ଭିନ୍ନ ଭିନ୍ନ ରୂପ ମାତ୍ର ; ମିଥ୍ୟା ଓ ଅଳୀକ ବିଶ୍ୱଦୃଷ୍ଟିଭଙ୍ଗୀର ବିଭିନ୍ନ ସ୍ୱରୂପ ।

ବିଗତ ଶତାବ୍ଦୀର ଶେଷଭାଗ ତୁଳନାରେ, ଆମର ଏ ଯୁଗର ଦାର୍ଶନିକ ଭାବବାଦ ଆହୁରି ଅଧିକ ଅଧଃପତିତ ଓ ପ୍ରତିକ୍ରିୟାଶୀଳ ହୋଇପଡ଼ିଲାଣି । ଅଯୌକ୍ତିକତା ତା'ର ଏକ ସୌଖୀନ ଧାରା ହୋଇଛି । ଏହାର ମତରେ ଏ ବିଶ୍ୱଜଗତ ଓ ଜୀବନର କୌଣସି ଯୁକ୍ତିଯୁକ୍ତ ଅର୍ଥ ନାହିଁ, ମନୁଷ୍ୟର ମନ ବାସ୍ତବତାକୁ ଉପଲବ୍ଧି କରିବାରେ ଅସମର୍ଥ । ପୁଣି ବିଭିନ୍ନ ପ୍ରକାରର ମତବାଦ ସୁଦୂରପ୍ରସାରୀ ପ୍ରଭାବ ବିସ୍ତାର କରି ରହିଛନ୍ତି, ଯେଉଁମାନେ କି ବିଜ୍ଞାନକୁ ବିପଥଗାମୀ କରିବା ଦିଗରେ ବୈଜ୍ଞାନିକ ଉଦ୍ଭାବନମାନଙ୍କର ପ୍ରୟୋଗ କରନ୍ତି । ଶେଷକୁ, ଅତି ସୁସ୍ପଷ୍ଟ ଧର୍ମନୀତିବାଦର ବର୍ଦ୍ଧିଷ୍ଣୁ ପ୍ରଭାବ ବି ରହିଛି ।

ପୁଞ୍ଜିବାଦୀ ଦେଶରେ ବୁଦ୍ଧିଜୀବୀ ଜୀବନର ବୈଶିଷ୍ଟ୍ୟ ହେଲା ନିମ୍ନ ପ୍ରକାରର ଏକ କୂଟାଭାସ । ଭୌତିକ ଜଗତ ସମ୍ପର୍କରେ ଆମର ଜ୍ଞାନକୁ ଗଭୀରତର କରି ଅଦମନୀୟ ବେଗରେ ବିଜ୍ଞାନ ଅଗ୍ରସର ହେଉଛି ଏବଂ ପ୍ରୟୋଗବିଦ୍ୟାର ସହଯୋଗରେ ପ୍ରକୃତି ଉପରେ ମନୁଷ୍ୟର ଆଧିପତ୍ୟକୁ ଅସମ୍ଭବଭାବେ ବୃଦ୍ଧି କରୁଛି । ଶତାଧିକ ବର୍ଷ ହେଲା ବିକାଶ ଲାଭ କରି ଆସୁଥିବା ପ୍ରଗତିଶୀଳ ବସ୍ତୁବାଦୀ ଦର୍ଶନ, ଦ୍ୱନ୍ଦ୍ୱମୂଳକ ଓ ଐତିହାସିକ ବସ୍ତୁବାଦ, ପ୍ରକୃତି ତଥା ସମାଜର ପ୍ରପଞ୍ଚାବଳୀ ସମ୍ପର୍କରେ ଏକ ବିଶୁଦ୍ଧ ବୈଜ୍ଞାନିକ ବ୍ୟାଖ୍ୟା ପ୍ରଦାନ କରେ । କିନ୍ତୁ ବହୁ ଦାର୍ଶନିକ, ବେଳେବେଳେ ବୈଜ୍ଞାନିକମାନେ ସୁଦ୍ଧା, କ୍ରମାଗତଭାବେ ଦାବୀ କରିଚାଲିଛନ୍ତି ଯେ, ବାହ୍ୟ ଜଗତର କୌଣସି ବସ୍ତୁସାର ଅସ୍ତିତ୍ୱ ନାହିଁ, ବିଜ୍ଞାନ ବାସ୍ତବ ସତ୍ୟ ଉଦ୍‌ଘାଟିତ କରିପାରେ ନା । ତାଙ୍କ ମତରେ ମନୁଷ୍ୟ ପଦାର୍ଥମାନଙ୍କର ପ୍ରକୃତ ପ୍ରକୃତି ବୁଝିବାକୁ ଅସମର୍ଥ । ଅତଏବ, ଅପ୍ରାକୃତ ଶକ୍ତି ଉପରେ ଭରସା ରଖିବା ଏବଂ ଗୀର୍ଜାର ଶିକ୍ଷା ବା ଧର୍ମ ଉପଦେଶକୁ ଗ୍ରହଣ କରିବା ହେଉଛି ବିଜ୍ଞତାର କାର୍ଯ୍ୟ ।

ଏହା କାହିଁକି ହେଉଚି ? ସବୋଚ୍ଚ ବିଜ୍ଞାନୀ ଓ ତାଙ୍କ ଭଳି ଅନ୍ୟ ବୁଦ୍ଧିମାନ୍ ଲୋକେ ବିଜ୍ଞାନ ତଥା ସାମାଜିକ ବ୍ୟାବହାରିକ କର୍ମର ପରିପନ୍ଥୀ ଭାବବାଦୀ ଦୃଷ୍ଟିକୋଣକୁ କିପରି ଗ୍ରହଣ କରୁଛନ୍ତି ?

ବସ୍ତୁବାଦକୁ ଗ୍ରହଣ କରିବା ବାଟରେ ନିଷ୍ପତ୍ତିମୂଳକ ପ୍ରତିବନ୍ଧକ ହେଉଛି ବୁର୍ଜୁଆର ଶ୍ରେଣୀସ୍ୱାର୍ଥ, ବୁର୍ଜୁଆ ବୁଦ୍ଧିଜୀବୀମାନଙ୍କର କମ୍ୟୁନିଷ୍ଟବିରୋଧୀ ପକ୍ଷପାତ ବିଚାର । ଆଧୁନିକ ବୈଜ୍ଞାନିକ ବସ୍ତୁବାଦର, ଅର୍ଥାତ୍ ଦ୍ୱନ୍ଦ୍ୱମୂଳକ ଓ ଐତିହାସିକ ବସ୍ତୁବାଦର ଯଦି ଦୃଢ଼ ପ୍ରୟୋଗ କରାଯାଏ ତେବେ ତାହା ଲଣିଷକୁ, ଯୁକ୍ତିଯୁକ୍ତଭାବେ, ଶ୍ରମିକ-ଶ୍ରେଣୀର ବିଚାର ତଥା ବୈଜ୍ଞାନିକ ସମାଜବାଦର ଗ୍ରହଣ ପଥରେ ଆଗେଇନେବ । ବୁର୍ଜୁଆଙ୍କ କବଳରୁ ଖସି ଆସିବାକୁ ଯେଉଁମାନେ କୁଣ୍ଠିତ ସେମାନେ ବସ୍ତୁବାଦ ଗ୍ରହଣ କରିବାପାଇଁ ଆତଙ୍କିତ ହେବାର ଏହା ଅନ୍ୟତମ କାରଣ । ଏଭଳି ଲୋକଙ୍କ ଭିତରେ ବୈଜ୍ଞାନିକ ବି ଅଛନ୍ତି । ପୁଞ୍ଜିବାଦର ଅତି ପ୍ରଗଲ୍ଭ, ସକ୍ରିୟ ରକ୍ଷକ ଓ ମତାଦର୍ଶ-ବାଦୀମାନେ, ଦ୍ୱନ୍ଦ୍ୱମୂଳକ ବସ୍ତୁବାଦ ଭିତରେ ସେମାନଙ୍କର ତୀବ୍ରତମ ତାତ୍ତ୍ୱିକ ବିରୋଧୀ-ମାନଙ୍କୁ ଦେଖନ୍ତି; ଏବଂ ତାଙ୍କୁ ଯେକୌଣସି ଉପାୟରେ ଖଣ୍ଡନ କରିବାକୁ ସେମାନେ ଆପଣାର ଧ୍ୟେୟ ସ୍ଥିର କରିଛନ୍ତି । ଏଥିଲାଗି ସେମାନେ ସମସ୍ତ ପ୍ରକାର ନୈତିକ ଓ ଭାବଗତ ଚାପ ପକାନ୍ତି—ରେଡିଓ, ଟେଲିଭିଜନ, ସ୍କୁଲ, ଧର୍ମ ମନ୍ଦିର, ନିବନ୍ଧ, ସାମ୍ବାଦିକତା ଆଦି । ଦିନ ଦିନ ବର୍ଷ ବର୍ଷ ଧରି ଏଇ ପ୍ରଚାରକୁ ଚାଲୁ ରଖାଯାଏ । ତାହା ଫଳପ୍ରଦ ହେବା ସ୍ୱାଭାବିକ ।

ଭାବବାଦ କାହିଁକି ଏପରି ଶକ୍ତିଶାଳୀ ବୋଲି ପ୍ରମାଣିତ ହେଉଛି ତା'ର ଆଉ କେତେକ କାରଣ, ଆଧୁନିକ ବୁର୍ଜୁଆ ଦର୍ଶନର ମୌଳିକ ଧାରାର ପରୀକ୍ଷା ଦ୍ୱାରା ପ୍ରକଟିତ ହେବ ।

## ଯୁକ୍ତି ବିରୁଦ୍ଧରେ ଦର୍ଶନ

ନୈରାଶ୍ୟବାଦ, ଅଯୌକ୍ତିକତା ଏବଂ ବୈଜ୍ଞାନିକ ବିଶ୍ୱଦୃଷ୍ଟିଭଙ୍ଗୀ ପ୍ରତି ଶତ୍ରୁତା—ଆଧୁନିକ ବୁର୍ଜୁଆ ମତବାଦର ଏଇସକଳ ବୈଶିଷ୍ଟ୍ୟ, ତା'ର ସବୁଠାରୁ ସୌଖୀନ ଦାର୍ଶନିକ ନୀତିରେ, ଅର୍ଥାତ୍ ଅସ୍ତିତ୍ୱବାଦରେ ସ୍ପଷ୍ଟ ପରିଦୃଷ୍ଟ ହୁଏ । ଏହାର ପ୍ରତିଷ୍ଠାତା ଜର୍ମାନୀର ଭାବବାଦୀ ଦାର୍ଶନିକ ମାର୍ଟିନ୍ ହାଇଡଗର୍ । ସେ ଊନବିଂଶ ଶତାବ୍ଦୀର ପ୍ରାରମ୍ଭ ସମୟର ଡେନମାର୍କବାସୀ ରହସ୍ୟବାଦୀ ସୋରେନ୍ ଆବାୟି କେର୍କଗାର୍ଡ଼ ମତବାଦକୁ ବହୁଳାଂଶରେ ଅନୁସରଣ କରିଥିଲେ । ଅନ୍ୟାନ୍ୟ ମୁଖ୍ୟ ଅସ୍ତିତ୍ୱବାଦୀମାନେ ହେଲେ କାର୍ଲ ଜାସ୍‌ପର୍ସ୍, ଜନ୍ ପଲ୍ ସାର୍ତ୍ରେ, ଜି. ମାର୍ସେଲ ଏବଂ ଆଲ୍‌ବର୍ଟ କ୍ୟାମସ୍ ।

ଅସ୍ତିତ୍ୱବାଦୀମାନେ ଯେଉଁସବୁ ଅତି ସାଧାରଣ ସମସ୍ୟା ଉତ୍ଥାପନ କରିଛନ୍ତି ତାହା ହେଉଛି—ଜୀବନର ଅର୍ଥ, ବିଶ୍ୱବ୍ରହ୍ମାଣ୍ଡରେ ମନୁଷ୍ୟର ସ୍ଥାନ, ଏବଂ ମନୁଷ୍ୟ ଜୀବନର ଅବଲମ୍ବିତ ମାର୍ଗ । ଏହା ଏକ ଅତି ପୁରାତନ ସମସ୍ୟା, କିନ୍ତୁ ବର୍ତ୍ତମାନ ଅବସ୍ଥାରେ ଏହା ସେ ସମସ୍ତଙ୍କ ପକ୍ଷେ ବିଶେଷ ଗୁରୁତ୍ୱପୂର୍ଣ୍ଣ ହୋଇଛି, ଯେଉଁମାନେ

ଅନୁଭବ କରନ୍ତି କି ବୁର୍ଜୁଆ ସମାଜର ଏ ଜଟିଳ ଓ ବିରୋଧିତାପୂର୍ଣ୍ଣ ଅବସ୍ଥା ମଧ୍ୟରେ ସେମାନେ ଆପଣାର ସ୍ଥାନ ନିରୂପଣ କରିବା ଉଚିତ, ଏବଂ ପ୍ରଗତି ଓ ପ୍ରତିକ୍ରିୟାଶୀଳ ଶକ୍ତି ମଧ୍ୟରେ ଚାଲିଥିବା ସଂଗ୍ରାମ ପ୍ରତି ସେମାନଙ୍କର ଧାରଣା ପ୍ରକାଶ କରିବା ଦରକାର।

ଅତଏବ ଅସ୍ତିତ୍ୱବାଦୀମାନେ ସମସ୍ୟାର ଏକ ଅତି ଆବଶ୍ୟକ ପ୍ରଶ୍ନ ସ୍ପର୍ଶ କରିଛନ୍ତି। ହେଲେ, ସେମାନେ ଯେଉଁ ସିଦ୍ଧାନ୍ତ ବା ସମାଧାନ ପ୍ରଦାନ କରନ୍ତି ତାହା ଏକ କ୍ଷୟଶୀଳ, ଭାବବାଦୀ ବିଶ୍ୱଦୃଷ୍ଟିଭଙ୍ଗୀ ଉପରେ ଆଶ୍ରିତ। ତା'ର ପ୍ରାରମ୍ଭିକ ସୂତ୍ର ହେଲା : ବ୍ୟକ୍ତିର ଚେତନା ସମାଜଠାରୁ ବିଚ୍ଛିନ୍ନ ଏବଂ ତାହାର ବିରୋଧୀ, ତାହା ପୁଣି ନିଜର ଚିନ୍ତା ଓ ଅନୁଭବଦ୍ୱାରା ଜୀବନ୍ତ। ଏଇ ସମସ୍ତ ମତବାଦ ଯେ ପ୍ରତାରଣା-ପୂର୍ଣ୍ଣ ତାହା ସେଇ ତ୍ରୁଟିଯୁକ୍ତ ଆରମ୍ଭ ଦ୍ୱାରା ପ୍ରଥମରୁ ଧରା ପଡ଼ିଯାଏ।

ଅସ୍ତିତ୍ୱବାଦର ସମର୍ଥକମାନେ ଦାବୀ କରନ୍ତି ଯେ ଏହା ଏକ ସାଧାରଣ ନୀତିବାଦ, କିନ୍ତୁ ପ୍ରକୃତରେ ତାହା ପୁରାପୁରି ବ୍ୟକ୍ତିର 'ଅସ୍ତିତ୍ୱ' ନେଇ ବିଚାର କରେ। କେତେକ ଅସ୍ତିତ୍ୱବାଦୀଙ୍କର 'ଏଥିପରି' ଯୁକ୍ତିକୁ ଛାଡ଼ିଦେଲେ, ଏକମାତ୍ର ବାସ୍ତବତା ଯାହାକୁ ସେମାନେ ସ୍ୱୀକାର କରନ୍ତି ତାହା ହେଲା ଏଇ ଚେତନା ଯେ, "ମୋର ଅସ୍ତିତ୍ୱ ଅଛି"। ବାହ୍ୟ ଜଗତକୁ ଏକ ରହସ୍ୟମୟ, ବିଚାରବୁଦ୍ଧି ଓ ନ୍ୟାୟ-ସଙ୍ଗତ ଚିନ୍ତାର ଅଗମ୍ୟଭାବେ ଚିତ୍ରଣ କରାଯାଏ। ସାର୍ତ୍ରେ ଲେଖିଥିଲେ, "ସତ୍ତା ହେଉଛି ବିଚାରବିହୀନ, ହେତୁ ଓ ଅପରିହାର୍ଯ୍ୟତାଶୂନ୍ୟ।" ଅନ୍ୟାନ୍ୟ ସବୁ ମନୋଗତ ଭାବବାଦୀଙ୍କ ଭଳି ଅସ୍ତିତ୍ୱବାଦୀମାନେ ପ୍ରକୃତି, ମହାଶୂନ୍ୟ ଓ କାଳର ବସ୍ତୁସାର ବାସ୍ତବତାକୁ ଅସ୍ୱୀକାର କରନ୍ତି। ହିଡ଼ଗର୍‌ଙ୍କ ଉକ୍ତି ଅନୁସାରେ ମନୁଷ୍ୟର ଅସ୍ତିତ୍ୱରେ ହିଁ କେବଳ ବିଶ୍ୱଜଗତର ଅସ୍ତିତ୍ୱ : "ଯଦି ଅସ୍ତିତ୍ୱ ନାହିଁ, ତେବେ ବିଶ୍ୱବ୍ରହ୍ମାଣ୍ଡର ମଧ୍ୟ ଅସ୍ତିତ୍ୱ ରହି ନ ପାରେ।"

ମନୁଷ୍ୟ ପକ୍ଷରେ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ହେଉଛି ତା'ର ଅସ୍ତିତ୍ୱ, ଏଇ ଯୁକ୍ତି ଧରି ଅସ୍ତିତ୍ୱବାଦୀମାନେ, ମନୁଷ୍ୟର ଯେ ଶେଷ ଅଛି ଏବଂ ତା'ର ସମସ୍ତ ଜୀବନ ମୃତ୍ୟୁ ଭୟରେ ଅଭିବାହିତ ହେଉଛି, ଏଇ ସୂକ୍ଷ୍ମ ବିଚାରର ଜାଲ ବୁଣିବାରେ ବ୍ୟସ୍ତ। ସେମାନଙ୍କ ମତରେ ଦର୍ଶନର କାମ ହେଲା ଏଇ ଭୟକୁ ଜାଗ୍ରତ ଓ ଜୀବନ୍ତ ରଖିବା। ଏହାକୁ ଦାର୍ଶନିକ ଭାଷା ଦେଇ ଜାସ୍‌ପର୍ସ୍ କହିଛନ୍ତି, ଦାର୍ଶନିକ ଦୃଷ୍ଟିରେ ବିଚାର କରିବା ମାନେ ମରିବାକୁ ଶିଖିବା।

ଅବଶ୍ୟ, ଅସ୍ତିତ୍ୱବାଦୀମାନେ ଭଲକରି ଜାଣନ୍ତି ଯେ ଏଇ ଭୟ ସଞ୍ଚାରର ସର୍ବୋତ୍କୃଷ୍ଟ ଉପାୟ ହେଉଛି ସମାଜ ଦେହରୁ ମନୁଷ୍ୟକୁ ବିଚ୍ଛିନ୍ନ କରିଦେବା, ତା ମଧ୍ୟରେ ଅସହାୟତା ଓ ଏକୁଟିଆ ଥିବାର ଭାବନା ଜାଗ୍ରତ କରିବା। ତଦନୁସାରେ ସେମାନେ ଏ ଧାରଣା ଭର୍ତ୍ତି କରିବାକୁ ଚେଷ୍ଟା କରନ୍ତି ଯେ ଏଇ ବନ୍ଧୁବିହୀନ ଶତ୍ରୁପରିପୂର୍ଣ୍ଣ

ସଂସାରରେ ମଣିଷ 'ଏକାକୀ', ଅନ୍ୟ ଲୋକମାନଙ୍କ ସହିତ ତା'ର ସମ୍ପର୍କରେ ସେ ହେଉଛି ଏକ 'ଅବାସ୍ତବ' ଅସ୍ତିତ୍ୱ, ଆଉ ସମାଜ ତା'ଠାରୁ ତା'ର ବ୍ୟକ୍ତିତ୍ୱକୁ ଲୁଣ୍ଠନ କରେ ।

ପୁଞ୍ଜିବାଦୀ ସମାଜ ବ୍ୟକ୍ତିକୁ ଦମନ କରେ, ତାହା ତା'ର ବ୍ୟକ୍ତିତ୍ୱକୁ ଚାପି ରଖେ, ବହୁ ଲୋକ ଦୁଃଖର ସହିତ ଅନୁଭବ କରୁଥିବା ଏଇ ସନ୍ଦେହାତୀତ ଘଟଣାବଳୀକୁ ଅସ୍ତିତ୍ୱବାଦୀମାନେ ଦକ୍ଷତା ସହିତ ବ୍ୟବହାର କରନ୍ତି । ଅତ୍ୟାଚାରୀ ପୁଞ୍ଜିବାଦୀ ସମାଜ ବିରୁଦ୍ଧରେ କେତେକାଂଶ ବୁଦ୍ଧିଜୀବୀଙ୍କ ଭିତରେ ଉଠୁଥିବା ପ୍ରତିବାଦର ଭାବନାକୁ ସେମାନେ ବ୍ୟବହାର କରନ୍ତି ଏବଂ ତାକୁ ସମଗ୍ରଭାବେ ସମାଜବିରୋଧୀ ଭୁଲ ମାର୍ଗରେ ପରିଚାଳିତ କରନ୍ତି । କାରଣ, ଅସ୍ତିତ୍ୱବାଦୀଙ୍କ ମତରେ, ଅନ୍ୟମାନଙ୍କ ସହ ଯୋଗାଯୋଗ ବିନା ବ୍ୟକ୍ତିବିଶେଷ ପକ୍ଷରେ ତିଷ୍ଠିବା ସମ୍ଭବପର ନ ହେଲେ ସୁଦ୍ଧା, ସେ ପୁରାପୁରି ନିଃସଙ୍ଗ ଜୀବନ ଯାପନ କରେ ଏବଂ କେବଳ ନିଜେ ଆତ୍ମସ୍ଥ ହେବା ଦ୍ୱାରା ହିଁ ମୁକ୍ତି ପାଇପାରେ । ଗୋଷ୍ଠୀଦ୍ୱାରା ବ୍ୟକ୍ତି ଉପରେ ଯେଉଁ କର୍ତ୍ତବ୍ୟ ଲଦିଦିଆଯାଏ ତାହାକୁ କିମ୍ବା ପ୍ରଚଳିତ ନୈତିକ ମାନଦଣ୍ଡକୁ ଅସ୍ତିତ୍ୱବାଦୀମାନେ ସ୍ୱୀକାର କରନ୍ତି ନାହିଁ । ଅସ୍ତିତ୍ୱବାଦୀମାନଙ୍କ ନାଟକ ଓ ଉପନ୍ୟାସରେ ନାୟକର କୌଣସି ଦୃଢ଼ ବିଶ୍ୱାସ ନ ଥାଏ ଅଥବା ଅଧିକାଂଶ ସ୍ଥଳରେ ସେ ଅନୈତିକ ପ୍ରକୃତିବିଶିଷ୍ଟ ହୋଇଥାଏ । ତାଙ୍କ ମତରେ ମନୁଷ୍ୟର ସମସ୍ତ କ୍ରିୟା ଓ ସଂଗ୍ରାମ ନିରର୍ଥକ, ସଂସାର ଏକ କିମ୍ଭୂତକିମାକାର ରାଜ୍ୟ ଏବଂ ସମସ୍ତ ଇତିହାସ ଅର୍ଥହୀନ ।

ସର୍ବୋପରି, ଅସ୍ତିତ୍ୱବାଦୀଙ୍କର ମନୋଗତ ଭାବବାଦୀ ଦର୍ଶନ ମିଥ୍ୟା ପ୍ରତାରଣାପୂର୍ଣ୍ଣ, ଯେହେତୁ ତାହା ସମସ୍ତ ବାସ୍ତବତାକୁ କେବଳ ମନୁଷ୍ୟର ଅସ୍ତିତ୍ୱ ଏବଂ ତା'ର ଭାବପ୍ରବଣତାକୁ ଖସାଇଆଣେ ଏବଂ ସେଥି ସଙ୍ଗେ ସଙ୍ଗେ, ମନୁଷ୍ୟର ପ୍ରକୃତିକୁ ହିଁ ସମ୍ପୂର୍ଣ୍ଣ ବିକୃତ ଅର୍ଥ କରେ ।

ମନୁଷ୍ୟର ଜୀବନ ସମାଜ ସହିତ ବନ୍ଧା । କେଉଁ ଜିନିଷ ମନୁଷ୍ୟକୁ ପଶୁଜଗତରୁ ଊର୍ଦ୍ଧ୍ୱକୁ ଘେନିଯାଇଛି ? ତାହା ହେଉଛି, ସମାଜର ଏକ ସଭ୍ୟ ହିସାବରେ ତା'ର ଶ୍ରମ ଓ ଜୀବନ । କେବଳ ସମାଜ ମଧ୍ୟରେ ହିଁ ମନୁଷ୍ୟ ନିଜର ମନ, ଇଚ୍ଛା, ବିବେକ ଓ ଆବେଗର ବିକାଶ କରିଥାଏ । ତହିଁରେ ହିଁ ସେ ନିଜ ଜୀବନର ମୂଲ୍ୟ ଓ ଲକ୍ଷ୍ୟ ଲାଭ କରେ । ଯିଏ ପରିପୂର୍ଣ୍ଣ ସାମାଜିକ ଜୀବନ ନିର୍ବାହ କରେ ଏବଂ ପ୍ରଗତିଶୀଳ ଭାବଧାରା ଦ୍ୱାରା ଯେ ଅନୁପ୍ରାଣିତ, ସେ ଲୋକ ଜୀବନର ସମସ୍ୟାବଳୀ ସମ୍ବନ୍ଧରେ ଉଦ୍‌ବିଗ୍ନ ରହେ, ମୃତ୍ୟୁ ସମ୍ବନ୍ଧରେ ନୁହେଁ । ସମାଜର ଏକ ଉପଯୋଗୀ ସଭ୍ୟଭାବେ କିପରି ନିଜର ଜୀବନକୁ ଗଢ଼ିବ, ସମାଜର ପ୍ରଗତି ଦିଗରେ ତା'ର ଅବଦାନ କ'ଣ ହେବ ସେଇଥିପାଇଁ ତା'ର ଚିନ୍ତା । କିନ୍ତୁ ଥରେ ଜଣକୁ କୃତ୍ରିମଭାବେ ସମାଜଠାରୁ ଛିନ୍ନ

କରଦେଲେ ସେ ଭୀତତ୍ରସ୍ତ ହୋଇପଡ଼ିବ, ସର୍ବଦା ମୃତ୍ୟୁ ଆଶଙ୍କାରେ ଭୟାତୁର ହୋଇ ରହିବ, ଆଉ ତା'ର ଜୀବନରେ କ'ଣ କରିବ ତାହା ବୁଝିପାରିବ ନାହିଁ ।

ବୁର୍ଜୁଆ ବ୍ୟକ୍ତିବାଦଦ୍ୱାରୁ ଜାତ ନୈତିକ ଅଧଃପତନ ଏବଂ ଆଧ୍ୟାତ୍ମିକ ବ୍ୟର୍ଥତାର ମାତ୍ରା କେତେ ତାହା ଅସ୍ତିତ୍ୱବାଦରେ ସ୍ୱତଃ ପ୍ରକଟିତ ହୁଏ ।

ଏଇ କ୍ଷୟଶୀଳ "ଅସ୍ତିତ୍ୱବାଦ ଦର୍ଶନ" ଏକ ଭୀଷଣ ପ୍ରତିକ୍ରିୟାଶୀଳ ଦର୍ଶନ । ଯେଉଁମାନେ ଏହାର ପ୍ରଭାବରେ ପଡ଼ିଛନ୍ତି, ବିଶେଷତଃ ଯୁବସମ୍ପ୍ରଦାୟ ଭିତରେ ଏହା ହତାଶାଭାବ ସଞ୍ଚାର କରେ । ଭୟ, ନିରାଶା, ବ୍ୟର୍ଥତା ଏବଂ ଅସ୍ତିତ୍ୱର ନିରର୍ଥକତା ପ୍ରଚାର କରିବା ଦ୍ୱାରା ଏହା ସମାଜ-ବିରୋଧୀ ପ୍ରବୃତ୍ତି ଉଦ୍ରେକ କରେ ; ନୀତି ଓ ନୈତିକତାର ଅଭାବକୁ ଯୁକ୍ତିଯୁକ୍ତ ବୋଲି ଘୋଷଣା କରେ । କେତେକ ନିର୍ଦ୍ଦିଷ୍ଟ ଅବସ୍ଥାରେ ଅସ୍ତିତ୍ୱବାଦୀମାନେ ଅତି ସହଜରେ ଅତ୍ୟନ୍ତ ପ୍ରତିକ୍ରିୟାଶୀଳ ଶକ୍ତିମାନଙ୍କର କ୍ରୀଡ଼ାପୁତ୍ତଳିକାରେ ପରିଣତ ହୋଇଯିବେ ; ଏକ ଉନ୍ମାଦଗ୍ରସ୍ତ ଅତୃପ୍ତ ବ୍ୟକ୍ତି ନ ରହି ଫାସିଷ୍ଟ ସଇତାନ ପାଲଟିବେ ।

ଜର୍ମାନୀରେ ଅସ୍ତିତ୍ୱବାଦ, ଆଉ ଅନ୍ୟାନ୍ୟ କେତେକ ପ୍ରତିକ୍ରିୟାଶୀଳ ମତବାଦ ( ନବ୍ୟ ହେଗେଲବାଦ, "ଜୀବନର ଦର୍ଶନ" ପ୍ରଭୃତି ) ସହିତ ମିଶି, ଫାସିଷ୍ଟବାଦର ପ୍ରସ୍ତୁତି ଲାଗି ଏକ ନିର୍ଦ୍ଦିଷ୍ଟ ଭୂମିକା ଗ୍ରହଣ କରିଥିଲା । ଫ୍ରାନ୍ସରେ ଅସ୍ତିତ୍ୱବାଦର ଭୂମିକା ଏକ ଭିନ୍ନ ପ୍ରକୃତିର ଥିଲା । ଯୁଦ୍ଧ ସମୟରେ ସାର୍ତ୍ରେ ଓ ଆଉ କେତେକ ଅସ୍ତିତ୍ୱବାଦୀ ପ୍ରତିରୋଧ ଆନ୍ଦୋଳନରେ ସକ୍ରିୟ ଅଂଶ ଗ୍ରହଣ କରିଥିଲେ ଏବଂ ଯୁଦ୍ଧ-ପରବର୍ତ୍ତୀ କାଳରେ ଶାନ୍ତିର ସମର୍ଥକ ଓ ଆଲଜେରିଆରେ ଫରାସି ସରକାରଙ୍କ ଯୁଦ୍ଧର ବିରୋଧୀଭାବେ ବାରମ୍ବାର ଅଗ୍ରସର ହୋଇଥିଲେ । ଯାହାହେଲେ ସେମାନେ କ୍ରମାଗତ-ଭାବେ ଅତିରିକ୍ତ ବ୍ୟକ୍ତିତ୍ୱବାଦର ସମର୍ଥକ ହୋଇ ବ୍ୟକ୍ତିତ୍ୱବାଦକୁ ଶ୍ରେଣୀସଂହତିର ନୀତି, ସର୍ବହରାର ସଙ୍ଗଠନ ଓ ତା'ର କମ୍ୟୁନିଷ୍ଟ ପାର୍ଟି ବିରୁଦ୍ଧରେ ପ୍ରତିପକ୍ଷ କରି ଠିଆ କରିଥିଲେ ।

## ଛଦ୍ମ-"ବିଜ୍ଞାନ-ଦର୍ଶନ"

ପୁଞ୍ଜିବାଦୀ ଜଗତରେ ଆଉ ଏକ ଦାର୍ଶନିକ ଧାରାର ବ୍ୟାପକ ପ୍ରଚଳନ ରହିଛି । ତାହା ହେଉଛି ନବୀନ-ଦୃଷ୍ଟବାଦ ବା "ଯୁକ୍ତିଯୁକ୍ତ ଦୃଷ୍ଟବାଦ" । 'ବିଜ୍ଞାନର ଦର୍ଶନ' ଭାବରେ ଏହାର ବହୁଳ ପ୍ରଚାର ହେଉଛି । ପ୍ରଥମ ଦୃଷ୍ଟିପାତରେ ଜଣାପଡ଼ିବ ଯେପରି କି ତାହା ଅସ୍ତିତ୍ୱବାଦର ଅଯୌକ୍ତିକ ଦର୍ଶନର ବିରୋଧୀ ପ୍ରତ୍ୟନ୍ୱୟ ; କିନ୍ତୁ ପ୍ରକୃତରେ ଏହା ଅସ୍ତିତ୍ୱବାଦ ସହିତ ଘନିଷ୍ଠଭାବେ ସଂପୃକ୍ତ ଭାବବାଦୀ ମତବାଦ ; ତାହାର ନିରାଶା-ବାଦକୁ ଏହା ଗ୍ରହଣ କରେ ଏବଂ ମାନବିକ ଅବଧାରଣ ଓ ଜ୍ଞାନକୁ ଅବିଶ୍ୱାସ କରେ ।

ବର୍ଟ୍ରାଣ୍ଡ ରସେଲ, ଅଷ୍ଟ୍ରିଆର ଦାର୍ଶନିକ ଉଇଟ୍‌ଜେନ୍‌ଷ୍ଟିନ୍ ଓ ସ୍ଲିକ୍‌ଙ୍କ ଦ୍ୱାରା ଏଇ ନବୀନ-ଦୃଷ୍ଟବାଦର ମୂଳ ତତ୍ତ୍ୱ ନିର୍ଦ୍ଧାରିତ ହୋଇଛି । ଆଜିକାଲି ଏହାର ମୁଖ୍ୟ ପ୍ରଚାରକ ହେଉଛନ୍ତି ଆମେରିକାର କାର୍‌ନାପ ଏବଂ ବ୍ରିଟେନର ଆୟାର । ମ୍ୟାକ୍‌ବାଦର ମନୋଗତ-ଭାବବାଦୀ ଦର୍ଶନକୁ ନୂଆକରି ସଜେଇବା ଏବଂ ବର୍ତ୍ତମାନ ସମୟର ପଦାର୍ଥ-ବିଜ୍ଞାନ, ଗଣିତ ଓ ନ୍ୟାୟଶାସ୍ତ୍ରର ଉପଯୋଗୀ କରିବାର ଆକାଂକ୍ଷାରୁ ଏହାର ଉତ୍ପତ୍ତି ।

ଏହାର ଅନ୍ତର୍ନିହିତ ଭାବ ହେଲା ଯେ ବିଶ୍ୱଦୃଷ୍ଟିଭଙ୍ଗୀର ମୌଳିକ ସମସ୍ୟା-ଗୁଡ଼ିକର ସ୍ଥାନ ଦର୍ଶନରେ ନାହିଁ । ଦର୍ଶନ କେବଳ "ଭାଷାର ଯୁକ୍ତିଯୁକ୍ତ ପର୍ଯ୍ୟାଲୋଚନା" ବିଚାରକୁ ନିଏ । ଏଇସବୁ ସମସ୍ୟା, ସର୍ବୋପରି ଦର୍ଶନର ମୌଳିକ ସମସ୍ୟା, ବୈଜ୍ଞାନିକ ଦୃଷ୍ଟିରୁ "ଅମୂଳକ ସମସ୍ୟା" ବୋଲି କୁହାଯାଏ । ଦର୍ଶନ, ବାହ୍ୟଜଗତ ସମ୍ପର୍କରେ ଆମକୁ କୌଣସି ଜ୍ଞାନ ଦେଇ ନ ପାରେ । ତାହା, କେବଳ ବିଜ୍ଞାନର ଭାଷାର ଯୁକ୍ତିଯୁକ୍ତ ବିଶ୍ଳେଷଣରେ, ନିଜକୁ ପୁରାପୁରି ଆବଦ୍ଧ ରଖିବା ଉଚିତ । ବିଶ୍ଳେଷଣ ହେଲା ବୈଜ୍ଞାନିକ ଧାରଣା ଓ ପ୍ରସ୍ତାବର ପ୍ରୟୋଗସମ୍ବନ୍ଧୀୟ ନିୟମର ବିଶ୍ଳେଷଣ, ବାକ୍ୟ ମଧ୍ୟରେ ଶବ୍ଦଯୋଜନାର ନିୟମ ଓ ଏକ ସିଦ୍ଧାନ୍ତରୁ ଅନ୍ୟ ଏକ ସିଦ୍ଧାନ୍ତକୁ ଅବରୋହଣ ଇତ୍ୟାଦିର ବିଶ୍ଳେଷଣ, ଆଉ ମଧ୍ୟ ବୈଜ୍ଞାନିକ ପଦ ଓ ଧାରଣାର ଅର୍ଥବିଷୟକ "ଶବ୍ଦାର୍ଥ ବିଦ୍ୟାର ବିଶ୍ଳେଷଣ" । ବିଜ୍ଞାନର ଭାଷାର ଯୁକ୍ତିଯୁକ୍ତ ବିଶ୍ଳେଷଣ ଅତି ପ୍ରୟୋଜନୀୟ ହୋଇପାରେ ; ହେଲେ, ଦର୍ଶନଶାସ୍ତ୍ରକୁ ପୁରାପୁରି ସେଇ ବିଶ୍ଳେଷଣରେ ଆଣି ଥୋଇଦେବା ଅର୍ଥ ଦର୍ଶନକୁ ସମୂଳେ ଲୋପ କରିବା ସହିତ ସମାନ ହେବ ।

ଅନୁଭୂତିଲବ୍ଧ ତଥ୍ୟ ଉପରେ, ଘଟଣାବଳୀ ଉପରେ, ବିଜ୍ଞାନ ପ୍ରତିଷ୍ଠିତ ହେବା ଉଚିତ, ଏ ଯୁକ୍ତି ବାଢ଼ିଲବେଳେ ନବୀନ-ଦୃଷ୍ଟବାଦୀମାନେ ଠିକ୍ କଥା କହୁ-ଆନ୍ତି । କିନ୍ତୁ ମ୍ୟାକ୍‌ବାଦୀମାନଙ୍କଭଳି ସେମାନେ ମଧ୍ୟ ଅନୁଭୂତିଲବ୍ଧ ତଥ୍ୟର ଯଥାର୍ଥତାକୁ ଅସ୍ୱୀକାର କରନ୍ତି । ଦୃଷ୍ଟାନ୍ତସ୍ୱରୂପ, ତାଙ୍କ ବିଚାରରେ, ଗୋଲାପ ଫୁଲର ବାସ୍ତବ ଅସ୍ତିତ୍ୱ ଅଛି କି ନାହିଁ, ଏଭଳି ପ୍ରଶ୍ନ କରିବା ହାସ୍ୟାସ୍ପଦ । ଏଇସ୍ଥିତିରେ କେବଳ କୁହାଯାଇପାରେ ଯେ ମୁଁ ଗୋଲାପର ଲାଲବର୍ଣ୍ଣ ଦେଖୁଛି, ତା'ର ସୁଗନ୍ଧ ଅନୁଭବ କରୁଛି । ଏହାର ହିଁ କେବଳ ବୈଜ୍ଞାନିକ ଯଥାର୍ଥତା ରହିଛି ବୋଲି ସେମାନେ ବିଚାରନ୍ତି ।

ଏହାର ମର୍ମ ହେଲା, ତଥ୍ୟର ଯେଉଁ ବ୍ୟାଖ୍ୟା ସେମାନେ ଦିଅନ୍ତି ସେଥିରେ ବସ୍ତୁସାର ଜଗତର ପ୍ରପଞ୍ଚ. ଘଟଣାବଳୀ ବା ବାସ୍ତବ ପଦାର୍ଥକୁ ବୁଝାଯାଏ ନାହିଁ ; କେବଳ ମାତ୍ର ଇନ୍ଦ୍ରିୟାନୁଭୂତି, ଧାରଣା, ପ୍ରତ୍ୟକ୍ଷ ବିଷୟ ଏବଂ ଆମର ଚେତନାର ଅନ୍ୟାନ୍ୟ ପ୍ରପଞ୍ଚକୁ ବୁଝାଯାଏ । ବାସ୍ତବତାର ମର୍ମର ଅନ୍ୱେଷଣ ମୂଲ୍ୟହୀନ, ଏକଥା ସେମାନେ ନିଜେ ଦାବୀ କରୁଥିବା ସତ୍ତ୍ୱେ, ସେମାନେ କାର୍ଯ୍ୟତଃ ବିଶ୍ୱଜଗତର

ଭୌତିକ ପ୍ରକୃତିକୁହିଁ ଅସ୍ୱୀକାର କରିଥାନ୍ତି ; ତଦ୍ଦ୍ୱାରା କାର୍ଯ୍ୟତଃ ତାକୁ ଏକ ଆଧ୍ୟାତ୍ମିକ ଚରିତ୍ର ପ୍ରଦାନ କରନ୍ତି ।

ବିଜ୍ଞାନର କାର୍ଯ୍ୟ ତେବେ କ'ଣ ? ସେମାନଙ୍କର ଦାବୀ ଯେ ବିଜ୍ଞାନର ପ୍ରାଥମିକ କାର୍ଯ୍ୟ ହେଲା "ତଥ୍ୟକୁ" ଅର୍ଥାତ୍ ମାନବିକ ଇନ୍ଦ୍ରିୟାନୁଭୂତିକୁ ବର୍ଣ୍ଣନା କରିବା, କାରଣ ବିଜ୍ଞାନ ବାସ୍ତବ ବିଶ୍ୱଜଗତକୁ ବୁଝିବାକୁ ଅସମର୍ଥ । ଅଭିଜ୍ଞତାଲବ୍ଧ ଜ୍ଞାନର କୌଣସି ବାସ୍ତବ ପ୍ରାମାଣିକତା ନାହିଁ ।

ଯଥେଚ୍ଛା ମନୋନୀତ ଘଟଣାବଳୀର ଉପରୋକ୍ତ ବର୍ଣ୍ଣନା, ତର୍କଶାସ୍ତ୍ର ଓ ଗଣିତ ସାହାଯ୍ୟରେ ଗଠିତ ବୈଜ୍ଞାନିକ ତତ୍ତ୍ୱ ନିମନ୍ତେ ବିଷୟବସ୍ତୁ ଯୋଗାଇଦିଏ । ଅଭିଜ୍ଞତା-ପ୍ରଦତ୍ତ ତଥ୍ୟ ଉପରେ ପ୍ରତିଷ୍ଠିତ ଅଭିଜ୍ଞତା-ବିଜ୍ଞାନ ସହିତ ତୁଳନା କରି ନବୀନ ଦୃଷ୍ଟବାଦୀମାନେ ଦାବୀ କରିଥାନ୍ତି ଯେ ଗଣିତ ଓ ତର୍କଶାସ୍ତ୍ର ସ୍ୱତଃସିଦ୍ଧ ପ୍ରଣାଳୀ ଉପରେ-ନିର୍ଭର କରେ, ତା'ସ ବା ନ୍ୟାସ୍ନବଲ ଖେଳର ଚିରାଚରିତ ନିୟମଭଳି ଇଚ୍ଛାଅନୁସାରେ ମନୋନୀତ ଗୋଟାଏ ନିୟମ ଉପରେ ତାହା ନିର୍ଭର କରେ ।

ଏଇସବୁ ଚିରାଚରିତ ନିୟମକୁ ଏକ ତତ୍ତ୍ୱର କଳ୍ପନାପ୍ରସୂତ ଉପାଦାନ ଦ୍ୱାରା ବିରୋଧ କରିବା ଉଚିତ ନୁହେଁ ଏବଂ ତତ୍ତ୍ୱକୁ ସତ୍ୟ ବୋଲି ଗ୍ରହଣ କରିବାଲାଗି ଏହା ହିଁ ଆବଶ୍ୟକ । ଉଦାହରଣସ୍ୱରୂପ, ନବୀନ ଦୃଷ୍ଟବାଦୀମାନେ, ନିର୍ଦ୍ଦିଷ୍ଟ ସମସ୍ୟା ପ୍ରତି ଏହାକୁ ପ୍ରୟୋଗ କଲାବେଳେ ବିଜ୍ଞାନବିରୋଧୀ ସିଦ୍ଧାନ୍ତରେ ଉପନୀତ ହୁଅନ୍ତି ଯେ ପୃଥିବୀକୁ ନ' ଧରି ସୂର୍ଯ୍ୟକୁ ସୌରମଣ୍ଡଳର କେନ୍ଦ୍ରରୂପେ ଗ୍ରହଣ କରିବା ଗୋଟାଏ ଖାଲି ଗତାନୁଗତିକତା ।

ଏହା କହିବା ଅନାବଶ୍ୟକ ଯେ, ବୈଜ୍ଞାନିକ ତତ୍ତ୍ୱର ଏ ପ୍ରକାର ସଂଜ୍ଞା ଦ୍ୱାରା ଏକ ବାସ୍ତବ ବୋଧନର ପଦ୍ଧତିଭାବରେ ବିଜ୍ଞାନର ସମସ୍ତ ମୂଲ୍ୟକୁ ତାହା ବର୍ଜନ କରେ ଏବଂ ତାକୁ ଗୋଟାଏ ଦରବାରୀ ଖେଳରେ ପରିଣତ କରିଦିଏ ।

ଏଇ ହାସ୍ୟାସ୍ପଦ ମତ, କୂଟାଭାସ ପରି ଦେଖାଯାଉଥିଲେ ସୁଦ୍ଧା, ସମସ୍ତ ଦିଗରୁ ବିଚାରିଲେ ବିଜ୍ଞାନକୁ ତାହା ଅସ୍ୱୀକାର କରେ ; ଅଥଚ ଆଧୁନିକ ଶିକ୍ଷା ସମ୍ପର୍କରେ ଯେଉଁମାନଙ୍କର ତାତ୍ପର୍ଯ୍ୟପୂର୍ଣ୍ଣ ଅବଦାନ ରହିଛି, ସେଭଳି ବିଖ୍ୟାତ ବିଜ୍ଞାନୀମାନେ ସୁଦ୍ଧା ତାହାକୁ ଗ୍ରହଣ କରନ୍ତି ।

ଆଧୁନିକ ବିଜ୍ଞାନରେ ବ୍ୟବହୃତ ଜଟିଳ ପଦ୍ଧତି, ବିଜ୍ଞାନ-ଗବେଷିତ ପ୍ରପଞ୍ଚର ଜଟିଳତା ଏବଂ ସେଥିଭିତରୁ କେତେକ ପ୍ରପଞ୍ଚକୁ ବୁଝାଇବା ଦିଗରେ ଉଠୁଥିବା ବାଧା ପ୍ରତିବନ୍ଧକ ଫଳରେ ବିଜ୍ଞାନୀମାନଙ୍କ ମଧ୍ୟରେ ଭାବବାଦୀ ଦ୍ୱିଧାର ସମ୍ଭାବନା ସୃଷ୍ଟି ହୋଇଥାଏ । ବୁର୍ଜୁଆ ବାତାବରଣ ସେଇ ସମ୍ଭାବନାକୁ ବାସ୍ତବତାରେ ପରିଣତ କରିବାରେ ସାହାଯ୍ୟ କରେ ।

ଅତଏବ, ଆମେ ଯେଉଁସବୁ ଅବସ୍ଥା ସହିତ ପରିଚିତ, ତା'ଠାରୁ ଭିନ୍ନ ଅବସ୍ଥାରେ, ଶୂନ୍ୟର ବାସ୍ତବ ନିୟମକୁ ପ୍ରତିଫଳିତ କରୁଥିବା (ଲୋବାଚେଭସ୍କି, ରେମାନ ଓ ଅନ୍ୟ-ମାନଙ୍କ ଦ୍ୱାରା) ଅଣ-ଇଉକ୍ଲିଡିଆନ ଜ୍ୟାମିତିର ଆବିଷ୍କାର ଫଳରେ କୌଣସି କୌଣସି ବିଜ୍ଞାନୀ ଏ ସିଦ୍ଧାନ୍ତରେ ପହଞ୍ଚନ୍ତି ଯେ କୌଣସି ଜ୍ୟାମିତି ବାସ୍ତବତାର ପ୍ରକୃତ ପ୍ରତି-ଫଳନ ନୁହେଁ । ତାହାର ମୌଳିକ ନୀତିଗୁଡ଼ିକ କେବଳ ଚିରାଚରିତ ରୀତି ବୋଲି ସେ ବିଜ୍ଞାନୀମାନେ ମନେକରନ୍ତି ।

ମୁଖ୍ୟଭାବେ, ପଦାର୍ଥବିଜ୍ଞାନ ତତ୍ତ୍ୱର ବିମୂର୍ତ୍ତ ଗାଣିତିକ ପ୍ରକୃତି ହେତୁ, ପୁଣି ସୂକ୍ଷ୍ମାତିସୂକ୍ଷ୍ମ କଣିକାକୁ ପ୍ରତ୍ୟକ୍ଷଭାବେ ପର୍ଯ୍ୟବେକ୍ଷଣ କରିବା ଅଥବା ତା'ର ରୂପ ଅଙ୍କନ କରିବା ଅସମ୍ଭବ ହେଉଥିବା ଯୋଗୁଁ, ପଦାର୍ଥଗତ ପ୍ରପଞ୍ଚର ଭାବବାଦୀ ସଙ୍କଟ ଦେଖାଦେଇଛି ।

କାରଣ ପଦାର୍ଥବିଜ୍ଞାନୀମାନେ ଅତି ଶକ୍ତିଶାଳୀ ଆଲୋକ-ଯନ୍ତ୍ର ସାହାଯ୍ୟରେ ସୁଦ୍ଧା ଅଧ୍ୟୟନ କରୁଥିବା (ମାଇକ୍ରୋପାର୍ଟିକଲ୍) ସୂକ୍ଷ୍ମକଣାକୁ (ଇଲେକ୍‌ଟ୍ରନ୍, ପ୍ରୋଟନ, ମେସନ ଆଦି) ପର୍ଯ୍ୟବେକ୍ଷଣ କରିପାରନ୍ତି ନାହିଁ, କି ମଡେଲରେ ତା'ର ରୂପ ଉତାରି-ପାରନ୍ତି ନାହିଁ । ପରୀକ୍ଷାକାରୀ ପଦାର୍ଥବିଜ୍ଞାନୀମାନେ ତାଙ୍କର ଯନ୍ତ୍ରରେ ମାଇକ୍ରୋପାର୍ଟିକଲର ଲିପିବଦ୍ଧ ଚିହ୍ନକୁ ଦେଖିପାରନ୍ତି, ପରଦାରେ ତା'ର ଝଲକ ଦେଖନ୍ତି ଇତ୍ୟାଦି । ଏହି ସୂକ୍ଷ୍ମକଣା ଏବଂ ତା'ର ଉପାଦାନର ଅସ୍ତିତ୍ୱ ସମ୍ପର୍କରେ ସେମାନଙ୍କର ସିଦ୍ଧାନ୍ତ ଅତ୍ୟନ୍ତ ଜଟିଳ ତାତ୍ତ୍ୱିକ ଯୁକ୍ତି ଓ ଗାଣିତିକ ଗଣନା ଉପରେ ପ୍ରତିଷ୍ଠିତ । ଯେତେବେଳେ ପଦାର୍ଥବିଜ୍ଞାନୀ ପରୀକ୍ଷାନିରୀକ୍ଷା ଚଳାଏ ସେତେବେଳେ ସେ ଏକ ସ୍ୱତଃସ୍ଫୂର୍ତ୍ତ ବସ୍ତୁବାଦୀ ଭଳି କାର୍ଯ୍ୟ କରିଥାଏ । କିନ୍ତୁ ଏକ ସ୍ପଷ୍ଟ ଦାର୍ଶନିକ ଦୃଷ୍ଟିକୋଣର ଅଭାବରୁ, ବିଜ୍ଞାନର ସାଧାରଣ ସମସ୍ୟାମାନଙ୍କ ସମ୍ବନ୍ଧରେ ତା'ର ବିଚାର ଏକ ବିକୃତ ମତ ସୃଷ୍ଟି ଦିଗକୁ ନେଇଯାଇପାରେ, ଯଥା : ସୂକ୍ଷ୍ମକଣା ଓ ତାହାର ଉପାଦାନଗୁଡ଼ିକର ବାସ୍ତବରେ କୌଣସି ଅସ୍ତିତ୍ୱ ନାହିଁ, ତାହା କେବଳ ଏକ ତାତ୍ତ୍ୱିକ ଧାରଣା ମାତ୍ର, ଏକ "ଯୁକ୍ତିଯୁକ୍ତ" ବା "ଶବ୍ଦାର୍ଥ ବିଦ୍ୟାର" ରଚନା, କିମ୍ବା ଗୋଟାଏ ପ୍ରତୀକ ; ବିଜ୍ଞାନୀର ଯନ୍ତ୍ରରେ ଲିପିବଦ୍ଧ ହେଉଥିବା ବିଷୟକୁ ସଂହତିବଦ୍ଧ କରିବା ଓ ତା' ସମ୍ପର୍କରେ ଭବିଷ୍ୟବାଣୀ କରିବାର ନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟ ନେଇ ତା'ର ସୃଷ୍ଟି ।

ଆମ ସମୟର ଜଣେ ସୁବିଖ୍ୟାତ ପଦାର୍ଥବିଜ୍ଞାନୀ ଓ୍ୟାର୍‌ନର୍ ହାଇସେନ୍‌ବର୍ଗ ମତ ଦେଇଛନ୍ତି ଯେ ପ୍ରାଥମିକ କଣା ''ଶୂନ୍ୟ ଓ କାଳ ମଧ୍ୟରେ ଏକ ଭୌତିକ କଣା ନୁହେଁ ; କିନ୍ତୁ ଗୋଟାଏ ପ୍ରକାରର ଏକ ପ୍ରତୀକ ମାତ୍ର, ଯାହାର ପ୍ରୟୋଗ ଫଳରେ ପ୍ରକୃତିର ନିୟମ ବିଶେଷ ସରଳ ରୂପ ଗ୍ରହଣ କରିଛି ।"

ତତ୍ତ୍ୱବିଦ୍ ପଦାର୍ଥବିଜ୍ଞାନୀ, ଯେଉଁମାନେ ଅନ୍ୟ ଗବେଷକଙ୍କ ପର୍ଯ୍ୟବେକ୍ଷଣ-ଲବ୍ଧ ଫଳାଫଳର ଗାଣିତିକ ବିଚାର ସହିତ ସମ୍ପୃକ୍ତ, ସେମାନଙ୍କ କାର୍ଯ୍ୟର ସେହି

ପ୍ରକୃତ ଯୋଗୁଁ ଏବଂ ସଦାସର୍ବଦା ଏକ ବୈଜ୍ଞାନିକ ତତ୍ତ୍ୱ ଦ୍ୱାରା ଅନ୍ୟ ଏକ ବୈଜ୍ଞାନିକ ତତ୍ତ୍ୱ ପ୍ରତିସ୍ଥାପିତ ହେଉଥିବାରୁ, ସେମାନେ ଯଦି ଦ୍ୱନ୍ଦକୁ ବୁଝି ନପାରନ୍ତି, ତେବେ ତାହା ସେମାନଙ୍କୁ ଏକ ପ୍ରମାଦପୂର୍ଣ୍ଣ ସିଦ୍ଧାନ୍ତକୁ ନେଇଯାଇପାରେ । ଉକ୍ତ ସିଦ୍ଧାନ୍ତ ହେଲା : ତାଙ୍କ ତତ୍ତ୍ୱ ଓ ପ୍ରକଳ୍ପସବୁ ଇଚ୍ଛାକୃତ ଏବଂ ତା'ର ମୌଳିକ ନୀତିସବୁ ମନୋଗତ । ସୁବିଖ୍ୟାତ ଜ୍ୟୋତିର୍ବେତ୍ତା ଜେମସ୍ ଜିନ୍‌ସ ଭାବବାଦୀ ମତ ପୋଷଣ କରି କହିଥିଲେ, ଏଇ "ବାସ୍ତବ ଓ ଭୌତିକ ବିଶ୍ୱବ୍ରହ୍ମାଣ୍ଡ ଆମର ମନର ରଚନା ଛଡ଼ା ବେଶି କିଛି ନୁହେ ବୋଲି ପ୍ରମାଣିତ ହୋଇଛି ।"

ତେବେ, ଯଦିଓ ଆମେ ସୂକ୍ଷ୍ମ ଅଣୁକଣାସବୁ ପର୍ଯ୍ୟବେକ୍ଷଣ କରିପାରୁନାହୁଁ କି ତା'ର ରୂପ ନିରୂପଣ କରିପାରୁନାହୁଁ, ତଥାପି ତଦ୍ୱାରା ସେମାନଙ୍କର ଭୌତିକତା କୌଣସିମତେ ଅସ୍ୱୀକୃତ ହେଉନାହିଁ । କାରଣ, ସେମାନଙ୍କର ଅସ୍ତିତ୍ୱ ମନୁଷ୍ୟ ଚେତନାର ବହିର୍ଭୂତ, ସ୍ୱାଧୀନ ସ୍ୱତନ୍ତ୍ରଭାବେ ଅବସ୍ଥିତ । ତାହା ବିଜ୍ଞାନର ଅଗ୍ରଗତି ଏବଂ ସୂକ୍ଷ୍ମ ଅଣୁକଣାର ଅଧ୍ୟୟନଲବ୍ଧ ତଥ୍ୟାବଳୀର ଟେକ୍‌ନିକାଲ୍ ପ୍ରୟୋଗ ଦ୍ୱାରା ସୁପ୍ରମାଣିତ ।

ପଚାଶ ବର୍ଷ ତଳେ ଯେତେବେଳେ ଲେନିନ୍ ତାଙ୍କର "ମେଟିରିଆଲିଜମ୍ ଆଣ୍ଡ ଇମ୍ପିରିଓ କ୍ରିଟିସିଜମ୍" ଲେଖିଥିଲେ, ସେଇକାଳ ଭଳି ଆଜି ମଧ୍ୟ ବିଜ୍ଞାନୀମାନଙ୍କର ଦ୍ୱିଧା ଏବଂ ବସ୍ତୁବାଦୀ ଦୃଷ୍ଟିକୋଣ ଗ୍ରହଣ କରିବା ଓ ତାକୁ ପ୍ରୟୋଗ କରିବା ଦିଗରେ ସେମାନଙ୍କର କୁଣ୍ଠା ତଥା ବିଜ୍ଞାନ ସମ୍ମୁଖୀନ ହେଉଥିବା ଏଇସବୁ ଅସୁବିଧାକୁ ଭାବବାଦୀ ଦାର୍ଶନିକମାନେ ବଡ଼ କରି ଦେଖାଉଛନ୍ତି, ପ୍ରତାରଣା କରୁଛନ୍ତି । ସେଇ କାରଣରୁ ଭାବବାଦବିରୋଧୀ ସଂଗ୍ରାମଲାଗି ଆଧୁନିକ ବିଜ୍ଞାନ ସମ୍ବନ୍ଧରେ ଜ୍ଞାନର ଆବଶ୍ୟକତା ରହିଛି ଏବଂ ଦ୍ୱନ୍ଦମୂଳକ ବସ୍ତୁବାଦର ଦୃଷ୍ଟିକୋଣରୁ ତାହାକୁ ସମାଧାନ କରିବାର ଦକ୍ଷତା ଥିବା ଆବଶ୍ୟକ ହେଉଛି ।

ପରବର୍ତ୍ତୀ କାଳର ଦୃଷ୍ଟବାଦ ସାମାଜିକ ବିଜ୍ଞାନରେ ମଧ୍ୟ ଅନୁପ୍ରବେଶ କରିଛି । ତା'ର ସମର୍ଥକମାନଙ୍କର ଦାବୀ ଯେ, ସାମାଜିକ ବାସ୍ତବତା ସମ୍ବନ୍ଧରେ ଲୋକେ ଯାହା କହନ୍ତି ତା'ରି ଉପରେ ସାମାଜିକ ବାସ୍ତବତା ନିର୍ଭର କରେ ; ଆଉ ମଧ୍ୟ ଭ୍ରାନ୍ତ ଚିନ୍ତାଧାରା ଏବଂ ଶବ୍ଦର ଭୁଲ ପ୍ରୟୋଗରୁ ସାମାଜିକ ଅନାଚାରର ଜନ୍ମ ହୁଏ । ତେଣୁ, ସାମାଜିକ ଜୀବନର ପରିବର୍ତ୍ତନ କରିବାକୁ ହେଲେ କେବଳ ଭାଷାକୁ ବଦଳାଇବାକୁ ପଡ଼ିବ, ଶବ୍ଦ ଅର୍ଥର ତାତ୍ପର୍ଯ୍ୟ ବଦଳାଇଦେବାକୁ ହେବ । ଆମେରିକାର ଜଣେ ଦୃଷ୍ଟବାଦୀ ଷ୍ଟୁଆର୍ଟ ଚେସ୍ ଏକଥା ବି କହିଲେ ଯେ "ପୁଞ୍ଜି" ଏବଂ "ବେକାରୀ" ଇତ୍ୟାଦି ଭଳି ଶବ୍ଦ ଅର୍ଥହୀନ, ଆଉ ଯଦି "ଶୋଷଣ" ଭଳି କୌଣସି "ଅସତ୍" ଶବ୍ଦ ଆମ ବର୍ଣ୍ଣମାଳାରେ ନ ଥାନ୍ତା, ତେବେ କୌଣସି ଶୋଷଣ ବି ନ ଥାନ୍ତା ।

ନବୀନ-ଦୃଷ୍ଟବାଦୀମାନେ କେବଳ "ଅଧିବିଦ୍ୟାର" ବିଷୟକୁ ପ୍ରତ୍ୟାଖ୍ୟାନ କରନ୍ତି ନାହିଁ, ସେଥିସହିତ ନୈତିକ ମୂଲ୍ୟବୋଧ ଓ ବିଶ୍ୱାସକୁ ମଧ୍ୟ ଅବୈଜ୍ଞାନିକ ବୋଲି ପ୍ରତ୍ୟାଖ୍ୟାନ କରନ୍ତି । ସେମାନେ କହନ୍ତି, ପ୍ରତ୍ୟେକଟି ନୈତିକ ବିଶ୍ୱାସ ଅପରିହାର୍ଯ୍ୟଭାବେ ମନୋଗତ, ଅର୍ଥାତ୍ ତାହା କେବଳ ବ୍ୟକ୍ତିଗତ ମତକୁହିଁ ପ୍ରକାଶ କରେ । ସେହି ଦୃଷ୍ଟିକୋଣରୁ ଆକ୍ରମଣାତ୍ମକ ଯୁଦ୍ଧ ଯେ ଅନ୍ୟାୟ, ତାକୁ କେବଳ ଏକ ମନୋଗତ ମତ ବୋଲି ଧରିନିଆଯାଇପାରେ ଏବଂ ଧରିନିଆଯାଇପାରେ ଯେ ତାହାର ବିପରୀତ ମତ, ଅର୍ଥାତ୍ ଆକ୍ରମଣାତ୍ମକ ଯୁଦ୍ଧ ନ୍ୟାୟସଙ୍ଗତ, ଏ ମତଠାରୁ ତାହା ଅଧିକ ଅକାଟ୍ୟ ନୁହେଁ । ଅତଏବ ନବୀନ-ଦୃଷ୍ଟବାଦ, ଯାହା ରାଜନୀତିଠାରୁ ବହୁଦୂରରେ ବୋଲି ଉପରକୁ ଜଣାପଡ଼େ, ପ୍ରକୃତରେ ତାହା ପ୍ରତିକ୍ରିୟାଶୀଳ ନୀତିକୁ ନ୍ୟାୟସଙ୍ଗତ କରିବାର ଏକ ଅତି ଉପାଦେୟ ହତିଆରଭାବେ ପ୍ରମାଣିତ ହୁଏ । ଆହୁରି ମଧ୍ୟ, ଯେଉଁମାନେ ବସ୍ତୁଗତଭାବେ ଯୁକ୍ତିସିଦ୍ଧ ନୈତିକ ମୂଳନୀତିକୁ ପରିତ୍ୟାଗ କରିବାକୁ ଅନିଚ୍ଛୁକ, ସେମାନଙ୍କୁ ତାହା, ବିଜ୍ଞାନର ପରିସର ବାହାରେ, ମୁଖ୍ୟତଃ ଧର୍ମରାଜ୍ୟରେ, ସେଭଳି ସ୍ଥାୟୀ ଆଦର୍ଶର ଅନ୍ୱେଷଣଲାଗି ଉତ୍ସାହିତ କରେ ।

ବିଶ୍ୱଜଗତ ସମ୍ପର୍କରେ ଆମକୁ ଏକ ବସ୍ତୁସାପେକ୍ଷ ପ୍ରକୃତିର ଚିତ୍ର ଦେବାକୁ ବିଜ୍ଞାନ ଅସମର୍ଥ ବୋଲି କହି ତାକୁ ଅବଜ୍ଞା କରିବା ଦ୍ୱାରା ନବୀନ-ଦୃଷ୍ଟବାଦୀମାନେ ଧର୍ମପ୍ରତି ପଗାଢ଼ ଆସ୍ଥାବାନ ଧର୍ମଶିକ୍ଷକ ଓ ଧର୍ମାନୁରକ୍ତ ଲୋକଙ୍କ ହାତରେ କ୍ରୀଡ଼ାପୁତ୍ତଳିକା ହୁଅନ୍ତି । ନବୀନ-ଦୃଷ୍ଟବାଦୀମାନେ ନିଜେ ମଧ୍ୟ ତାକୁ ଅସ୍ୱୀକାର କରନ୍ତି ନାହିଁ । ସୁପରିଚିତ ଭାବବାଦୀ ପଦାର୍ଥବିଦ୍ୟାବିତ୍ ପାସ୍କୁଆଲ ଜୋର୍ଡ଼ାନ୍ କହନ୍ତି, "ବୈଜ୍ଞାନିକ ଚିନ୍ତାଧାରାର ବିରୋଧ ନ କରି ଦୃଷ୍ଟବାଦୀ ଧାରଣା ଧର୍ମକୁ ଜୀବନ୍ତ ରଖିବା ଲାଗି ନୂତନ ସମ୍ଭାବନା ପ୍ରଦାନ କରିଥାଏ ।"

ଲେନିନ ଲେଖିଥିଲେ, "ଅଭିଜ୍ଞତା-ସମାଲୋଚନାର ବସ୍ତୁସାର ଶ୍ରେଣୀଗତ ଭୂମିକା ହେଉଛି, ବସ୍ତୁବାଦବିରୋଧୀ ସଂଗ୍ରାମରେ ଧର୍ମାନୁରକ୍ତମାନଙ୍କୁ ହିଁ ଅତି ବିଶ୍ୱସ୍ତ-ଭାବେ ପୁରାପୁରି ସାହାଯ୍ୟ କରିବା ।" ନବୀନ-ଦୃଷ୍ଟବାଦୀଙ୍କ ପ୍ରତି ଏ ବାଣୀ ସମ୍ପୂର୍ଣ୍ଣ ପ୍ରଯୋଜ୍ୟ ।

## ମଧ୍ୟଯୁଗୀୟ ପାଣ୍ଡିତ୍ୟବାଦର ପୁନରୁତ୍‌ଥାନ

ସମସାମୟିକ ବୁର୍ଜୁଆ ସମାଜରେ ଧର୍ମାନୁରକ୍ତି ଅତି ବ୍ୟାପକଭାବେ, ଜୋରସୋରରେ ପ୍ରଚାରିତ ହେଉଛି । ଗୀର୍ଜା ଏବଂ ତା'ର ବିଭିନ୍ନ ସଙ୍ଗଠନ ସବୁ ମଧ୍ୟ ଖୁବ୍ ସକ୍ରିୟ ହୋଇ ଉଠିଛନ୍ତି । "ଧର୍ମ ହିଁ ମାନବଜାତିର ପ୍ରକୃତ କର୍ତ୍ତବ୍ୟ" ଏବଂ

ଜରୁରୀ ସାମାଜିକ ସମସ୍ୟାମାନଙ୍କର ଏକମାତ୍ର ସମାଧାନ ହେଉଛି, "ଆମର ଜୀବନକୁ ଖ୍ରୀଷ୍ଟଧର୍ମର ଭାବ ଦ୍ୱାରା ଅଧିକ ଫଳପ୍ରଦଭାବେ ପରିପୂର୍ଣ୍ଣ କରିଦେବା"—ଏହିପରି ଯୁକ୍ତିକୁହିଁ ଶାସକଶ୍ରେଣୀର ମତାଦର୍ଶବାଦୀମାନେ ବାରମ୍ବାର ଆବୃତ୍ତି କରିଥାଆନ୍ତି ।

ଏହି ତୀବ୍ର ଧର୍ମପ୍ରଚାର ସହିତ, ବୁର୍ଜୁଆ ବୁଦ୍ଧିଜୀବୀଙ୍କ ମଧ୍ୟରେ ଏବଂ ସାଧାରଣଭାବେ ବୁର୍ଜୁଆମାନଙ୍କ ଭିତରେ ବି ସମସ୍ତ କିସମର ରହସ୍ୟମୟ ମତବାଦ—ଆଧ୍ୟାତ୍ମିକତା, ଫଳିତ ଜ୍ୟୋତିଷ, ସାମୁଦ୍ରିକ ବିଦ୍ୟା ଏବଂ ଅନ୍ୟାନ୍ୟ ପ୍ରକାରର ଅନ୍ଧବିଶ୍ୱାସ ମଧ୍ୟ ପ୍ରସାର ଲାଭ କରୁଛି ।

ଏସବୁର ଶ୍ରେଣୀ-ତାତ୍ପର୍ଯ୍ୟ ଲେନିନ୍‌ଙ୍କ ଦ୍ୱାରା ଉଦ୍‌ଘାଟିତ ହୋଇଛି : "ସର୍ବହରାଶ୍ରେଣୀର ବିକାଶ ଏବଂ ବର୍ଦ୍ଧିଷ୍ଣୁ ଶକ୍ତି ଦ୍ୱାରା ଉଦ୍‌ବେଜିତ ହୋଇ ବୁର୍ଜୁଆ-ଶ୍ରେଣୀ, ଯାହା କିଛି ଅନୁନ୍ନତ, ମଧ୍ୟଯୁଗୀୟ ଓ ମରଣମୁଖୀ, ସେସବୁକୁ ସମର୍ଥନ କରୁଛି ।"

ଆକ୍ଷରିକ ଅର୍ଥରେ ମଧ୍ୟଯୁଗୀୟ ଦର୍ଶନକୁ ପୁନର୍ଜୀବିତ କରାଯାଉଛି : ମଧ୍ୟଯୁଗୀୟ କାଥଲିକ ଦାର୍ଶନିକ ଟମାସ ଆକୁଇନସ୍‌ଙ୍କ ମତବାଦକୁ ନବୀନ-ଟମିବାଦ ନାମରେ ପୁନରୁଜ୍ଜୀବିତ କରାଯାଇଛି ; କ୍ୟାଥଲିକ ଗୀର୍ଜାର ଦର୍ଶନ ହିସାବରେ ତାହା ଭେଟିକାନ ଦ୍ୱାରା ସରକାରୀଭାବେ ସ୍ୱୀକୃତି ଲାଭ କରିଛି ।

କେହି ଭାବିପାରନ୍ତି ଯେ ଖୋଲାଖୋଲିଭାବେ ଏକ ଧର୍ମସମ୍ବନ୍ଧୀୟ ଦର୍ଶନର ପ୍ରଚାର, ଯାହା କି ମଧ୍ୟଯୁଗୀୟ ପାଣ୍ଡିତ୍ୟପୂର୍ଣ୍ଣ ମତବାଦକୁ "ଚିରନ୍ତନ ଦର୍ଶନ" ହିସାବରେ ପୁନଃପ୍ରତିଷ୍ଠା କରିବାକୁ ଚେଷ୍ଟିତ, ତାହା ବୈଜ୍ଞାନିକଙ୍କୁ ଆକୃଷ୍ଟ କରିବ ନାହିଁ ; ଯଦିବା ଆକର୍ଷଣ କରେ, ତେବେ ତାହା ଅତି ସାମାନ୍ୟ ହେବ । କିନ୍ତୁ ତାହା ଠିକ୍ ନୁହେଁ । ନବୀନ-ଟମିବାଦ ଏକ ସୂକ୍ଷ୍ମ ଯୁକ୍ତିପୂର ମତବାଦ ; ତାହା ପୁଞ୍ଜିବାଦୀ ସମାଜରେ ଅଧିକାଂଶ ସମୟରେ କେବଳ ସାଧାରଣ ଲୋକଙ୍କୁ ନୁହେଁ, ବିଜ୍ଞାନ କ୍ଷେତ୍ରର ଲୋକଙ୍କୁ ମଧ୍ୟ ବିପଥଗାମୀ କରିଥାଏ ।

ନବୀନ-ଟମିବାଦ ମତର ମୌଳିକ ଭିତ୍ତି ହେଲା ଯେ ତାହା ଭଗବାନଙ୍କୁ ସୃଷ୍ଟିକର୍ତ୍ତା ଓ ବିଶ୍ୱଜଗତର ସର୍ବଶକ୍ତିମାନ ଶାସକଭାବେ ସ୍ୱୀକାର କରେ । ପ୍ରକୃତି ହେଉଛି "ଐଶ୍ୱରିକ ଭାବର ଉପଲବ୍ଧି", ଇତିହାସ ହେଉଛି "ଐଶ୍ୱରିକ ଯୋଜନାର ଉପଲବ୍ଧି" । କିନ୍ତୁ, ନବୀନ-ଦୃଷ୍ଟବାଦୀ, ଅସ୍ତିତ୍ୱବାଦୀ ଏବଂ ସେହିଭଳି ମନୋଗତ ଭାବବାଦୀ ଦାର୍ଶନିକ ସମ୍ପ୍ରଦାୟଙ୍କ ପରି ହେବା ପରିବର୍ତ୍ତେ, ନବୀନ-ଟମିବାଦୀମାନେ ବାହ୍ୟ ଜଗତକୁ ସ୍ୱୀକାର କରନ୍ତି, କାରଣ ତାହା ଭଗବାନଙ୍କ ସୃଷ୍ଟ ହୋଇଥିବାରୁ ମନୁଷ୍ୟ ଓ ତା'ର ଚେତନାର ବାହାରେ ସ୍ୱାଧୀନ ସ୍ୱତନ୍ତ୍ରଭାବେ ତା'ର ବାସ୍ତବ ଅସ୍ତିତ୍ୱ ରହିଛି ଏବଂ ବିଶ୍ଳେଷଣ ଓ ଅନୁଭୂତି ଦ୍ୱାରା ତାହା ଜ୍ଞାତ ହୋଇପାରେ । ବସ୍ତୁତଃ

ସେମାନେ ଅସ୍ତିତ୍ୱବାଦୀଙ୍କ ଅଯୌକ୍ତିକତାକୁ ସୁଦ୍ଧା ସମାଲୋଚନା କରିଥାନ୍ତି ଏବଂ ବିଚାରଶକ୍ତିର ସପକ୍ଷରେ ଶତମୁଖ ହୋଇ କହନ୍ତି ଯେ ସତ୍ୟ ଲାଭ ପାଇଁ ମନୁଷ୍ୟର ଆକାଙ୍କ୍ଷା ଯେମିତି ହେବ ସେଇଥିପାଇଁ ଭଗବାନ ମନୁଷ୍ୟଙ୍କୁ ବିଚାରଶକ୍ତି ଦେଇଛନ୍ତି ।

ଯେଉଁ ଲୋକେ ଅଯୌକ୍ତିକବାଦ ଏବଂ ଦୃଷ୍ଟବାଦର ଭ୍ରମଧାରଣା ଦ୍ୱାରା ସନ୍ତୁଷ୍ଟ ନୁହନ୍ତି, ଅଥଚ ଦାର୍ଶନିକ ବସ୍ତୁବାଦ ଗ୍ରହଣ କରିବାକୁ ପ୍ରସ୍ତୁତ ନୁହନ୍ତି ବା ଇଚ୍ଛା କରନ୍ତି ନାହିଁ, ସେମାନେ ସଙ୍ଗେ ସଙ୍ଗେ ସେଇସବୁ ମତ (ନବୀନ-ଟମିବାଦ) ଗ୍ରହଣ କରି-ଯାଆନ୍ତି । ସେମାନେ ବିଚାରନ୍ତି ଯେ ନବୀନ-ଟମିବାଦ ବୈଜ୍ଞାନିକ ଅବଧାରଣ ସମ୍ପର୍କରେ ଏକ ନିର୍ଭୁଲ ସୃଷ୍ଟ ମନୋଭାବ ସହିତ ମାନବର ବ୍ୟକ୍ତିଗତ ଧାର୍ମିକ ଆବଶ୍ୟକତା ପୂରଣ କରୁଥିବା ଈଶ୍ୱରବିଶ୍ୱାସର ସଫଳ ସମନ୍ୱୟ ପ୍ରତିଷ୍ଠା କରୁଛି ।

ମାତ୍ର ତାହା ସମ୍ପୂର୍ଣ୍ଣ ଭ୍ରାନ୍ତ ଧାରଣା । କାରଣ, ବିଜ୍ଞାନ ଓ ବିଚାରଶକ୍ତି ସହିତ ନବୀନ-ଟମିବାଦର ମେଳ ହେବା ଅସମ୍ଭବ । ତା'ର ମୌଳିକ ଭାବନା ଯେ, ବିଜ୍ଞାନ ହେଉଛି ଧର୍ମର ଅନୁଗତ ଏବଂ ଜ୍ଞାନ ବିଶ୍ୱାସର ଅନୁଗତ । ନବୀନ-ଟମିବାଦ 'ବିଚାରଶକ୍ତି'କୁ ବ୍ୟାଖ୍ୟା କରେ ଯେ ତାହା ଏକ ଚିନ୍ତା କରିବାର ପଦ୍ଧତି, ଯାହାକି ଗୀର୍ଜାର ଶିକ୍ଷା ଓ ଉପଦେଶକୁ ଅତିକ୍ରମ କରେ ନାହିଁ; ଅନ୍ୟଦିଗରେ ଯେଉଁସବୁ ବୈଜ୍ଞାନିକ ସିଦ୍ଧାନ୍ତ ଧର୍ମର ଦୃଢ଼ୀଭୂତ ଅନ୍ଧବିଶ୍ୱାସର ବିରୋଧ କରେ ତାକୁ 'ବିଚାର-ଶକ୍ତି' ବିରୁଦ୍ଧରେ ବିଦ୍ରୋହ କହି ନବୀନ-ଟମିବାଦ ତାହାକୁ ଅଯୌକ୍ତିକ ବୋଲି ନିନ୍ଦା କରେ ।

ସେମାନେ ସତ୍ୟପ୍ରାପ୍ତିର ତିନୋଟି ମାର୍ଗର ସୂଚନା ଦିଅନ୍ତି : ବିଜ୍ଞାନ, ଦର୍ଶନ ଓ ଧର୍ମ । ଏମାନଙ୍କ ମଧ୍ୟରେ ସବୁଠାରୁ ନିମ୍ନସ୍ଥ ହେଲା ବିଜ୍ଞାନ । ତାହା ଯେଉଁ ଜ୍ଞାନ ପ୍ରଦାନ କରେ ତାହା ବିଶ୍ୱାସଯୋଗ୍ୟ ନୁହେଁ, ଦୈହିକ ଆବରଣଠାରେ ସୀମାବଦ୍ଧ, ତାହା ଜଗତର ପ୍ରକୃତ ଆଧ୍ୟାତ୍ମିକ ସତ୍ୟକୁ ଗୋପନ କରେ, କାରଣ ଉକ୍ତ ସତ୍ୟ ଦର୍ଶନ ବା 'ଅଧିବିଦ୍ୟା'ର ଆଂଶିକ ଗମ୍ୟ ହେଲେ ମଧ୍ୟ ବିଜ୍ଞାନର ଅଗମ୍ୟ । ଅନ୍ୟ ପକ୍ଷରେ ଦର୍ଶନ ବିଶ୍ୱଜଗତର ଆଦି କାରଣକୁ ବିଚାର କରେ ଏବଂ ଏ ସିଦ୍ଧାନ୍ତରେ ଉପନୀତ ହୁଏ ଯେ ଆଦି କାରଣ ହେଉଛି ପରମ ଆଧ୍ୟାତ୍ମିକ ବ୍ରହ୍ମ ବା ଐଶ୍ୱରିକ ସୃଷ୍ଟିକର୍ତ୍ତା । କିନ୍ତୁ ପରମ ସତ୍ୟ ଆହରଣର ମାର୍ଗ କେବଳ ପରମ ଜ୍ଞାନ ଓ ଧର୍ମ ବିଶ୍ୱାସ ମଧ୍ୟରେ ସନ୍ନିବେଶିତ, ଏବଂ ବିଜ୍ଞାନ ଓ ଦର୍ଶନର ସାଧାରଣ ସିଦ୍ଧାନ୍ତ ତାହାର ଅନୁଗତ ହେବା ଉଚିତ ।

ନବୀନ-ଟମିବାଦର ମତ ଅନୁସାରେ ତାତ୍ତ୍ୱିକ ବିଜ୍ଞାନର ଅନ୍ତିମ ଉଦ୍ଦେଶ୍ୟ ହେଲା ଭଗବାନଙ୍କ ଅସ୍ତିତ୍ୱ ସମ୍ପର୍କରେ ପ୍ରମାଣ ଉପସ୍ଥାପିତ କରିବା, ପ୍ରମାଣ ଯୋଗାଇଦେବା ଯେ "କ୍ୟାଥଲିକ୍‌ବାଦ ଓ ବିଜ୍ଞାନ ପରସ୍ପର ପାଇଁ ତିଆରି ହୋଇଛନ୍ତି ।" ବିଜ୍ଞାନ

ସମ୍ମୁଖୀନ ହେଉଥିବା ସମସ୍ତ ବାଧା ଓ ଅସୁବିଧା, ବିଜ୍ଞାନର ସମସ୍ତ ଅସମାଧିତ ସମସ୍ୟା, ଗୀର୍ଜାର ଅନ୍ଧବିଶ୍ୱାସର ବୃଦ୍ଧି ଦିଗରେ ବ୍ୟବହୃତ ହେଉଛି ।

ବିଶ୍ୱଜଗତର ଐଶ୍ୱରିକ ସୃଷ୍ଟି ସମ୍ପର୍କରେ କ୍ୟାଥଲିକ ଦାର୍ଶନିକମାନେ ତାଙ୍କର ଏକ ଅତି ପ୍ରିୟ ପ୍ରମାଣ ଉପସ୍ଥାପିତ କରନ୍ତି । ତାହା ହେଉଛି, "ପ୍ରସାରମାନ ବିଶ୍ୱ-ବ୍ରହ୍ମାଣ୍ଡର" ତତ୍ତ୍ୱ । ଏହା ୧୯୧୯ ର ଆବିଷ୍କାର ଉପରେ ପ୍ରତିଷ୍ଠିତ । ଉକ୍ତ ଆବିଷ୍କାର ହେଉଛି, ସୁଦୂର ନୀହାରିକାମଣ୍ଡଳର ରଶ୍ମି ବିକୀରଣ କ୍ଷେତ୍ରରେ ବର୍ଣ୍ଣାଳୀର ଲୋହିତ ଭାଗର ଶେଷଆଡ଼କୁ ଥିବା ସୀମାରେଖା ସ୍ଥାନାନ୍ତରିତ ହୋଇଥିଲା । ବିଜ୍ଞାନ ଏପର୍ଯ୍ୟନ୍ତ ତା'ର କାରଣ ପୁରାପୁରି ପ୍ରତିପାଦିତ କରିନାହିଁ । ତେବେ ଅତି ସମ୍ଭାବ୍ୟ ଅର୍ଥ ହେଉଛି ଯେ ଆମର ସୌରମଣ୍ଡଳଠୁ ନୀହାରିକାପୁଞ୍ଜ ଦ୍ରୁତ ବେଗରେ ପ୍ରତ୍ୟାବର୍ତ୍ତିନ କରୁଛନ୍ତି—ଏଇ ବିଷୟକୁ ଭାବବାଦୀ ଦାର୍ଶନିକମାନେ ସଙ୍ଗେ ସଙ୍ଗେ ପ୍ରମାଣଭାବେ ଧରିନେଲେ ଯେ ଭଗବାନ-ସୃଷ୍ଟ "ଆଦ୍ୟ ଅଣୁ", ଯାହା ମଧ୍ୟରେ ଏକଦା ସମସ୍ତ ବସ୍ତୁ ଓ ଶକ୍ତି କେନ୍ଦ୍ରୀଭୂତ ହୋଇଥିଲା, ତା'ରି ଭିତରୁ ଏ ବିଶ୍ୱବ୍ରହ୍ମାଣ୍ଡର ଜନ୍ମ ।

ଉପରୋକ୍ତ ସିଦ୍ଧାନ୍ତର କୌଣସି ବୈଜ୍ଞାନିକ ଯଥାର୍ଥତା ନାହିଁ । କାରଣ, ଜଗତର ଏକ ସୀମାବଦ୍ଧ ପରିସର ମଧ୍ୟରେ ରହି ଓ ବର୍ତ୍ତମାନର ପରିଦୃଷ୍ଟ ଘଟଣାବଳୀ ଉପରେ ଭିତ୍ତି କରି ଆମେ ଯେଉଁ ସିଦ୍ଧାନ୍ତରେ ଉପନୀତ ହେଉଛୁଁ ତାକୁ ଟାଣିନେଇ ଅସୀମ ବିଶ୍ୱବ୍ରହ୍ମାଣ୍ଡ ତଥା ଆମଠାରୁ କୋଟି କୋଟି ବର୍ଷଦ୍ୱାରା ବିଚ୍ଛିନ୍ନ ମହାକାଳ ସମ୍ପର୍କରେ ଯଦି ପ୍ରୟୋଗ କରୁଁ ତା'ହେଲେ ତା'ର କୌଣସି ଯଥାର୍ଥତା ରହିବ ନାହିଁ ।

ତା ସତ୍ତ୍ୱେ, ଏହି ତତ୍ତ୍ୱ ଓ ଏଇପରି ଆଉ "ତତ୍ତ୍ୱସବୁ" ପୋପ୍ ୧୨ଶ ପାୟସ ତାଙ୍କର ୧୯୫୨ ନଭେମ୍ବର ୨୨ ତାରିଖ ଅଭିଭାଷଣରେ ବ୍ୟବହାର କରିଛନ୍ତି । "ଆଧୁନିକ ବିଜ୍ଞାନ ଦୃଷ୍ଟିରେ ଭଗବାନଙ୍କର ଅସ୍ତିତ୍ୱର ପ୍ରମାଣ"—ଏଇ ହେଲା ତାଙ୍କର ବିବୃତି । ସେଥିରେ ସେ କହିଛନ୍ତି, "ଅତଏବ, ସମୟାନୁଯାୟୀ ସୃଷ୍ଟି ଏବଂ ତେଣୁ ଏକ ସୃଷ୍ଟିକର୍ତ୍ତା ; ଫଳରେ, ଭଗବାନ ! ଏଇ ସ୍ୱୀକୃତି ··· ଆମେ ବିଜ୍ଞାନଠାରୁ ଦାବୀ କରୁଁ, ଆମ ପୁରୁଷର ଲୋକେ ବିଜ୍ଞାନଠାରୁ ଏଇ ସ୍ୱୀକୃତି ଆଶା କରନ୍ତି ।"

ଭାବବାଦୀ ଦାର୍ଶନିକ ଓ ଧର୍ମପ୍ରଚାରକମାନେ ଅସମ୍ପୂର୍ଣ୍ଣଭାବେ ବ୍ୟାଖ୍ୟାକୃତ ବୈଜ୍ଞାନିକ ତଥ୍ୟକୁ ସେମାନଙ୍କର ଭାବବାଦୀ ଓ ଧର୍ମାନୁରକ୍ତ ସିଦ୍ଧାନ୍ତ ଲାଗି କପରି ବ୍ୟବହାର କରୁଛନ୍ତି, ଏହା ତା'ର ଏକ ବିଶେଷ ଦୃଷ୍ଟାନ୍ତ । ଦାର୍ଶନିକ ବସ୍ତୁବାଦ ପ୍ରତି କେବଳ ଦୃଢ଼ଭାବେ ଅନୁଗତ ରହି ଏବଂ ଦ୍ୱନ୍ଦ୍ୱମୂଳକ ପଦ୍ଧତିକୁ ଅବିଶ୍ରାନ୍ତ ପ୍ରୟୋଗ କରିବାଦ୍ୱାରା ବୈଜ୍ଞାନିକମାନେ ଦ୍ୱିଧା, ଇତସ୍ତତଃତାକୁ ଏଡ଼ାଇପାରିବେ ଏବଂ

ବିଜ୍ଞାନର ଅଗ୍ରଗତିର ପ୍ରତ୍ୟେକ କଷ୍ଟସାଧ୍ୟ ସ୍ଥଳରେ ଭାବବାଦୀମାନେ ଯେଉଁ ଜାଲ ବିସ୍ତାର କରୁଛନ୍ତି ତାକୁ ହଟାଇଦେଇପାରିବେ ।

ଅନେକ ସମୟରେ ନବୀନ-ଟମିବାଦୀମାନେ ଦାବୀ କରନ୍ତି ଯେ ମନୋଗତ ଭାବବାଦୀଙ୍କ ଭଳି ନ ହୋଇ ସେମାନେ ନୈତିକ ପ୍ରଶ୍ନମାନଙ୍କ ଉପରେ ବିଶେଷ ଜୋର ଦିଅନ୍ତି । କିନ୍ତୁ ଯେଉଁ ନୈତିକତା ସେମାନେ ପ୍ରଚାର କରନ୍ତି ତାହା ହେଲା ଅତି ବିନମ୍ର ଆତ୍ମସମର୍ପଣ । ତାଙ୍କର ମତି ହେଲା, ମନୁଷ୍ୟ ତା'ର "ଅମର ଆତ୍ମା", "ଚିରନ୍ତନ ଜୀବନ" ଏବଂ ଭଗବାନଙ୍କ ସମ୍ପର୍କରେ ଚିନ୍ତିତ ହେବା ଉଚିତ । ସଂସାରରେ ତା'ର ଜୀବନ ପ୍ରତି, ତା'ର କଳୁଷିତ ଶରୀର ପ୍ରତି ସେତେ ଲିପ୍ତ ରହିବା ଉଚିତ ନୁହେ । ଏ ନୈତିକତା ହେଲା—ପ୍ରଚଳିତ ସାମାଜିକ କଳଙ୍କ ଓ ଦୁର୍ବୃତ୍ତି, ଶୋଷଣ ଓ ଅସମତାକୁ ନୀରବରେ ଗ୍ରହଣ କରିଯିବା ଓ ପରିଣାମରେ ତାକୁ ନ୍ୟାୟସଙ୍ଗତ କରିବାର ନୈତିକତା । ଏ ନୈତିକତା ସାମାଜିକ ଅନ୍ୟାୟ ବିରୁଦ୍ଧରେ ପ୍ରତିବାଦ ସଂଗ୍ରାମ କରିବା ପରିବର୍ତ୍ତେ ଭଗବାନଙ୍କ ନିକଟରେ ପ୍ରାର୍ଥନା, ଜଣାଣ ଓ ନିବେଦନ କରିବାକୁ ଉପଦେଶ ଦେଇଥାଏ । ତେଣୁ କେବଳ ଶାସକ ଶୋଷକ ଶ୍ରେଣୀର ସୁବିଧା ପାଇଁ ହିଁ ସେ ନୈତିକତା ।

ନବୀନ-ଟମିବାଦୀଙ୍କର ସାମାଜିକ ଓ ରାଜନୈତିକ ନୀତି ହେଉଛି ସମାଜବାଦ ଉପରେ ଆକ୍ରମଣ କରିବା ସଙ୍ଗେ ସଙ୍ଗେ ପୁଞ୍ଜିବାଦର କେତେକ ଦୋଷତ୍ରୁଟିର ମଧ୍ୟ "ସମାଲୋଚନା" କରିବା । କ୍ୟାଥଲିକ୍ ଦାର୍ଶନିକମାନଙ୍କର ଯୁକ୍ତି ଅନୁସାରେ ସମାଜର ପ୍ରଚଳିତ ଅନିଷ୍ଟର କାରଣ ହେଲା, ବହୁଲୋକ—ତାଙ୍କ ମଧ୍ୟରେ ପୁଞ୍ଜିପତିମାନେ ଅନ୍ତର୍ଭୁକ୍ତ—ସେମାନଙ୍କ ଧର୍ମବିଶ୍ୱାସକୁ ଭୁଲିଯାଇଛନ୍ତି, ଆଉ ଉତ୍ତମ ଖ୍ରୀଷ୍ଟିଆନ ହୋଇ-ନାହାନ୍ତି । ଏ ପ୍ରକାର 'ସମାଲୋଚନା' ଦର୍ଶାଇଦିଏ ଯେ ନବୀନ-ଟମିବାଦୀ ପୁଞ୍ଜିବାଦ ବିରୋଧରେ ଲଢ଼ିବାକୁ ଚାହେନା, ବରଂ ତାକୁ ରକ୍ଷା କରେ ।

ପୁଞ୍ଜିବାଦୀ ଜଗତରେ ବହୁପ୍ରକାରର ଦାର୍ଶନିକ ଧାରା ଓ ସମ୍ପ୍ରଦାୟ ରହିଛି, ଯଥା—ପ୍ରୟୋଗବାଦ *, ନବ-ବାସ୍ତବବାଦ, ପ୍ରପଞ୍ଚବାଦ, ବ୍ୟକ୍ତିତ୍ୱବାଦ । ମାତ୍ର ଏ ସମସ୍ତେ ଭାବବାଦର ପରିସରଭୁକ୍ତ । ସେମାନେ ସେଇସବୁ ପ୍ରତିକ୍ରିୟାଶୀଳ ପ୍ରକୃତି ଓ ଧାରଣାମାନ ବହନ କରିଥାନ୍ତି, ଯାହା କି ଉପରେ ଆଲୋଚିତ ହୋଇଥିବା ଖାଣ୍ଟି ଭାବବାଦୀ ମତବାଦରେ ଅତି ସ୍ପଷ୍ଟଭାବେ ଦେଖାଯାଇଛି ।

ଭାବବାଦୀ ଦର୍ଶନ ବୈଜ୍ଞାନିକ ଓ ସାମାଜିକ ସମସ୍ୟାମାନଙ୍କ ସମ୍ପର୍କରେ ଆମକୁ ନିର୍ଭୁଲ ଉତ୍ତର ଦେଇପାରେ ନାହିଁ । ବିଜ୍ଞାନ ଏବଂ ସାମାଜିକ ପ୍ରଗତି ପ୍ରତି ଶତ୍ରୁତାରେ

---

* 'ପ୍ରୟୋଗବାଦ' ତୃତୀୟ ଅଧ୍ୟାୟରେ ଆଲୋଚିତ ହୋଇଅଛି ।

ଉଦ୍‌ବୁଦ୍ଧ ହୋଇଥିବା ହେତୁ, ତାହା ପୁଞ୍ଜିବାଦର ଦ୍ରୁତ ଅଧୋଗତି ଓ ପୁଞ୍ଜିବାଦୀ ସଂସ୍କୃତିର ସଙ୍କଟର ଅଭିବ୍ୟକ୍ତି ।

## (୮) ଏକ ବୈଜ୍ଞାନିକ ବିଶ୍ୱଦୃଷ୍ଟିଭଙ୍ଗୀ ଦିଗରେ

ଆଧୁନିକ ଭାବବାଦୀ ଦର୍ଶନ, ବିଜ୍ଞାନର ଅଗ୍ରଗତି ଓ ପ୍ରଗତିଶୀଳ ସାମାଜିକ ଆନ୍ଦୋଳନ ଉଭୟଙ୍କ ବିରୁଦ୍ଧରେ ଗତି କରୁଛି । ତାହାହିଁ ହେଉଛି ତା'ର ଅସାରତା ଓ ଅସମର୍ଥତାର ଲକ୍ଷଣ । ତେଣୁ ତାହା, ସାଧୁ, ସଚ୍ଚୋଟ, ସୁବିବେକୀ ବିଜ୍ଞାନୀଙ୍କ ଭିତରେ, ଆଉ ଯେଉଁମାନେ ଜନସାଧାରଣଙ୍କ ସ୍ୱାର୍ଥ ଓ ମାନବସମାଜର ଉଜ୍ଜ୍ୱଳ ଭବିଷ୍ୟତକୁ ପୁଞ୍ଜିବାଦୀ ମୁନାଫାର ଊର୍ଦ୍ଧ୍ୱରେ ରଖିଛନ୍ତି, ସେମାନଙ୍କ ମଧ୍ୟରେ, ପ୍ରତିବାଦର ସ୍ୱର ଜାଗ୍ରତ କରିଥାଏ ।

ସାମ୍ରାଜ୍ୟବାଦୀ ପ୍ରଚାରକଗଣ ଚତୁରତା କରି "ମୁକ୍ତ ଦୁନିଆ" ବୋଲି ଯେଉଁସବୁ ଦେଶକୁ କହନ୍ତି, ସେ ଦେଶମାନଙ୍କରେ, ପ୍ରଗତିଶୀଳ ଓ ପ୍ରତିକ୍ରିୟାଶୀଳ ବିଶ୍ୱଦୃଷ୍ଟିଭଙ୍ଗୀ ଭିତରେ, ବସ୍ତୁବାଦ ଓ ଭାବବାଦ ମଧ୍ୟରେ ଆଦର୍ଶ ଓ ତତ୍ତ୍ୱଗତ ସଂଗ୍ରାମ ଅଧିକ ପ୍ରଖର ହୋଇଉଠୁଛି । କମ୍ୟୁନିଷ୍ଟପାର୍ଟିମାନଙ୍କ ଭିତରେ ସଂଗଠିତ ମାର୍କ୍‌ସବାଦୀମାନେ ଏଇ ସଂଗ୍ରାମର ଅଗ୍ରଣୀ । ବହୁ ବୁର୍ଜୁଆ ବୁଦ୍ଧିଜୀବୀ ସୁଦ୍ଧା ଦାର୍ଶନିକ ବସ୍ତୁବାଦର ପ୍ରତିକ୍ରିୟାଶୀଳ ଭୂମିକା ଉପଲବ୍ଧି କରି ତା ବିରୁଦ୍ଧରେ ଦଣ୍ଡାୟମାନ ହୋଇଛନ୍ତି ।

ଆମେରିକାର ଦାର୍ଶନିକ ବାରୋସ୍ ଡନ୍‌ହାମ୍ ହେଲେ ତା'ର ଗୋଟାଏ ଦୃଷ୍ଟାନ୍ତ । ଆଧ୍ୟାତ୍ମିକ ଓ ରାଜନୈତିକ ପ୍ରତିକ୍ରିୟା ବିରୁଦ୍ଧରେ ସେ ଜଣେ ନିର୍ଭୀକ ଯୋଦ୍ଧା, ଅଧୋଗାମୀ ଦାର୍ଶନିକ ମତବାଦ ଓ ସାମାଜିକ ରହସ୍ୟର ଜଣେକ ତୀବ୍ର ସମାଲୋଚକ । ଦୃଷ୍ଟବାଦୀ ଓ ପ୍ରୟୋଗବାଦୀମାନେ ଯେଉଁଭଳି ଦର୍ଶନର ଅଧୋଗତି ଓ ହତାଦର ଅବସ୍ଥା କରିଛନ୍ତି ତାହା ଡନ୍‌ହାମ୍ ଫିଟାଇ ଦେଇଛନ୍ତି । ଦର୍ଶନକୁ ସେ ମର୍ଯ୍ୟାଦା ଦିଅନ୍ତି, ସେଇ ଦର୍ଶନକୁ ସେ ଜନସାଧାରଣଙ୍କ ସ୍ୱାର୍ଥ ଓ ଆକାଂକ୍ଷାର ଅଭିବ୍ୟକ୍ତି ବୋଲି ବିଚାର କରନ୍ତି । ସେ ତାଙ୍କର ପ୍ରକାଶିତ ପୁସ୍ତକ 'ଜାଏଣ୍ଟ ଇନ୍ ଚେନ୍‌ସ'ରେ ଲେଖିଛନ୍ତି : "ମୋ ମତରେ ଦର୍ଶନ ସମ୍ବନ୍ଧରେ ସବୁଠାରୁ ଆଦରଣୀୟ ବିଷୟ ହେଉଛି ଜନସାଧାରଣଙ୍କ ମଧ୍ୟରେ ଥିବା ତା'ର ଉତ୍ସ ।" ଡନ୍‌ହାମ୍‌ଙ୍କ ଲାଗି ଦର୍ଶନ "ଭାଷାର" ପାଣ୍ଡିତ୍ୟପୂର୍ଣ୍ଣ "ବିଶ୍ଳେଷଣ" ନୁହେଁ, ତାହା "ଜୀବନର ପଥ-ନିର୍ଦ୍ଦେଶକ", "ଦର୍ଶନ ହେଉଛି ମାନବିକ ମୁକ୍ତିର ତତ୍ତ୍ୱ" ।

ଜାପାନର ଦାର୍ଶନିକ ୟାଙ୍ଗିଦା କେଙ୍ଗ୍‌ଜୁରୋ, ଯିଏ ଶାନ୍ତି ଲାଗି, ତାଙ୍କର ଦେଶବାସୀଙ୍କ ଗଣତାନ୍ତ୍ରିକ ଅଧିକାର ପ୍ରତିଷ୍ଠା ସକାଶେ ଏବଂ ସ୍ୱଦେଶକୁ ବିଦେଶୀ ନିର୍ଭରଶୀଳତା କବଳରୁ ମୁକ୍ତ କରିବା ପାଇଁ ସଂଗ୍ରାମରେ ଅବତୀର୍ଣ୍ଣ ହୋଇଛନ୍ତି, ସେ ମଧ୍ୟ

ଶେଷରେ ଏହି ସିଦ୍ଧାନ୍ତରେ ଆସି ପହଞ୍ଚିଛନ୍ତି ଯେ ଭାବବାଦୀ ଦର୍ଶନ ମନୁଷ୍ୟକୁ ଦୁର୍ବଳ କରେ, ତା'ର ମନକୁ ମୋହ ଓ ବିଭ୍ରାନ୍ତି ଦ୍ୱାରା ପ୍ରତାରିତ କରେ । ଏଭଳି ପ୍ରବଞ୍ଚକ ଦର୍ଶନକୁ ସମାଲୋଚନା କରିବାକୁ, ପରିତ୍ୟାଗ କରିବାକୁ ଏବଂ ବସ୍ତୁବାଦୀ ଦୃଷ୍ଟିକୋଣ ଗ୍ରହଣ କରିବା ନିମନ୍ତେ ସେ ସାହସ କରିଥିଲେ । ତାଙ୍କର "ମାଇଁ ଭଏଜ ଟୁ ଟ୍ରୁଥ୍"ରେ ସେ ଲେଖିଛନ୍ତି :

"ଭାବବାଦୀ ଦର୍ଶନର ଧ୍ୱଂସାବଶେଷ, ନୂତନ ମାର୍କ୍ସବାଦୀ ବସ୍ତୁବାଦୀ ଦର୍ଶନ ଲାଗି ପଥ ପରିଷ୍କାର କରିଛି ; ଏହି ମାର୍କ୍ସବାଦୀ ବସ୍ତୁବାଦୀ ଦର୍ଶନ ଆମ ଯୁବକଶ୍ରେଣୀର ମନକୁ ଅଧିକାର କରିଛି । ଏହାର ହେତୁ ବେଶ୍ ବୁଝାପଡ଼େ । କାରଣ, ବିଦେଶୀ ସୈନ୍ୟଙ୍କ ଦଖଲରେ ଥିବା ଆମ ଦେଶରେ ସାମାଜିକ ବିରୋଧିତା ଯେତିକି ଅଧିକ ତୀବ୍ର ଓ ସଙ୍ଗୀନ ହୋଇଉଠିବ, ବ୍ୟାପକ ଜନସାଧାରଣ ଦ୍ୱନ୍ଦ୍ୱମୂଳକ ବସ୍ତୁବାଦର ସତ୍ୟକୁ ସେତିକି ସ୍ପଷ୍ଟଭାବେ ଉପଲବ୍ଧି କରିପାରିବେ ।"

ଡନହାମ୍ ଓ କେଙ୍ଗ୍‌କୁରୋଙ୍କ ଦୃଷ୍ଟାନ୍ତ ବିଚ୍ଛିନ୍ନ ଘଟଣା ନୁହେଁ । ଆହୁରି ଅନେକ ପ୍ରଗତିଶୀଳ ଦାର୍ଶନିକ ଓ ବୈଜ୍ଞାନିକ ଭାବବାଦୀ ଦର୍ଶନର ପ୍ରତିରୋଧ କରୁଛନ୍ତି ଏବଂ ଦ୍ୱନ୍ଦ୍ୱମୂଳକ ବସ୍ତୁବାଦର ପକ୍ଷ ସମର୍ଥନ କରୁଛନ୍ତି ଓ ତା'ର ପ୍ରଚାର ଚଳାଇଛନ୍ତି ।

ଆମେରିକାରେ ବସ୍ତୁବାଦର ପ୍ରଧାନ ସମର୍ଥକମାନଙ୍କ ମଧ୍ୟରେ ହାୱାର୍ଡ ସେଲ୍‌ସାମ୍, ହାରି ୱେଲ୍‌ସ୍ ଏବଂ ଅନ୍ୟାନ୍ୟ ମାର୍କ୍ସବାଦୀମାନେ ରହିଛନ୍ତି । ସୁପରିଚିତ ପ୍ରଗତିଶୀଳ ଦାର୍ଶନିକ ଜନ୍ ସୋମରଭିଲ, ଆମେରିକାର ଲୋକଙ୍କୁ ମାର୍କ୍ସବାଦୀ-ଲେନିନ୍‌ବାଦୀ ବିଶ୍ୱଦୃଷ୍ଟିଭଙ୍ଗୀ ସହିତ ପରିଚିତ କରିବା ଦିଗରେ ବହୁତ କାମ କରିଛନ୍ତି । ଆମେରିକାର ଆଉ କେତେମାନେ ଭାବବାଦୀ ମତବାଦକୁ ପଦାରେ ପକାଇବା ଦିଗରେ ସାହାଯ୍ୟ କରିଛନ୍ତି ଏବଂ ବସ୍ତୁବାଦୀ ଦର୍ଶନ ସହିତ ଅତି ଘନିଷ୍ଠଭାବେ ସଂପୃକ୍ତ, ସେମାନେ ହେଲେ ରଏ ଉଡ୍‌ସେଲାରସ୍, କୋରଲିସ ଲାମଣ୍ଟ୍ ଏବଂ ପଲ୍ ହାସରି । ବିଲାତର ବସ୍ତୁବାଦୀମାନଙ୍କ ମଧ୍ୟରେ ଯେଉଁମାନେ ଉଚ୍ଚ ପ୍ରଶଂସା ଅର୍ଜନ କରିଛନ୍ତି ସେମାନେ ହେଲେ ମରିସ୍ କର୍ଣ୍ଣଫୋର୍ଥ, ଜନ୍ ଲୁଇସ୍, ଆର୍ଥର ହେନେସି ଉଦ୍‌ଟସନ୍, ଆଉ ଜେ. ଡି. ବରନାଲ ଏବଂ ଜେ. ବି. ଏସ୍. ହାଲଡେନ୍‌ଙ୍କ ଭଳି ସୁବିଖ୍ୟାତ ବୈଜ୍ଞାନିକ । ପ୍ରଗତିଶୀଳ ବିଶ୍ୱଦୃଷ୍ଟିଭଙ୍ଗୀର ଅଗ୍ରଗତି ଦିଗରେ ଏମାନଙ୍କର ବହୁ ଅବଦାନ ରହିଛି । ଫରାସୀ ଓ ଇଟାଲୀସ୍ଥ ମାର୍କ୍ସବାଦୀ ରୋଜର ଗାରଡି, ଜନ୍ କାନାପା, ମାରିଓ ସ୍ପିନେ, ସିଜାଲ ଲୁପୋରିନି ପ୍ରଭୃତି ଆହୁରି ଅନେକ ବ୍ୟକ୍ତି ପ୍ରଗତିଶୀଳ ଦାର୍ଶନିକ ଭାବ ପ୍ରସାର କରିବାରେ ଅତି ମୂଲ୍ୟବାନ କାର୍ଯ୍ୟ କରିଛନ୍ତି । ଏଲି. ଡି. ଗୋର୍ଟାରି (ମେକ୍‌ସିକୋ) ଏବଂ ଏଇଚ୍. ଥିଓଡୋରିଡିସ୍ (ଗ୍ରୀସ୍)ଙ୍କ ଗ୍ରନ୍ଥମାନଙ୍କରୁ ଜଣାଯାଏ ଯେ ଅନ୍ୟାନ୍ୟ ଦେଶମାନଙ୍କରେ ମଧ୍ୟ ବସ୍ତୁବାଦୀ ଦର୍ଶନ ଅଧିକରୁ ଅଧିକ ସମର୍ଥନ ଲାଭ କରୁଛି ।

ଦାର୍ଶନିକ ବିଗ୍ଭର ଓ ପରିସ୍ଥିତି ସାମାଜିକ କାର୍ଯ୍ୟ ଜରିଆରେ ଯେଉଁମାନେ ବସ୍ତୁବାଦ ଗ୍ରହଣ କରିଛନ୍ତି ସେଇମାନେ ଯେ କେବଳ ବସ୍ତୁବାଦକୁ ସମର୍ଥନ କରୁଛନ୍ତି ତାହା ନୁହେ; ସମସାମୟିକ ପ୍ରକୃତିବିଜ୍ଞାନର ନେତୃସ୍ଥାନୀୟ ବୈଜ୍ଞାନିକଙ୍କ ଭିତରେ ମଧ୍ୟ ବସ୍ତୁବାଦ କ୍ରମବର୍ଦ୍ଧମାନ ସମର୍ଥନ ଲାଭ କରୁଛି । କାରଣ, ବର୍ତ୍ତମାନର ଦଶକମାନଙ୍କର ବହୁ ଗୁରୁତ୍ୱପୂର୍ଣ୍ଣ ଆବିଷ୍କାର, ମାର୍କ୍ସବାଦୀ ଦାର୍ଶନିକ ବସ୍ତୁବାଦର ସତ୍ୟତାକୁ ଅତି ବିଶ୍ୱାସଯୋଗ୍ୟଭାବେ ପ୍ରତିପାଦିତ କରିଛି ।

ଆଇନଷ୍ଟାଇନଙ୍କ ଆପେକ୍ଷିକ ତତ୍ତ୍ୱ ଦର୍ଶାଇଦେଇଛି ଯେ ଶୂନ୍ୟ, କାଳ ଓ ଗତିଶୀଳ ବସ୍ତୁ ମଧ୍ୟରେ ଅଚ୍ଛେଦ୍ୟ ସମ୍ପର୍କ ବିଦ୍ୟମାନ । ଶୂନ୍ୟ ଓ କାଳ ଯେ ବସ୍ତୁର ଅସ୍ତିତ୍ୱର ପ୍ରଣାଳୀ, ଦ୍ୱନ୍ଦମୂଳକ ବସ୍ତୁବାଦର ସେ ଦୃଷ୍ଟିକୋଣକୁ ତାହା ଆହୁରି ଦୃଢ଼ଭାବେ ପ୍ରମାଣିତ କରୁଛି । ଆଧୁନିକ ପଦାର୍ଥବିଦ୍ୟା, ଆଣବିକ ନିଉକ୍ଲିୟସର ଅତ୍ୟନ୍ତ ଜଟିଳ ଗଠନ ବ୍ୟବସ୍ଥାକୁ ପ୍ରକାଶ କରିବା ଦ୍ୱାରା ଏବଂ ତା'ର ନୂତନ ମୌଳିକ ଭୌତିକ ସୂକ୍ଷ୍ମ କଣାମାନଙ୍କୁ ଆବିଷ୍କାର କରିବା ଫଳରେ,—ବସ୍ତୁ ଅକ୍ଷୟ ଓ ତା'ର ରୂପ ଅସୀମ,—ଏଇ ମାର୍କ୍ସବାଦୀ ବସ୍ତୁବାଦୀ ନିବନ୍ଧ ପାଇଁ ନୂତନ ପ୍ରମାଣ ଯୋଗାଇଦିଏ । ଅତି ସୂକ୍ଷ୍ମ ଅଣୁ ଯେ ବସ୍ତୁ ଓ ବ୍ୟାପ୍ତିର ଐକ୍ୟ, ସୂକ୍ଷ୍ମକଣା ଓ ତରଙ୍ଗ ଗୁଣର ଐକ୍ୟ,—ଏଇ ଦ୍ୱନ୍ଦମୂଳକ ଦୃଷ୍ଟିକୋଣ ପଦାର୍ଥବିଦ୍ୟାବିତ୍‌ମାନେ କ୍ରମଶଃ ଗ୍ରହଣ କରିଯାଇଛନ୍ତି ।

ପଦାର୍ଥବିଜ୍ଞାନର ଅଗ୍ରଗତି ସହିତ ରସାୟନବିଦ୍ୟା, ଜୀବବିଦ୍ୟା, ଶରୀରବିଦ୍ୟାର ଅଗ୍ରଗତି ସାଧିତ ହୋଇଛି । ତାତ୍ତ୍ୱିକ ପ୍ରାକୃତିକ ବିଜ୍ଞାନର ସାଧନା ଫଳରେ ପ୍ରୟୋଗବିଦ୍ୟାରେ ବିପୁଳ ଉନ୍ନତି ଘଟିଛି । ତିନୋଟି ମହାନ ବୈଜ୍ଞାନିକ ଓ ପ୍ରୟୋଗଗତ ଆବିଷ୍କାର—ଆଣବିକ ଶକ୍ତି, ଇଲେକଟ୍ରୋନିକ ଏବଂ ରକେଟ୍‌ବିଦ୍ୟା ମାନବଜାତିର ଉତ୍ପାଦିକା ଶକ୍ତି ଇତିହାସରେ ଏକ ନୂତନ ଯୁଗ ସୃଷ୍ଟି କରିଛି ଏବଂ ପ୍ରକୃତି ଉପରେ ମନୁଷ୍ୟର କ୍ଷମତା ଅପରିମିତଭାବେ ବୃଦ୍ଧି କରିଛି । ମନୁଷ୍ୟ ଯେ ପୃଥିବୀର ବାୟୁମଣ୍ଡଳର ଊର୍ଦ୍ଧ୍ୱକୁ ଯାତ୍ରା କରିପାରିବ ଏବଂ ଅନ୍ତରୀକ୍ଷର ଶୂନ୍ୟତାକୁ ଜୟ କରିବାରେ ସମର୍ଥ ହେବ ତା'ର ବାସ୍ତବ ସମ୍ଭାବନା, କୃତ୍ରିମ ଉପଗ୍ରହ ଏବଂ ରକେଟ୍ ପ୍ରେରଣ ଦ୍ୱାରା ଉଦ୍‌ଘାଟିତ ହୋଇଛି ।

ଏଇସବୁ ଯୋଗୁଁ ଏବଂ ଏଇଭଳି ଅନ୍ୟାନ୍ୟ ଆବିଷ୍କାର ତଥା ସାଧନା ଫଳରେ ଦ୍ୱନ୍ଦମୂଳକ ବସ୍ତୁବାଦର ସତ୍ୟ ଆହୁରି ଦୃଢ଼ଭାବେ ପ୍ରତିପନ୍ନ ହୋଇଛି । ଅନେକ ସମୟରେ ଦୃଷ୍ଟବାଦୀ-ମନୋଭାବାପନ୍ନ ବୈଜ୍ଞାନିକମାନଙ୍କୁ ସେମାନଙ୍କର ମତାମତ ପରିବର୍ତ୍ତନ କରିବାକୁ ଏହା ବାଧ୍ୟ କରିଛି । ସେଭଳି ଦୃଷ୍ଟାନ୍ତର ସୂଚନା ରହିଛି । ଆଇନ୍‌ଷ୍ଟାଇନ୍ ତାଙ୍କ ଜୀବନର ଶେଷ ଭାଗରେ ବାରଂବାର ଏପରି ବିବୃତିମାନ ଦେଇଛନ୍ତି ଯାହା ବସ୍ତୁବାଦକୁ ସମର୍ଥନ କରିଛି । ଲିଓପୋଲ୍‌ଡ୍ ଇନ୍‌ଫେଲ୍‌ଡ ଏବଂ

ଲୁଇ ଡି ବ୍ରୋଗଲଙ୍କ ଭଳି ସୁବିଖ୍ୟାତ ବୈଜ୍ଞାନିକମାନେ, ଯେଉଁମାନେ ପୂର୍ବେ ଦୃଷ୍ଟ-ବାଦ୍ୱର ସମର୍ଥକ ଥିଲେ, ସଂପୂର୍ଣ୍ଣଭାବେ ବସ୍ତୁବାଦର ପକ୍ଷକୁ ଚାଲିଆସିଛନ୍ତି ।

କେତେକ ଆନ୍ତର୍ଜାତୀୟ ଖ୍ୟାତିସମ୍ପନ୍ନ ବୈଜ୍ଞାନିକ ( ନିଏଲସ୍ ବୋର୍, ଓ୍ୱେରନର୍ ହିସେନ୍‌ବର୍ଗ ) ଯେଉଁମାନେ ବହୁବର୍ଷ ଧରି ଦୃଷ୍ଟବାଦୀ ପଦାର୍ଥବିଦ୍ୟାବିତ୍-ମାନଙ୍କର ସ୍ୱୀକୃତ ପୁରୋଧାଭାବେ ରହିଥିଲେ, ଏବେ ଦୃଷ୍ଟବାଦର କେତେକ ନିବନ୍ଧକୁ ସମାଲୋଚନା ଓ ପ୍ରତ୍ୟାଖ୍ୟାନ କରିବାକୁ ଆରମ୍ଭ କଲେଣି । ବୈଜ୍ଞାନିକ ଓ ଦାର୍ଶନିକ-ମାନଙ୍କ ଭିତରେ ଯେଉଁମାନେ ଦୃଷ୍ଟବାଦର ସମର୍ଥକ, ତାଙ୍କ ଭିତରୁ କେତେକ ଇତସ୍ତତଃ ହେବାକୁ ଲାଗିଲେଣି, ଏବଂ କ୍ରମଶଃ ବସ୍ତୁବାଦଆଡ଼କୁ ଅଗ୍ରସର ହେଉଛନ୍ତି ।

ପ୍ରକୃତିବିଜ୍ଞାନ କ୍ଷେତ୍ରରେ ବର୍ତ୍ତମାନର ଆବିଷ୍କାରମାନ ବିଶେଷଭାବେ ମହାନ ତାତ୍ପର୍ଯ୍ୟପୂର୍ଣ୍ଣ । କାରଣ ତାହା ପ୍ରାଚୀନ ଅଧିବିଦ୍ୟା-ବିଶ୍ୱ ଦୃଷ୍ଟିଭଙ୍ଗୀକୁ ଧ୍ୱଂସ କରେ, ବିଶ୍ୱଜଗତ ସମ୍ବନ୍ଧରେ ଦ୍ୱନ୍ଦ୍ୱମୂଳକ ଧାରଣାକୁ ସର୍ବାଗ୍ରେ ଉପସ୍ଥାପିତ କରେ । ଏଇ ଶତାବ୍ଦୀର ପ୍ରଥମ ଭାଗରେ ହୋଇଥିବା ପଦାର୍ଥବିଦ୍ୟାର ନୂତନ ବିକାଶରୁ ସାରାଂଶ ଗ୍ରହଣ କରି ଲେନିନ୍ ଯଥାର୍ଥଭାବେ ତାଙ୍କର 'ମାଟେରିଆଲିଜମ୍ ଆଣ୍ଡ ଇମ୍ପିରିଓ-କ୍ରିଟିସିଜିମ୍'ରେ କହିଛନ୍ତି, "ଆଧୁନିକ ପଦାର୍ଥବିଦ୍ୟା ପ୍ରସବ-ଯନ୍ତ୍ରଣା ମଧ୍ୟରେ ରହିଛି; ତାହା ଦ୍ୱନ୍ଦ୍ୱମୂଳକ ବସ୍ତୁବାଦକୁ ଜନ୍ମ ଦେଉଛି" । ପଦାର୍ଥବିଦ୍ୟା ସମ୍ପର୍କରେ ଏ ଉକ୍ତିର ସତ୍ୟତା ଆମ ଯୁଗରେ ବି ଅକ୍ଷୁଣ୍ଣ ରହିଛି ।

ସମସାମୟିକ ପ୍ରକୃତିବିଜ୍ଞାନ ତା'ର ନିଜର ବିକାଶ ଜରିଆରେ ହିଁ ବସ୍ତୁବାଦୀ ଦ୍ୱନ୍ଦ୍ୱକୁ ଗ୍ରହଣ କରିବା ସୁଗମ କରିଦିଏ । ପଲ୍ ଲଙ୍ଗିଭିନ୍ ଓ ଫ୍ରେଡେରିକ୍ ଜୋଲିଅଟ୍-କ୍ୟୁରି ତଥା ଅନ୍ୟ ଅନେକଙ୍କ ଭଳି ଏ ଯୁଗର ବଡ଼ ବଡ଼ ପଦାର୍ଥବିଦ୍ୟାବିତ୍‌ମାନେ ଏହା ହୃଦୟଙ୍ଗମ କରିଥିଲେ ଏବଂ ଦ୍ୱନ୍ଦ୍ୱମୂଳକ ବସ୍ତୁବାଦର ଦୃଢ଼ ସମର୍ଥକ ହୋଇଥିଲେ ।

ବର୍ତ୍ତମାନ ଏଭଳି ଏକ ଯୁଗ, ଯେତେବେଳେ ପ୍ରତିକ୍ରିୟାଶୀଳ ଦର୍ଶନ ବିରୋଧରେ ସଫଳ ସଂଗ୍ରାମ ପାଇଁ ଏବଂ ବସ୍ତୁବାଦୀ ବିଶ୍ୱ-ଦୃଷ୍ଟିଭଙ୍ଗୀର ସୁରକ୍ଷା ଲାଗି ଦକ୍ଷତା ହାସଲ ପାଇଁ ବସ୍ତୁବାଦକୁ କେବଳ ଗ୍ରହଣ କରିବା ଯଥେଷ୍ଟ ନୁହେଁ; ଦ୍ୱନ୍ଦ୍ୱମୂଳକ ବସ୍ତୁବାଦର ବ୍ୟାଖ୍ୟାକାର୍ଯ୍ୟରେ ପାରଦର୍ଶୀ ହେବା ପ୍ରୟୋଜନ ।

## ଦ୍ୱିତୀୟ ଅଧ୍ୟାୟ

# ବସ୍ତୁବାଦୀ ଦ୍ୱନ୍ଦ

ମାର୍କ୍ସବାଦୀ ବସ୍ତୁବାଦୀ ଦ୍ୱନ୍ଦ ହେଉଛି, ଗତି ଓ ବିକାଶ ସମ୍ବନ୍ଧରେ ସବୁଠାରୁ ବଳି ନିଗୂଢ଼, ବ୍ୟାପକ ଓ ସଫଳ ତତ୍ତ୍ୱ । ଶତଶତ ବର୍ଷ ଧରି ବିଶ୍ୱଜଗତ ସମ୍ବନ୍ଧରେ ଆମ ବୋଧନର ଏହା ଏକ ସଂକ୍ଷିପ୍ତସାର, ସାମାଜିକ ବ୍ୟାବହାରିକ କର୍ମରୁ ପ୍ରାପ୍ତ ଅପରିସୀମ ତଥ୍ୟସମ୍ପଦର ଏକ ସାମାନ୍ୟକୃତ ମର୍ମ ।

ବସ୍ତୁବାଦୀ ଦ୍ୱନ୍ଦ ଏବଂ ଦାର୍ଶନିକ ବସ୍ତୁବାଦ ପରସ୍ପର ଅବିଚ୍ଛେଦ୍ୟଭାବେ ଜଡ଼ିତ । ଏକା ମାର୍କ୍ସବାଦୀ ଦାର୍ଶନିକ ବ୍ୟବସ୍ଥାର ଦୁଇଟି ଦିଗ ହୋଇଥିବା ଯୋଗୁଁ ସେମାନେ ଅଙ୍ଗାଙ୍ଗୀଭାବେ ସଂଶ୍ଳିଷ୍ଟ ।

ସେମାନଙ୍କ ମଧ୍ୟରେ ପାର୍ଥକ୍ୟ ହେଉଛି, ମାର୍କ୍ସବାଦୀ ଦାର୍ଶନିକ ବସ୍ତୁବାଦ, ମନ ସହିତ ବସ୍ତୁର ସମ୍ପର୍କ, ବସ୍ତୁର ଧାରଣା, ଜଗତର ଭୌତିକ ଏକତ୍ୱର ନୀତି, ବସ୍ତୁର ଅସ୍ତିତ୍ୱର ପ୍ରଣାଳୀର ବିଶ୍ଳେଷଣ ଇତ୍ୟାଦି ଉପରେ ଜୋର ଦେଇଥାଏ । ଅନ୍ୟ ଦିଗରେ ବସ୍ତୁବାଦୀ ଦ୍ୱନ୍ଦ, ବସ୍ତୁସାର ବିଶ୍ୱଜଗତର ବିକାଶ ଓ ଗତିର ନିୟମ, ବିଶ୍ୱଜନୀନ ସମ୍ପର୍କମାନଙ୍କର ତତ୍ତ୍ୱ ଏବଂ ମନୁଷ୍ୟର ଚେତନାରେ ସେମାନଙ୍କର ପ୍ରତିଫଳନକୁ ସର୍ବାଗ୍ରେ ଉପସ୍ଥାପିତ କରିଥାଏ ।

ବାଦାନୁବାଦ ଓ ଆଲୋଚନା ଜରିଆରେ, ବିରୋଧୀପକ୍ଷମାନଙ୍କ ଭିତରେ ଥିବା ମତପାର୍ଥକ୍ୟକୁ ପ୍ରକଟିତ କରି ସତ୍ୟ ପ୍ରତିପାଦନ କରିବାର ଦକ୍ଷତା ହିଁ "ଦ୍ୱନ୍ଦର କଳା" ବୋଲି ଗ୍ରୀକ୍ ଦାର୍ଶନିକମାନେ ବୁଝୁଥିଲେ । ଅଷ୍ଟାଦଶ ଶତାବ୍ଦୀର ଶେଷ ଓ ଊନବିଂଶ ଶତାବ୍ଦୀର ପ୍ରାରମ୍ଭରେ ଜର୍ମାନୀର ଭାବବାଦୀ ଦାର୍ଶନିକମାନେ, ବିଶେଷତଃ ହେଗେଲ, ଦ୍ୱନ୍ଦ ବୋଇଲେ, ସେଇ ଚିନ୍ତା ମଧ୍ୟରେ ପ୍ରକାଶିତ ବିରୋଧିତା ଜରିଆରେ ଚିନ୍ତାର

ବିକାଶକୁ ବୁଝିଥିଲେ । ହେଗେଲ ଦ୍ୱନ୍ଦ୍ୱମୂଳକ ଚିନ୍ତାର ମୌଳିକ ରୂପମାନଙ୍କୁ ସବୃ-ସ୍ତଳକାରେ ବର୍ଣ୍ଣନା କରିଥିଲେ । ତେବେ, ତାଙ୍କର ଦ୍ୱନ୍ଦ୍ୱର ବିକାଶ କରିବାକୁ ଗଲା-ବେଳେ ସେ ଭ୍ରମାତ୍ମକପୂର୍ଣ୍ଣ ଭାବବାଦୀ ଦୃଷ୍ଟିକୋଣରୁ ଅଗ୍ରସର ହୋଇଥିଲେ । ତାଙ୍କର ଦୃଷ୍ଟିକୋଣ ଅନୁସାରେ ଦ୍ୱନ୍ଦ୍ୱର ବିକାଶ କେବଳ ଚିନ୍ତା, ଆତ୍ମା ଏବଂ ଭାବକ୍ଷେତ୍ରରେ ସମ୍ଭବ ହେଉଥିଲା, ପ୍ରକୃତିକ୍ଷେତ୍ରରେ ନୁହେ । ସେଥିଯୋଗୁଁ ମାର୍କ୍ସ କହିଥିଲେ, ହେଗେଲଙ୍କ ଦ୍ୱନ୍ଦ୍ୱ "ତା'ର ମସ୍ତକରେ ଦଣ୍ଡାୟମାନ"। ନିର୍ଭୁଲଭାବେ ବୁଝିବା ସକାଶେ, ଦ୍ୱନ୍ଦ୍ୱକୁ ତା'ର ଗୋଡ଼ରେ ଛିଡ଼ା କରିବାକୁ ହେବ । ବସ୍ତୁବାଦୀ ଦ୍ୱନ୍ଦ୍ୱର ସୃଷ୍ଟି କରି ଏବଂ "ଦ୍ୱନ୍ଦ୍ୱ" ଶବ୍ଦରେ ଏକ ନୂତନ ମର୍ମର ସଞ୍ଚାର କରି, ମାର୍କ୍ସ ଓ ଏଙ୍ଗେଲ୍ସ ତାହା ପୂରଣ କଲେ ।

ମାର୍କ୍ସବାଦର ପ୍ରତିଷ୍ଠାତାମାନେ, ବିଶ୍ୱଜଗତର ଭୌତିକ ଏକତ୍ୱ ନୀତିରୁ ଅଗ୍ରସର ହୋଇ, ବିଶ୍ୱଜନୀନ ସମ୍ପର୍କମାନଙ୍କର ତତ୍ତ୍ୱକୁ ଏବଂ ସମସ୍ତ ବାସ୍ତବତାର ବିକାଶର ଅତି ସାଧାରଣ ନିୟମମାନଙ୍କୁ ଦ୍ୱନ୍ଦ୍ୱ ଅର୍ଥରେ ଚିହ୍ନିତ କଲେ । ତେଣୁ 'ଦ୍ୱନ୍ଦ୍ୱ' ହେଗେଲଙ୍କ ଚିନ୍ତାର ଗତିର ଭାବବାଦୀ ନୀତିରୁ, ସତ୍ତାର ବିକାଶର ସାଧାରଣ ନିୟମ-ମାନଙ୍କ ଭୌତିକ ତତ୍ତ୍ୱରେ ପରିବର୍ତ୍ତିତ ହେଲା । ଅତଏବ ଆମର ଧାରଣା ( ମନୋଗତ ଦ୍ୱନ୍ଦ୍ୱ ) ର ବିକାଶର ଦ୍ୱନ୍ଦ୍ୱ, ବୈଜ୍ଞାନିକ ଚିନ୍ତାରେ ନିଜେ ସତ୍ତା (ବସ୍ତୁଗତ ଦ୍ୱନ୍ଦ୍ୱ) ର ବିକାଶଜନିତ ଦ୍ୱନ୍ଦ୍ୱର ଏକ ପ୍ରତିଫଳନ ବୋଲି ଜଣାପଡ଼ିଲା ।

ବିଜ୍ଞାନର ବିଭିନ୍ନ ବିଭାଗ, ବାସ୍ତବତାର ବିଭିନ୍ନ କ୍ଷେତ୍ରର ଗତି ଓ ନିୟମର ରୂପକୁ, ଅଧ୍ୟୟନ କରିଥାଏ । ଦ୍ୱନ୍ଦ୍ୱ ଏକ ବିଶେଷ ବିଜ୍ଞାନ । ତାହା ସମସ୍ତ ପ୍ରକାର ଗତି, ପରିବର୍ତ୍ତନ ଓ ବିକାଶର ଅତି ସାଧାରଣ ନିୟମମାନଙ୍କ ସମ୍ପର୍କରେ ଆଲୋଚନା କରି-ଥାଏ । ଏହାର ନିୟମମାନଙ୍କର ବିଶ୍ୱଜନୀନତା ହେଲା ଯେ ତାହା ପ୍ରକୃତି ଓ ସମାଜ ମଧ୍ୟରେ କାର୍ଯ୍ୟ କରେ, ଏବଂ ସ୍ୱୟଂ ଚିନ୍ତା ମଧ୍ୟ ତାଙ୍କର ଦ୍ୱାରା ନିୟନ୍ତ୍ରିତ ହୁଏ ।

ମାର୍କ୍ସ ଓ ଏଙ୍ଗେଲ୍ସ ଦ୍ୱନ୍ଦ୍ୱକୁ କେବଳ ଏକ ବୈଜ୍ଞାନିକ ତତ୍ତ୍ୱଭାବେ ଦେଖି ନ ଥିଲେ ; ଅବଧାରଣାର ଏକ ପଦ୍ଧତି ଏବଂ କର୍ମର ଏକ ନିର୍ଦ୍ଦେଶକଭାବେ ମଧ୍ୟ ତାହାକୁ ଦେଖିଥିଲେ । ବିକାଶର ସାଧାରଣ ନିୟମମାନଙ୍କ ଜ୍ଞାନ ଦ୍ୱାରାହିଁ ଅତୀତକୁ ବିଶ୍ଳେଷଣ କରିବା, ବର୍ତ୍ତମାନର ଘଟୁଥିବା ଘଟଣାବଳୀକୁ ନିର୍ଭୁଲଭାବେ ବୁଝିବା ଏବଂ ଭବିଷ୍ୟତକୁ ପୂର୍ବରୁ ଦେଖିପାରିବା ସମ୍ଭବ ହୋଇଥାଏ । ସେହି କାରଣରୁ ଗବେଷଣା ଏବଂ ସେଇ ଗବେଷଣାର ଫଳ ଉପରେ ପ୍ରତିଷ୍ଠିତ ବ୍ୟାବହାରିକ କର୍ମ ଦିଗରେ ତାହା ଏକ ଅଭିଗମନର ପଦ୍ଧତି ।

ଅଧିବିଦ୍ୟା—ଚିନ୍ତା କରିବାର ଏକ ପଦ୍ଧତି ଓ ଏକ ବିଶ୍ୱ-ଦୃଷ୍ଟିଭଙ୍ଗୀ, ଯାହା ଦ୍ୱନ୍ଦ୍ୱର ପରିପନ୍ଥୀ, ଦ୍ୱନ୍ଦ୍ୱର ସମଗ୍ର ଇତିହାସ ହେଲା ସେଇ ଅଧିବିଦ୍ୟା ବିରୁଦ୍ଧରେ ସଂଗ୍ରାମ ଏବଂ ଆଜି ସେ ସଂଗ୍ରାମ ଏବେ ବି ଚାଲିଛି ।

ଏଇ "ଅଧିବିଦ୍ୟା" ଶବ୍ଦ, ପ୍ରାକ୍-ମାର୍କସୀୟ ଓ ଆଧୁନିକ ବୁର୍ଜୁଆ ଦାର୍ଶନିକ ସାହିତ୍ୟରେ ଯେଉଁ ଅର୍ଥରେ ବ୍ୟବହୃତ ହେଉଛି ମାର୍କସ୍‌ବାଦୀ ଦାର୍ଶନିକ ସାହିତ୍ୟରେ ତା'ଠାରୁ ଭିନ୍ନ ଭାବରେ ବ୍ୟବହୃତ ହୁଏ । ପ୍ରାକ୍-ମାର୍କସୀୟ ସାହିତ୍ୟରେ ଏଇ ଗ୍ରୀକ୍ ଶବ୍ଦ, ଏଇ ଉକ୍ତ ଦର୍ଶନର ଏକ ସ୍ୱତନ୍ତ୍ର ଅଂଶକୁ ବୁଝାଉଥିଲା । ସେଇ ଦର୍ଶନରେ, ଦାର୍ଶନିକମାନେ ଏକ ସମ୍ପୂର୍ଣ୍ଣ କାଳ୍ପନିକ ଚିନ୍ତାଦ୍ୱାରା, ପଦାର୍ଥର, ଆରୋପିତ ହେଉଥିବା, ଅପରିବର୍ତ୍ତନୀୟ, ଚିରନ୍ତନ ସାରମର୍ମ ବୁଝିବାକୁ ଚେଷ୍ଟା କରୁଥିଲେ । ସେ ପ୍ରଚେଷ୍ଟା ଏବେ ବି ଚାଲିଛି ।

ମାର୍କସ୍ ଓ ଏଙ୍ଗେଲ୍‌ସ୍ ଦର୍ଶନର ଏକ ଅଂଶ ବା କାଳ୍ପନିକ ଅବଧାରଣାକୁ ବୁଝାଇବାରେ "ଅଧିବିଦ୍ୟା" ଶବ୍ଦକୁ ବ୍ୟବହାର କରିନାହାନ୍ତି । ଅଧିବିଦ୍ୟାର ପ୍ରବର୍ତ୍ତକ-ମାନେ ସେମାନଙ୍କ ଅନୁସନ୍ଧାନ ଓ ଚିନ୍ତାରେ ଦ୍ୱନ୍ଦ୍ୱମୂଳକ ପଦ୍ଧତିର ବିରୋଧୀ ଯେଉଁ ପଦ୍ଧତି ବ୍ୟବହାର କରୁଥିଲେ ତାକୁହିଁ ବୁଝାଇବାକୁ ଯାଇ ମାର୍କସ୍ ଓ ଏଙ୍ଗେଲ୍‌ସ୍ ଅଧିବିଦ୍ୟାର ଅବୈଜ୍ଞାନିକ ଓ କୃତ୍ରିମ ପ୍ରଣାଳୀର ସମାଲୋଚନା କଲାବେଳେ ଉକ୍ତ "ଅଧିବିଦ୍ୟା" ଶବ୍ଦର ପ୍ରୟୋଗ କରିଛନ୍ତି । ମାର୍କସ୍ ଓ ଏଙ୍ଗେଲ୍‌ସ୍ ସେ ଶବ୍ଦକୁ ଯେଉଁ ଅର୍ଥରେ ବ୍ୟବହାର କରିଥିଲେ ତାହା ଏବେ ଅବିକଳ ସେଇ ଅର୍ଥରେ ମାର୍କ୍‌ସୀୟ ଦର୍ଶନରେ ବ୍ୟବହୃତ ହେଉଛି ।

ଅଧିବିଦ୍ୟାର ମୌଳିକ ତ୍ରୁଟି ହେଉଛି, ବିଶ୍ୱଜଗତ ସମ୍ପର୍କରେ ତା'ର ଦୃଷ୍ଟି-ଭଙ୍ଗୀ ସଙ୍କୀର୍ଣ୍ଣ, ଅନମନୀୟ ଏବଂ ଏକଦେଶଦର୍ଶୀ—ଏହାର ପ୍ରବୃତ୍ତି ହେଉଛି, ପ୍ରପଞ୍ଚର ନିର୍ଦ୍ଦିଷ୍ଟ ଗୋଟିଏ ଦିଗକୁ ଅତିରଞ୍ଜିତ କରିବା, ତାକୁ ପରିପୂର୍ଣ୍ଣ ବୋଲି ବିଚାର କରିବା ଏବଂ ଗୁରୁତ୍ୱପୂର୍ଣ୍ଣ ଅନ୍ୟ ଦିଗଗୁଡ଼ିକୁ ଏଡ଼ିଦେଇଯିବା । ଦୃଷ୍ଟାନ୍ତସ୍ୱରୂପ, ଅଧିବିଦ୍ୟାବାଦୀ-ମାନେ ଏକ ପଦାର୍ଥର ଆପେକ୍ଷିକ ସ୍ଥାୟିତ୍ୱ, ତା'ର ନିର୍ଦ୍ଦିଷ୍ଟତା ଦେଖନ୍ତି, କିନ୍ତୁ ତା'ର ପରିବର୍ତ୍ତନ ଓ ବିକାଶ ଦେଖନ୍ତି ନାହିଁ । ଯେଉଁସବୁ ରୂପ ଦ୍ୱାରା ଏକ ନିର୍ଦ୍ଦିଷ୍ଟ ପ୍ରପଞ୍ଚ ଅନ୍ୟମାନଙ୍କଠାରୁ ପୃଥକ୍ ତା ଉପରେ ସେମାନେ ଦୃଷ୍ଟି ନିବଦ୍ଧ କରନ୍ତି ; କିନ୍ତୁ ଅନ୍ୟ ସବୁ ପଦାର୍ଥ ଓ ପ୍ରପଞ୍ଚ ସହିତ ତା'ର ବହୁମୁଖୀ ଯୋଗାଯୋଗ ଓ ଗଭୀର ସମ୍ବନ୍ଧ ଦେଖିବାରେ ସେମାନେ ଅସମର୍ଥ । ବିଜ୍ଞାନ ଯେଉଁସବୁ ପ୍ରଶ୍ନର ସମ୍ମୁଖୀନ ହୁଏ ତା'ର ଶେଷ ଉତ୍ତରହିଁ ସେମାନେ ସ୍ୱୀକାର କରନ୍ତି ; କିନ୍ତୁ ସେମାନେ ବୁଝନ୍ତି ନାହିଁ ଯେ ସ୍ୱୟଂ ବାସ୍ତବତା ସର୍ବଦା ବିକାଶ ଅବସ୍ଥାରେ ରହିଛି, ଆଉ ଏକ ବୈଜ୍ଞାନିକ ସିଦ୍ଧାନ୍ତର ଅର୍ଥ କେବଳ ନିର୍ଦ୍ଦିଷ୍ଟ ପରିସୀମା ଭିତରେ ରହିପାରେ ।

ଏଇ ଅଧିବିଦ୍ୟା ପଦ୍ଧତି, ବୈଜ୍ଞାନିକ ବିକାଶର ନିମ୍ନସ୍ତରରେ ଏବଂ ଦୈନନ୍ଦିନ ବ୍ୟବହାର ଲାଗି ଊଣାଅଧିକ ଯଥେଷ୍ଟ ହୋଇପାରେ, କିନ୍ତୁ ବିକାଶର ଜଟିଳ ପ୍ରକ୍ରିୟାକୁ ବୁଝାଇବା ଦିଗରେ ତାକୁ ବ୍ୟବହାର କରିବାର ଚେଷ୍ଟା କଲେ ତାହା ନିଧାର୍ଯ୍ୟଭାବେ

ଭିଜପଡ଼େ । ପ୍ରକୃତିବିଜ୍ଞାନ ଏବଂ ସାମାଜିକ ରାଜନୈତିକ ଘଟଣାବଳୀ, ପ୍ରତ୍ୟେକ ପଦକ୍ଷେପରେ, ଅଧିବିଦ୍ୟାର ଦାରିଦ୍ର୍ୟକୁ ପ୍ରକଟିତ କରେ ଏବଂ ତାହା ସ୍ଥାନରେ ଦ୍ୱନ୍ଦ୍ୱର ଆବଶ୍ୟକତା ପ୍ରକାଶ କରେ ।

ଏହା ସତ୍ତ୍ୱେ, ଦର୍ଶନରେ ହେଉ ଅଥବା ବିଶେଷ ବିଜ୍ଞାନ ଆଦିରେ ହେଉ, ଅଧିବିଦ୍ୟା ଅଚଳ ହିସାବରେ ଏବେ ସୁଦ୍ଧା ପ୍ରତ୍ୟାଖ୍ୟାତ ହୋଇନାହିଁ ।

ଅଧିବିଦ୍ୟା ବଞ୍ଚିରହିଛି କିପରି ? ଏକ ସମୟ ଥିଲା ଯେତେବେଳେ ବୈଜ୍ଞାନିକ ଚିନ୍ତାଧାରା ମୁଖ୍ୟତଃ ଅଧିବିଦ୍ୟାମୂଳକ ଥିଲା, ଦ୍ୱନ୍ଦ୍ୱମୂଳକ ନୁହେଁ । ଆଧୁନିକ ବିଜ୍ଞାନର ଉଦ୍‌ଭବ ଅବସ୍ଥାରେ, ସପ୍ତଦଶ ଓ ଅଷ୍ଟାଦଶ ଶତାବ୍ଦୀରେ, ବିଜ୍ଞାନର ପଦ୍ଧତି ହିସାବରେ ଚିନ୍ତାର ଅଧିବିଦ୍ୟାମୂଳକ ପ୍ରଣାଳୀ ଶେଷ ରୂପ ଗ୍ରହଣ କଲା ଏବଂ ବ୍ୟାପିଗଲା । ସେ ସମୟରେ ପ୍ରକୃତିବିଜ୍ଞାନ ପ୍ରକୃତିସମ୍ବନ୍ଧୀୟ ବିବରଣୀ ସଂଗ୍ରହରେ ଅଧିକ ବ୍ୟାପୃତ ରହିଥିଲା । ତାହା ବିଭିନ୍ନ ପଦାର୍ଥ ଓ ପ୍ରପଞ୍ଚକୁ ବର୍ଣ୍ଣନା କରୁଥିଲା, ପ୍ରକୃତି ଓ ତା'ର ପ୍ରପଞ୍ଚର ଶ୍ରେଣୀବିଭାଗ କରି ସେମାନଙ୍କୁ ନିର୍ଦ୍ଦିଷ୍ଟ ଶ୍ରେଣୀବଦ୍ଧ କରୁଥିଲା । ଏକ ନିର୍ଦ୍ଦିଷ୍ଟ ପଦାର୍ଥକୁ ବର୍ଣ୍ଣନା କଲାବେଳେ ତାକୁ ଅନ୍ୟାନ୍ୟ ପଦାର୍ଥମାନଙ୍କ ସାମଗ୍ରୀଠାରୁ ବିଚ୍ଛିନ୍ନ କରିବାକୁ ପଡ଼ୁଥିଲା ଏବଂ ପୃଥକ୍ କରି ପରୀକ୍ଷା କରିବାକୁ ହେଉଥିଲା । ଏଇ ଦୃଷ୍ଟିଭଙ୍ଗୀ ଯୋଗୁଁ ପଦାର୍ଥ ଓ ପ୍ରପଞ୍ଚକୁ ବିଚ୍ଛିନ୍ନ ନିଃସଙ୍ଗ ରୂପରେ, ସେମାନଙ୍କର ବିଶ୍ୱଜନୀନସମ୍ପର୍କଠାରୁ ଅଲଗା କରି ଅଧ୍ୟୟନ କରିବା ପ୍ରଥା ଦେଖାଦେଲା । ଏହା ପଦାର୍ଥମାନଙ୍କର ବିକାଶକୁ ତଥା ଅନ୍ୟ ବିଭିନ୍ନ ପଦାର୍ଥଭିତରୁ ସେମାନଙ୍କର ଉତ୍ପତ୍ତିକୁ ଲକ୍ଷ୍ୟ କରିବା ଦିଗରେ ଲୋକଙ୍କ ପାଇଁ ବାଧା ସୃଷ୍ଟି କଲା । ତେଣୁ ଏଇପରି ଏକ ପଦାର୍ଥକୁ ଅନ୍ୟଠାରୁ ବିଚ୍ଛିନ୍ନ ନିଃସଙ୍ଗ ଭାବରେ ଦେଖି ଏବଂ ସେମାନଙ୍କର ବିକାଶକୁ ଏଡ଼ିଦେଇ ଚିନ୍ତାର ଅଧିବିଦ୍ୟା-ମୂଳକ ପ୍ରଣାଳୀ ଜନ୍ମ ଲାଭ କଲା । ଦୀର୍ଘକାଳ ଧରି ଅଧିବିଦ୍ୟା ମନୁଷ୍ୟର ଚେତନା ରାଜ୍ୟରେ ସର୍ବୋଚ୍ଚ ପ୍ରାଧାନ୍ୟ ବିସ୍ତାର କରିଥିଲା ଏବଂ ବୈଜ୍ଞାନିକ ଚିନ୍ତାର ଏକ ପରମ୍ପରାରେ ପରିଣତ ହେଲା ।

ଆମ ସମୟରେ ଅଧିବିଦ୍ୟାମୂଳକ ପଦ୍ଧତି ପ୍ରୟୋଗର ଯଥାର୍ଥତା କୌଣସିମତେ ସାବ୍ୟସ୍ତ ହୋଇପାରିବ ନାହିଁ । ଏହା ଏକ ଅନୁନ୍ନତ ପଦ୍ଧତି, ଏକ ପଶ୍ଚାଦ୍‌ଗାମୀ ବିଶ୍ୱଦୃଷ୍ଟିଭଙ୍ଗୀ । ବୈଜ୍ଞାନିକ ବୋଧନ ଏବଂ ସାମାଜିକ-ରାଜନୈତିକ ବ୍ୟାପାର ଉପରେ ଏହାର ଅତ୍ୟନ୍ତ ପ୍ରତିକୂଳ ପ୍ରଭାବ ରହିଛି । କାରଣ ଏହା ସହଜରେ, ସାଙ୍ଘାତିକ ପ୍ରମାଦ ଓ ଭ୍ରାନ୍ତ ଧାରଣା ଦିଗକୁ ନେଇଯାଏ ।

ବୁର୍ଜୁଆ ଶ୍ରେଣୀର ମତାଦର୍ଶବାଦୀମାନେ ଦୀର୍ଘକାଳ ଧରି ବସ୍ତୁବାଦୀ ଦ୍ୱନ୍ଦ୍ୱ ପ୍ରତି ଶତ୍ରୁତା ଆଚରଣ କରିଆସିଛନ୍ତି । ଅଧିବିଦ୍ୟା ବଞ୍ଚି ରହିବାର ଏହା ହେଲା ଦ୍ୱିତୀୟ କାରଣ ।

ମାର୍କ୍ସ୍ ଲେଖିଥିଲେ, "ଆପଣାର ଯୁକ୍ତିସଙ୍ଗତ ରୂପରେ ଏହା ବୁର୍ଜୁଆସମାଜ ତଥା ତା'ର ଜାତବାଗୀଶ ପ୍ରଫେସରମାନଙ୍କ ପକ୍ଷରେ ଏକ ଜଘନ୍ୟ ଘୃଣା ଓ କଳଙ୍କ ; ଯେହେତୁ, ତାହା ପଦାର୍ଥର ବିଦ୍ୟମାନ ବ୍ୟବସ୍ଥାକୁ ତା'ର ଉପଲବ୍ଧି ଓ ଅନୁମୋଦିତ ସ୍ୱୀକୃତି ମଧ୍ୟରେ ଅନ୍ତର୍ଭୁକ୍ତ କରିଥାଏ, ପୁଣି ଉକ୍ତ ବ୍ୟବସ୍ଥାର ବିଲୁପ୍ତି, ତା'ର ଅନିବାର୍ଯ୍ୟ ଧ୍ୱଂସର ସ୍ୱୀକୃତିକୁ ବି ତହିଁର ଅନ୍ତର୍ଭୁକ୍ତ କରେ । ଯେହେତୁ, ଐତିହାସିକଭାବେ ବିକାଶପ୍ରାପ୍ତ ପ୍ରତ୍ୟେକ ରୂପକୁ ତାହା ତରଳ ଗତିଶୀଳ ବୋଲି ବିଚାର କରେ ଏବଂ ସେଥିଲାଗି ତା'ର କ୍ଷଣିକ ଅସ୍ତିତ୍ୱ ଅପେକ୍ଷା ତା'ର ଅସ୍ଥିର ପ୍ରକୃତି ପ୍ରତି କମ ଦୃଷ୍ଟି ଦିଏ ନାହିଁ ; ଯେହେତୁ, ଏହା ନିଜ ଉପରେ କୌଣସି କଥା ଲଦିଦେବାକୁ ଚାହେନାହିଁ ଏବଂ ସାରଗତଭାବେ ତାହା ଗୁଣଦୋଷ-ବିଚାରକ୍ଷମ ତଥା ବିପ୍ଳବାତ୍ମକ ।"

ଏଥିରେ ବିସ୍ମିତ ହେବାର କିଛି ନାହିଁ ଯେ, ପ୍ରତିକ୍ରିୟାର ରାଜନୈତିକ ଓ ଭାବତତ୍ତ୍ୱର ପ୍ରଭାବରେ, ପୁଞ୍ଜିବାଦୀ ଦେଶର ବହୁ ବୈଜ୍ଞାନିକ ଓ ଦାର୍ଶନିକ, ଏପର୍ଯ୍ୟନ୍ତ ଦ୍ୱନ୍ଦ ପ୍ରତି ଉପେକ୍ଷିତ, ତାହା ବିଷୟରେ କିଛି ଜାଣନ୍ତି ନାହିଁ, ତାକୁ ଅଧ୍ୟୟନ କରନ୍ତି ନାହିଁ, ତାହାକୁ ପକ୍ଷପାତ କୁସଂସ୍କାର ଦୃଷ୍ଟିରୁ ବିଚାର କରନ୍ତି ଏବଂ ଅଧିବିଦ୍ୟାକୁ ସେମାନଙ୍କର ପୃଷ୍ଠ ଗ୍ରହଣ କରିଥାନ୍ତି ।

ମାର୍କ୍ସ୍‌ବାଦୀ ବସ୍ତୁବାଦୀ ଦ୍ୱନ୍ଦ, ଅଧିବିଦ୍ୟା ବିରୁଦ୍ଧରେ, ବିକାଶୋନ୍ମୁଖୀ ବାସ୍ତବତାର ପ୍ରପଞ୍ଚସକଳର ବୈଜ୍ଞାନିକ ପରୀକ୍ଷା ଲାଗି ଏକ ନିର୍ଭରଯୋଗ୍ୟ ହତିଆର ଯୋଗାଇଥାଏ ।

## (୧) ପ୍ରପଞ୍ଚର ବିଶ୍ୱଜନୀନ ସମ୍ବନ୍ଧ

ମନୁଷ୍ୟର ଚତୁର୍ଦ୍ଦିଗରେ ପରିବେଷ୍ଟିତ ଏ ବିଶ୍ୱଜଗତ, ପ୍ରପଞ୍ଚର ବିସ୍ମୟକର ବୈଚିତ୍ର୍ୟର ସମାବେଶ । ଅତି ସରଳ ଦୃଷ୍ଟିରେ ଦେଖିଲେ ଏଇସବୁ ପ୍ରପଞ୍ଚ ମଧ୍ୟରେ ନିର୍ଦ୍ଦିଷ୍ଟ ଏବଂ ଅଳ୍ପ ବହୁତ ସ୍ଥାୟୀ ସମ୍ପର୍କ ଥିବାର ଦେଖାଯାଏ । ଏକ ନିର୍ଦ୍ଦିଷ୍ଟ ସ୍ଥାୟିତ୍ୱ ଏବଂ ନିୟମିତତା ଜଗତରେ ରହିଛି । ଦିନ ପରେ ରାତି ଆସେ, ଶୀତ ପରେ ବସନ୍ତ ପଡ଼େ । ଆମ୍ବ ଗଛରେ ଆମ୍ବ ଫଳେ, ନଡ଼ିଆ ଫଳେ ନାହିଁ । ଏଣ୍ଡିପୋକ ପ୍ରଜାପତିରେ ପରିଣତ ହୁଏ, ତାହା ପୁଣି ଅରେ ପୋକ ହୋଇପାରେ ନାହିଁ ।

ଏପରିକି ଅତି ସୁଦୂର ପ୍ରାଚୀନ କାଳରେ, ଲୋକମାନେ ବୁଝିଥିଲେ ଯେ ଏ ବିଶ୍ୱଜଗତକୁ ପରିବେଷ୍ଟିତ କରି ରହିଥିବା ପଦାର୍ଥ ଓ ପ୍ରପଞ୍ଚସବୁ ପରସ୍ପର ସହିତ ବନ୍ଧା, ସେମାନଙ୍କ ମଧ୍ୟରେ ଏକ ପ୍ରାକୃତିକ ଆବଶ୍ୟକୀୟ ସମ୍ପର୍କ ରହିଛି । ତାହା ମନୁଷ୍ୟର ଇଚ୍ଛା ଓ ଚେତନାର ବହିର୍ଭୁକ୍ତ, ତା'ଠାରୁ ସ୍ୱାଧୀନ ଓ ସ୍ୱତନ୍ତ୍ର ।

ଏହା ଅବଶ୍ୟ ସତ୍ୟ ଯେ, ବହୁକାଳ ଧରି ଏଇ ସମ୍ପର୍କର ଉପଲବ୍ଧି ଅନ୍ଧ ଧାରଣା ଏବଂ ଧର୍ମବିଶ୍ୱାସ ଦ୍ୱାରା ବ୍ୟାହତ ହେଉଥିଲା । ସେ ବିଶ୍ୱାସ ଓ ଧାରଣା ଅନୁସାରେ ଅପ୍ରାକୃତ ଶକ୍ତି ବା ଭଗବାନ, ପଦାର୍ଥମାନଙ୍କର ପ୍ରାକୃତିକ ସଂପର୍କ ଛିନ୍ନ କରିଦେବାରେ ସମର୍ଥ ଏବଂ ତାଙ୍କର ଦ୍ୱାରା ପ୍ରାକୃତିକ ପ୍ରପଞ୍ଚ ସୃଷ୍ଟି ହୋଇପାରେ । ତେବେ ବିଜ୍ଞାନ ଓ ବସ୍ତୁବାଦୀ ଦର୍ଶନ ବରାବର ଦାବୀ କରି ଆସିଛନ୍ତି ଯେ ଅପ୍ରାକୃତ ଓ ଅଲୌକିକ ଘଟଣା ଘଟେ ନାହିଁ କି ତା'ର କୌଣସି ଅସ୍ତିତ୍ୱ ଥାଇ ନ ପାରେ । ବିଶ୍ୱଜଗତରେ ପଦାର୍ଥ ଓ ପ୍ରପଞ୍ଚମାନଙ୍କର କେବଳ ପ୍ରାକୃତିକ ସଂପର୍କ ରହିଛି । କ୍ରମଶଃ ଏଇ ସତ୍ୟ ମନୁଷ୍ୟର ମନୋରାଜ୍ୟରେ ଗଭୀରଭାବେ ପ୍ରବେଶ କଲା ।

ବିଶ୍ୱଜଗତର ଏଇ ବୈଜ୍ଞାନିକ ଓ ଦାର୍ଶନିକ ଅବଧାରଣର ମଧ୍ୟ ଦେଇ ପ୍ରପଞ୍ଚର ବିଶ୍ୱଜନୀନ ସଂପର୍କର ବହୁ ରୂପ ଓ ପ୍ରତିଫଳନ ଆବିଷ୍କୃତ ହେଲା ଏବଂ ତାକୁ ପ୍ରକାଶ କରିବା ଲାଗି ଧାରଣାମାନଙ୍କର ସୃଷ୍ଟି ହେଲା, ଯଥା—ହେତୁବାଦ, ମିଥସ୍କ୍ରିୟା, ଅପରିହାର୍ଯ୍ୟତା, ନିୟମ, ଆକସ୍ମିକତା, ସାରଭୂତ, ରୂପ, ସମ୍ଭାବନା ଓ ବାସ୍ତବତା ଏବଂ ଆକାର ଓ ଆଧେୟ । ବିଶ୍ୱଜନୀନ ସଂପର୍କମାନଙ୍କର ଅପରିହାର୍ଯ୍ୟ ପ୍ରକୃତିର ଧାରଣା ଏବଂ ପ୍ରପଞ୍ଚର ନୈମିତ୍ତିକତା ସହିତ ପ୍ରତ୍ୟକ୍ଷଭାବେ ସଂଶ୍ଳିଷ୍ଟ ବିଷୟ ଅର୍ଥାତ୍ ନିମିତ୍ତବାଦର ନୀତି, ଯାହାକି ବିଶ୍ୱଜଗତର ଯେ କୌଣସି ପ୍ରକୃତ ବୈଜ୍ଞାନିକ ବ୍ୟାଖ୍ୟାର ମୂଳଭିତ୍ତି, ତାହା ମୁଖ୍ୟତଃ ଏଇ ଦ୍ୱିତୀୟ ଅଧ୍ୟାୟରେ ଆଲୋଚିତ ହୋଇଅଛି ।

## କାର୍ଯ୍ୟ କାରଣ ସମ୍ବନ୍ଧ

ସଦାସର୍ବଦା ଏବଂ ସବୁଠାରେ ଦେଖାଯାଉଥିବା ଅତି ପରିଚିତ ସଂପର୍କ ହେଲା, କାରଣ ଓ କାର୍ଯ୍ୟର ସଂପର୍କ ।

ଏକ ପ୍ରପଞ୍ଚର କାରଣ ବୋଇଲେ ସାଧାରଣତଃ ତା'ର ସୃଷ୍ଟିକର୍ତ୍ତାଙ୍କୁ ବୁଝାଯାଏ । ଯେଉଁ ପ୍ରପଞ୍ଚ ସୃଷ୍ଟି ହେଲା ତାକୁ କୁହାଯାଏ କାର୍ଯ୍ୟ, ପ୍ରଭାବ ବା ପରିଣାମ । ଦୃଷ୍ଟାନ୍ତସ୍ୱରୂପ ଏକ ପାଲଟଣା ନୌକାର ଗତିର କାରଣ ହେଲା ବାୟୁ ।

କାରଣ ଓ କାର୍ଯ୍ୟ ମଧ୍ୟରେ ସମୟର ନିର୍ଦ୍ଦିଷ୍ଟ ଅନୁକ୍ରମ ରହିଛି । ପ୍ରଥମେ କାରଣ ଆସେ, ତା ପରେ ଫଳ ବା କାର୍ଯ୍ୟ ତାକୁ ଅନୁସରଣ କରେ । କିନ୍ତୁ "ପରବର୍ତ୍ତୀ"ର ଅର୍ଥ କୌଣସିମତେ "ପରିଣାମ" ନୁହେ । ଦୃଷ୍ଟାନ୍ତସ୍ୱରୂପ, ଦିନ ରାତିକୁ ଅନୁସରଣ କରେ, କିନ୍ତୁ ରାତି ଦିନର କାରଣ ନୁହେ, କି ଦିନ ରାତିର କାରଣ ନୁହେ । ଏହା ଅତି ଜଣାଶୁଣା କଥା ଯେ ଦିନରାତିର ପରିବର୍ତ୍ତନର କାରଣ ହେଲା ନିଜ କକ୍ଷରେ ପୃଥିବୀର ଘୂର୍ଣ୍ଣନ, ଯାହା ଫଳରେ, ଆଗେ ଗୋଟିଏ ପାଖ ଓ ପରେ ଅନ୍ୟ ପାଖଟି ଆଲୋକିତ ହେଉଛି ।

ଫଳ (ପ୍ରଭାବ) ଅପରିହାର୍ଯ୍ୟଭାବେ କାରଣ ସହିତ ସଂଯୁକ୍ତ । ଯଦି ଏକ କାରଣ ରହିଛି ତେବେ ଫଳ (ପ୍ରଭାବ) ତାକୁ ଅନିବାର୍ଯ୍ୟଭାବେ ଅନୁସରଣ କରିବ, ଅବଶ୍ୟ ଯଦି କୌଣସି ପ୍ରତିବନ୍ଧକ ନ ଘଟେ । ଆମେ ଜାଣୁଁ, ଗୁଳି ଥିବା ବନ୍ଧୁକର ଘୋଡ଼ାକୁ ଟିପିଲେ ଗୁଳି ଫୁଟିବ ; କିନ୍ତୁ ଆମେ ଜାଣୁଁ, ସମୟେ ସମୟେ ତାହା ଫୁଟେ ନାହିଁ । ତା ଅର୍ଥ କ'ଣ କାରଣ-ସଂପର୍କର ଅପରିହାର୍ଯ୍ୟ ଚରିତ୍ର ନଷ୍ଟ ହୋଇଗଲା ? ନା, ତା ନୁହେଁ । ତା'ର କେବଳ ମାତ୍ର ଅର୍ଥ ହେଉଛି ଯେ ଅନ୍ୟ କୌଣସି କାରଣ ଗୁଳି ଫୁଟିବାରେ ପ୍ରତିବନ୍ଧକ ସୃଷ୍ଟି କରିଛି । ସମ୍ଭବତଃ ଘୋଡ଼ାର ସ୍ପ୍ରିଙ୍ଗ ଢିଲା ହୋଇ-ଯାଇଛି, ବାରୁଦ କାଦୁଅ ହୋଇଛି ବା ଗୁଳି ଟୋଟାଟା ନଷ୍ଟ ହୋଇଯାଇଛି, ଇତ୍ୟାଦି । ଏଇ ସମସ୍ତ ପରିସ୍ଥିତିକୁ ଅନୁସନ୍ଧାନ କରି ଆମେ ଜାଣିପାରୁଁ କାରଣଟି କ'ଣ, କେଉଁ କାରଣ ଆକାଙ୍‌କ୍ଷିତ ପ୍ରପଞ୍ଚ ଘଟିବାରେ ପ୍ରତିବନ୍ଧକ ସୃଷ୍ଟି କଲା । ଅତଏବ ଏଠାରେ, ବାସ୍ତବରେ କେବଳ ଏକ ଆପାତ କାରଣ ଯୋଗୁଁ କାରଣର ସଂପର୍କରେ ବ୍ୟାଘାତ ଘଟିଲା ।

ଏକ କାରଣ ନିଶ୍ଚିତଭାବେ ଏକ କ୍ରିୟା ସୃଷ୍ଟି କରିବ, ଏଥିଲାଗି କେତେକ ଅବସ୍ଥାର ପ୍ରୟୋଜନ ସବୁବେଳେ ରହିଛି । କୌଣସି ଏକ ନିର୍ଦ୍ଦିଷ୍ଟ ଘଟଣା ଘଟାଇବା ଲାଗି ଯେଉଁସବୁ ପ୍ରପଞ୍ଚ ଅପରିହାର୍ଯ୍ୟ, ସେସବୁ ନିଜେ କିନ୍ତୁ ଉକ୍ତ ଘଟଣା ଘଟାଇ ପାରନ୍ତି ନାହିଁ । ଦୃଷ୍ଟାନ୍ତସ୍ୱରୂପ, ଏକ ଉଡ଼ାଜାହାଜକୁ ଆକାଶକୁ ଉଠାଇବା ପାଇଁ ଅନେକ ପ୍ରକାର ଅବସ୍ଥା ଆବଶ୍ୟକ, ଯଥା—ଉପଯୁକ୍ତ ବିମାନ ପଡ଼ିଆ ବା ଏରୋଡ୍ରୋମ, ପରିଷ୍କାର, କୁହେଳିକାଶୂନ୍ୟ ଆକାଶ, ଅଥବା ଏଇପରି ଅନ୍ୟାନ୍ୟ ପ୍ରତିବନ୍ଧକଶୂନ୍ୟ ଅବସ୍ଥା । କିନ୍ତୁ ଏସବୁ ଅବସ୍ଥା ନିଜେ ନିଜେ ଉଡ଼ାଜାହାଜକୁ ଉଡ଼ାଇବା ଦିଗରେ ଯଥେଷ୍ଟ ନୁହେଁ ; ଉଡ଼ାଜାହାଜର ଉଡ଼ିବାଲାଗି ତା'ର ଇଞ୍ଜିନ କାମ କରିବା ଦରକାର । ତାହା ହେଲା, ନଗଦ ବା ଆଶୁ କାରଣ ।

ଅନେକ ସମୟରେ, ବିଶେଷତଃ ଜଟିଳ ଅବସ୍ଥାରେ, କାରଣକୁ ସୁଯୋଗ ସହିତ ସହଜରେ ମିଶାଇ ଦିଆଯାଇଥାଏ । ଏପରି ବିଭ୍ରାନ୍ତି, ପଦାର୍ଥମାନଙ୍କୁ ଉପର-ଠାଉରିଆଭାବେ ଦେଖିବା ଦୋଷରୁ ଏବଂ ପ୍ରପଞ୍ଚର ପ୍ରକୃତ ସୁଗଭୀର କାରଣମାନଙ୍କୁ ନିରୀକ୍ଷଣ କରିବାରେ ଅସାମର୍ଥ୍ୟ ଯୋଗୁଁ ଘଟିଥାଏ । ସୁଯୋଗ ନିଜେ କୌଣସି ପ୍ରପଞ୍ଚ ସୃଷ୍ଟି କରିପାରେ ନାହିଁ । କିନ୍ତୁ ତାହା ଏକ ଉତ୍ତେଜକ ଭଳି କାର୍ଯ୍ୟ କରେ, ଯାହାକି ପ୍ରକୃତ କାରଣକୁ କାମରେ ଲଗାଇଦିଏ । ଦୃଷ୍ଟାନ୍ତସ୍ୱରୂପ, ସାରାଜେଭୋରେ ଅଷ୍ଟ୍ରିଆର ଯୁବରାଜ ଫ୍ରାନଜ୍-ଫର୍ଡିନାଣ୍ଡଙ୍କ ହତ୍ୟା ପ୍ରଥମ ମହାଯୁଦ୍ଧ ଲାଗି ସୁଯୋଗ ଦେଲା । ଅଥଚ ଆମେ ଜାଣୁଁ ଯେ, ଏ ହତ୍ୟା ହେତୁ ଯୁଦ୍ଧ ହୋଇନାହିଁ ; ସାମ୍ରାଜ୍ୟବାଦୀମାନଙ୍କ ମଧ୍ୟରେ ଅଧିକାଧିକ ତୀବ୍ର ପ୍ରତିଦ୍ୱନ୍ଦିତା ହେଲା ଯୁଦ୍ଧର କାରଣ ।

ବ୍ୟାବହାରିକ ବ୍ୟାପାରରେ ଓ ରାଜନୀତିରେ, ଘଟଣାବଳୀକୁ ନିର୍ଭୁଲଭାବେ ହୃଦୟଙ୍ଗମ କରିବା ପାଇଁ ଏବଂ ଅସାରରୁ ସାରକୁ ବାଛିବା ସକାଶେ ଅବସ୍ଥା ଓ ସୁଯୋଗଠାରୁ ପ୍ରକୃତ କାରଣକୁ ଚିହ୍ନୋଟ କରିବା ଦିଗରେ ସମର୍ଥ ହେବା ବିଶେଷ ପ୍ରୟୋଜନ ।

## ହେତୁବାଦର ଭାବବାଦୀ ଧାରଣା ବିରୋଧରେ

କାରଣଗତ ସମ୍ପର୍କର ଚରିତ୍ର ବିଶ୍ୱଜନୀନ । ତାହା ସରଳ ହେଉ ବା ଜଟିଳ ହେଉ, ବିଜ୍ଞାନ-ଅବଗତ ହେଉ ବା ନ ହେଉ, ପ୍ରକୃତି ଓ ସମାଜର ସମସ୍ତ ପ୍ରପଞ୍ଚ ପ୍ରତି ତାହା ପ୍ରଯୋଜ୍ୟ । କାରଣହୀନ ପ୍ରପଞ୍ଚର ଅସ୍ତିତ୍ୱ ନାହିଁ, କି ରହିପାରେ ନା । ପ୍ରତ୍ୟେକ ପ୍ରପଞ୍ଚର ନିଶ୍ଚିତଭାବେ ଏକ କାରଣ ରହିଛି ।

ଏହି କାରଣଗତ ସମ୍ପର୍କର ନିର୍ଣ୍ଣୟ ହେଲା ବିଜ୍ଞାନର ମୂଳ ଉଦ୍ଦେଶ୍ୟ । ଏକ ପ୍ରପଞ୍ଚକୁ ବୁଝାଇବାକୁ ହେଲେ ତା'ର କାରଣ ଖୋଜିବାକୁ ହେବ । ବିଜ୍ଞାନ ବିଶ୍ୱଜଗତ ବିଷୟରେ ଅନୁସନ୍ଧାନ ଓ ବୋଧନ କରିବାକୁ ଯାଇ ପ୍ରପଞ୍ଚର ମୂଳରେ ପ୍ରବେଶ କରେ— ଘଟଣାବଳୀର ଉପରିଭାଗରୁ ତା'ର ଆଶୁ ପ୍ରତ୍ୟକ୍ଷ କାରଣକୁ ଯାଏ ଏବଂ ସେଠାରୁ ଅଧିକ ଦୂର ତଥା ସାଧାରଣ ଓ ସର୍ବାଧିକ ମୁଖ୍ୟ କାରଣକୁ ଅନୁସନ୍ଧାନ କରେ । ପ୍ରପଞ୍ଚର ପ୍ରକୃତ କାରଣ ସମ୍ବନ୍ଧରେ ମନୁଷ୍ୟର ଅଜ୍ଞତା ଯୋଗୁଁ ସଚେତନଭାବେ ଉକ୍ତ ପ୍ରପଞ୍ଚକୁ ନିର୍ମାଣ କରିବା ବା ବାଧା ଦେବା ମନୁଷ୍ୟ ପକ୍ଷରେ କେବଳ ଅସମ୍ଭବ ହୁଏ ନାହିଁ, ତାହା ଅବୈଜ୍ଞାନିକ, କାମ୍ୟ ଭ୍ରମାତ୍ମକମାକାର ଧାରଣା, ଅନ୍ଧବିଶ୍ୱାସ ଏବଂ ପ୍ରକୃତି ବିଷୟରେ ରହସ୍ୟମୟ ଧର୍ମଭିତ୍ତିକ ବ୍ୟାଖ୍ୟା ଦିଗରେ ମନୁଷ୍ୟକୁ ନେଇଯାଏ ।

ଏହି କାରଣରୁ ହେତୁବାଦର ସମସ୍ୟା, ବସ୍ତୁବାଦ ଆଉ ଭାବବାଦ ମଧ୍ୟରେ ବହୁକାଳ ପର୍ଯ୍ୟନ୍ତ ତିକ୍ତ ବିବାଦର ବିଷୟବସ୍ତୁ ହୋଇଆସିଛି । ଭାବବାଦୀ ଦାର୍ଶନିକମାନେ ଅନେକ ସମୟରେ କାରଣଗତ ସମ୍ପର୍କର ବସ୍ତୁସାର ପ୍ରକୃତିକୁ ପୁରାପୁରି ଅସ୍ୱୀକାର କରିଛନ୍ତି କିମ୍ବା ପ୍ରକୃତି ଭିତରେ ତା'ର ଉତ୍ପତ୍ତିସ୍ଥଳ ନ ଖୋଜି କେଉଁ ଆଧ୍ୟାତ୍ମିକ ଜଗତ ମଧ୍ୟରେ ଖୋଜିବାକୁ ଉଦ୍ୟମ କରିଛନ୍ତି ।

ଅଷ୍ଟାଦଶ ଶତାବ୍ଦୀର ଇଂରେଜ ଦାର୍ଶନିକ ଡେଭିଡ୍ ହ୍ୟୁମ୍‌ଙ୍କ ମତରେ, ଅଭିଜ୍ଞତା ଦ୍ୱାରା ପ୍ରପଞ୍ଚର ଅପରିହାର୍ଯ୍ୟ ସମ୍ପର୍କ ଉଦ୍‌ଘାଟିତ ହୁଏ ନାହିଁ । ସେଥିଯୋଗୁଁ ସେ ଦାବୀ କରିଥିଲେ ଯେ ଏକ ପ୍ରପଞ୍ଚ ଅନ୍ୟ ଏକ ପ୍ରପଞ୍ଚକୁ ଅନୁସରଣ କରେ, ଆମ୍ଭେ କେବଳ ଏହିକଥା କହିପାରୁଁ, କିନ୍ତୁ ଏକ ପ୍ରପଞ୍ଚ ଯେ ଅନ୍ୟ ଏକ ପ୍ରପଞ୍ଚ ସୃଷ୍ଟି କରେ ସେ କଥା କହିବାର ଯଥାର୍ଥତା ନାହିଁ ।

ଯଦି କାରଣଗତ ସମ୍ପର୍କର ବାଧ୍ୟତାମୂଳକ ପ୍ରକୃତିକୁ ସ୍ୱୀକାର କରା ନ ଯାଏ ତେବେ କୌଣସି ବିଜ୍ଞାନ ରହିବ ନାହିଁ, ଏହା ଇମାନୁଏଲ କ୍ୟାଣ୍ଟ ଉପଲବ୍ଧି କରିଥିଲେ । କିନ୍ତୁ ହ୍ୟୁମଙ୍କ ଭଳି ସେ ଧରିନେଇଥିଲେ ଯେ ପର୍ଯ୍ୟବେକ୍ଷଣୀୟ ପ୍ରପଞ୍ଚ ମଧ୍ୟରେ ସେପରି କୌଣସି ସମ୍ପର୍କ ନାହିଁ । କ୍ୟାଣ୍ଟ ମନୁଷ୍ୟର ମନରେ,—ଯେଉଁ ମନର ଅଭୂତ ପରିକଳ୍ପନା ଆମର ପରିଦୃଷ୍ଟ ପ୍ରପଞ୍ଚ ପ୍ରତି ଏକ କାରଣଗତ ସମ୍ପର୍କ ପ୍ରଦାନ କରେ ବୋଲି କୁହାଯାଏ,—ତା'ର ମଧ୍ୟରେ ହେତୁବାଦ ଓ ଅପରିହାର୍ଯ୍ୟତାର ଉତ୍ପତ୍ତି-ସ୍ଥଳ ଖୋଜିବାର ଉଦ୍ୟମ କରିଥିଲେ ।

ବହୁ ଆଧୁନିକ ଭାବବାଦୀ କହିଥାନ୍ତି ଯେ ପ୍ରକୃତିରେ କୌଣସି କାରଣ ନାହିଁ କି କ୍ରିୟା (ପ୍ରଭାବ) ନାହିଁ ଏବଂ ଏଲ୍. ଉଇଟଗେନଷ୍ଟିନ୍‌ଙ୍କ ଉକ୍ତି ଅନୁଯାୟୀ, "କାରଣଗତ ସମ୍ବନ୍ଧରେ ବିଶ୍ୱାସ ହେଉଛି ଅନ୍ଧ ବିଶ୍ୱାସ" ।

ବିଜ୍ଞାନର ସମଗ୍ର ଇତିହାସ ଏହି ଭାବବାଦୀ ଦୃଷ୍ଟିକୋଣକୁ ଚୂଡ଼ାନ୍ତଭାବେ ଖଣ୍ଡନ କରିଛି । ପ୍ରାକୃତିକ ଓ ସାମାଜିକ ବିଜ୍ଞାନର ଅସ୍ତିତ୍ୱ-ହେତୁ ହେଉଛି, ପ୍ରଧାନତଃ, ପ୍ରପଞ୍ଚର କାରଣଗୁଡ଼ିକର ଆବିଷ୍କାର ଓ ତା'ର ଅଧ୍ୟୟନ । କିନ୍ତୁ ମନୁଷ୍ୟର ବ୍ୟାବହାରିକ ଉତ୍ପାଦନର କ୍ରିୟାହିଁ କାରଣଗତ ସମ୍ପର୍କର ବସ୍ତୁସାର ଚରିତ୍ର ବିଷୟରେ ଅତ୍ୟନ୍ତ ବିଶ୍ୱାସଯୋଗ୍ୟ ପ୍ରମାଣ ଯୋଗାଇଥାଏ । ପ୍ରକୃତି ମଧ୍ୟରେ କାରଣସାପେକ୍ଷତା ଆବିଷ୍କାର କରି ଏବଂ ତା'ପରେ ଉକ୍ତ ଜ୍ଞାନକୁ ବ୍ୟାବହାରିକ କାର୍ଯ୍ୟରେ ପ୍ରୟୋଗ କରି, ଲୋକମାନେ ତାଙ୍କର ପ୍ରୟୋଜନୀୟ ପ୍ରଭାବ ଲାଭ କରନ୍ତି, ଇଚ୍ଛାକୃତ ଫଳ ପାଇଥାନ୍ତି । ଏଙ୍ଗେଲ୍‌ସ ଲେଖିଥିଲେ, "ଏଇ ପ୍ରକାରେ, ମନୁଷ୍ୟର କ୍ରିୟା ଦ୍ୱାରା ହେତୁବାଦର ଭାବ ପ୍ରତିଷ୍ଠିତ ହୁଏ ଏବଂ ଏକ ଗତି ଯେ ଅନ୍ୟ ଗତିର କାରଣ, ତାହା ପ୍ରତିଷ୍ଠା ଲାଭ କରେ ।"

ଭାବବାଦ ଓ ଧର୍ମ, ବସ୍ତୁବାଦୀ କାରଣତତ୍ତ୍ୱର ବିରୋଧ କରିବାକୁ ଯାଇ ତା' ବିରୁଦ୍ଧରେ ଚରମଲକ୍ଷ୍ୟ-ନୀତି ବା ତଥାକଥିତ ପରମକାରଣବାଦ ବିଷୟ ଉତ୍ଥାପନ କରନ୍ତି । ଏକ ପ୍ରାକୃତିକ ଘଟଣା କାହିଁକି ସଂଘଟିତ ହେଲା, ଏଇ ପ୍ରଶ୍ନର ଉତ୍ତରରେ ଦିଆଯାଉଥିବା କାରଣୀୟ ଜବାବ ବିରୁଦ୍ଧରେ, ତାହା କେଉଁ ଲକ୍ଷ୍ୟ ଲାଗି ସଂଘଟିତ ହେଉଛି ଏଇ ପ୍ରଶ୍ନ ପରମକାରଣବାଦ ଉତ୍ଥାପନ କରେ । ପରମକାରଣ-ବାଦର ଦୃଷ୍ଟିକୋଣ ଅନୁସାରେ, ଏକ ପଦାର୍ଥର ଅସ୍ତିତ୍ୱ, ପରିକଳ୍ପନା ଓ ବିକାଶ,—ଯେଉଁଥିଲାଗି କି ତାହା ଅଭିପ୍ରେତ, ସେଇ ଉଦ୍ଦେଶ୍ୟ ବା "ଅନ୍ତିମ କାରଣ" ଦ୍ୱାରା ନିର୍ଣ୍ଣିତ ହୋଇଥାଏ । ଧର୍ମ ଓ ଭାବବାଦୀ ଦର୍ଶନ ଲାଗି ପରମକାରଣବାଦ ଏକ ଅତ୍ୟନ୍ତ ସୁବିଧାଜନକ ନୀତି, କାରଣ ତାହା ଅପରିହାର୍ଯ୍ୟଭାବେ ଗୋଟିଏ ସିଦ୍ଧାନ୍ତରେ ପହଞ୍ଚାଇ-ଦିଏ ଯେ—ଏକ ପରମକାରଣ(ଈଶ୍ୱର)ର ଅସ୍ତିତ୍ୱ ରହିଛି ଏବଂ ପ୍ରକୃତି ମଧ୍ୟରେ ସେ ତା'ର ଉଦ୍ଦେଶ୍ୟ ପୂରଣ କରୁଛି ।

ପରମକାରଣବାଦର ସମର୍ଥକମାନେ ତାଙ୍କର ମତର ପୋଷକତା ଲାଗି ସାଧାରଣତଃ, ନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟ ରଖି, ଅଙ୍ଗପ୍ରତ୍ୟଙ୍ଗ ଯେପରି ଗଠିତ ହୋଇଛି (ପଶୁପକ୍ଷୀଙ୍କର ଦେହ-ରକ୍ଷାକାରୀ ରଙ୍ଗ ଇତ୍ୟାଦି) ତାହା ପ୍ରତି ଅଙ୍ଗୁଳି ନିର୍ଦ୍ଦେଶ କରନ୍ତି । ମାର୍କ୍ସବାଦୀ ଦ୍ୱନ୍ଦ୍ୱ ଜୀବନ୍ତ ଅବୟବର ଦୈହିକ ଗଠନ ଓ କ୍ରିୟାର ଅଭିଷ୍ଟ ଉଦ୍ଦେଶ୍ୟକୁ ଅସ୍ୱୀକାର କରେ ନାହିଁ । କିନ୍ତୁ ତାହା ଘୋଷଣା କରେ ଯେ, ତା'ର ଭିତ୍ତି ସେଇ ବସ୍ତୁସାର କାରଣ ମଧ୍ୟରେ ନିହିତ । ଯେଉଁ ଯନ୍ତ୍ରପ୍ରଣାଳୀ ଦ୍ୱାରା ତାହା କାର୍ଯ୍ୟକାରୀ ହେଉଛି, ତାକୁ ଡାରଉଇନ୍ ପ୍ରକାଶ କରିଛନ୍ତି । ବୃକ୍ଷଲତା ଓ ପଶୁପକ୍ଷୀମାନଙ୍କର ପରିବର୍ତ୍ତନ, ସେମାନଙ୍କ ଜୀବନଧାରଣର ପରିବର୍ତ୍ତିନୀୟ ଅବସ୍ଥା ମଧ୍ୟରେ, ସେମାନଙ୍କର ପାରସ୍ପରିକ କ୍ରିୟା ବା ମିଥକ୍ରିୟା ଜରିଆରେ ଉଦ୍ଭବ ହୁଏ । ଯଦି ଏଇ ପରିବର୍ତ୍ତନ ଜୀବ ପ୍ରତି ହିତକାରୀ ବୋଲି ପ୍ରମାଣିତ ହୁଏ, ଅର୍ଥାତ୍ ତାହାକୁ ପରିବେଶର ଉପଯୋଗୀ କରିବା ଦିଗରେ ଏବଂ ବଞ୍ଚିରହିବା କାର୍ଯ୍ୟରେ ସାହାଯ୍ୟ କରେ, ତେବେ ତାହା ପ୍ରାକୃତିକ ନିର୍ବାଚନ ଜରିଆରେ ସଂରକ୍ଷିତ ହୋଇଥାଏ, ପୁରୁଷାନୁକ୍ରମରେ ଗଡ଼ିଗଲେ, ବଂଶଗତ ହୋଇଯାଏ ; ଏବଂ ଜୀବ ଦେହରେ ସେଇ ଅଭିଷ୍ଟ ଉଦ୍ଦେଶ୍ୟମୂଳକ ଗଠନ-ପ୍ରଣାଳୀ ସୃଷ୍ଟି କରେ, ପରିବେଶ ପ୍ରତି ତା'ର ଉପଯୋଗିତା ଆଣିଦିଏ, ଯାହାକି ବହୁ ସମୟରେ ଆମର କଳ୍ପନାକୁ ଅଭିଭୂତ କରିଥାଏ ।

## ମିଥକ୍ରିୟା

ପ୍ରପଞ୍ଚର କାରଣଗତ ସମ୍ପର୍କର ତାତ୍ତ୍ୱିକ ଓ ବ୍ୟାବହାରିକ ତାତ୍ପର୍ଯ୍ୟ ଅତ୍ୟନ୍ତ ମହାନ ଓ ବିଶାଳ । କିନ୍ତୁ ବସ୍ତୁସାର ବିଶ୍ୱଜଗତରେ ତା'ର ସମ୍ପର୍କର ବହୁବିଧତା ଅନ୍ତହୀନ । ଲେନିନ୍ ଲେଖିଥିଲେ "ହେତୁବାଦ······କିନ୍ତୁ ବିଶ୍ୱଜନୀନ ସମ୍ପର୍କର ଏକ କ୍ଷୁଦ୍ର କଣା ମାତ୍ର ଏବଂ କାରଣ ଓ କାର୍ଯ୍ୟର ମାନବିକ ଧାରଣା, ପ୍ରକୃତିର ପ୍ରପଞ୍ଚର ବସ୍ତୁଗତ ସମ୍ପର୍କକୁ ଊଣାଅଧିକେ ସଠିକ ପ୍ରତିଫଳନ କରିବା ଦ୍ୱାରା, ଏବଂ ଏକମାତ୍ର ବିଶ୍ୱପ୍ରକ୍ରିୟାର କୌଣସି ଗୋଟିଏ ଅଂଶକୁ ଅନ୍ୟଠାରୁ କୃତ୍ରିମଭାବେ ବିଚ୍ଛିନ୍ନ କରିଦେଇ କେତେକାଂଶରେ ସରଳ କରିଦିଏ ।"

ଏଥିରୁ ଜଣାଯାଏ ଯେ ପ୍ରକୃତି ଓ ସମାଜରେ ପ୍ରପଞ୍ଚର ପାରସ୍ପରିକ ସମ୍ବନ୍ଧ, କାର୍ଯ୍ୟ ସହିତ କାରଣର ସମ୍ପର୍କ ଦ୍ୱାରା ପ୍ରକଟିତ ସମ୍ବନ୍ଧ ତୁଳନାରେ ଅଧିକ ବ୍ୟାପକ ଓ ଜଟିଳ, ବିଶେଷତଃ କାରଣ ଓ କାର୍ଯ୍ୟର ମିଥକ୍ରିୟାର ବ୍ୟାପକତର ସମ୍ପର୍କର ବଶବର୍ତ୍ତୀ ।

ସମଗ୍ର ପ୍ରକୃତି ଏକ ପରିପୂର୍ଣ୍ଣ ସମଷ୍ଟି ; ତା'ର ପ୍ରତ୍ୟେକ ଅଂଶ କୌଣସି ନା କୌଣସି ପ୍ରକାରେ ପରସ୍ପର ସହିତ ସମ୍ପୃକ୍ତ । ଏଇ ବିଶ୍ୱଜନୀନ ପାରସ୍ପରିକ ସମ୍ବନ୍ଧ ମଧ୍ୟରେ, କୌଣସି ଏକ ପ୍ରପଞ୍ଚ, ଯିଏ କି ନିଜେ କୌଣସି ଏକ କାରଣର କ୍ରିୟା ବା

ପ୍ରଭାବ, ତାହା ମଧ୍ୟ ଅନ୍ୟ ଏକ ସମ୍ବନ୍ଧରେ କାରଣଭାବେ କାର୍ଯ୍ୟ କରିଥାଏ, ଆଉ ନୂତନ ପ୍ରଭାବକୁ ଜନ୍ମ ଦିଏ । ଦୃଷ୍ଟାନ୍ତସ୍ୱରୂପ, ସୂର୍ଯ୍ୟକିରଣର କାର୍ଯ୍ୟ ଯୋଗୁଁ ନଦୀ ଓ ସମୁଦ୍ରର ଜଳ ବାଷ୍ପ ଆକାରରେ ଉପରକୁ ଉଠି ମେଘ ସୃଷ୍ଟି କରେ । ତାହା ପୁଣି ବର୍ଷା ଜାତ କରେ ଯାହାର ଫଳସ୍ୱରୂପ ଭୂମି ସିକ୍ତ ହୁଏ, ନଦୀନର୍ଝରମାନ ଜଳ ପାଆନ୍ତି ।

ଗୋଟିଏ ନିର୍ଦ୍ଦିଷ୍ଟ ପ୍ରକ୍ରିୟା ଭିତରେ କାରଣ ଓ କାର୍ଯ୍ୟ ପରସ୍ପର ଉପରେ ଯେଉଁ ପ୍ରଭାବ ପକାନ୍ତି ତହିଁରେ ମଧ୍ୟ ମିଥକ୍ରିୟା ଦେଖାଯାଏ । ଏହି ଅର୍ଥରେ, ଉଭୟେ ନିଜ ନିଜର ସ୍ଥାନ ପରିବର୍ତ୍ତନ କରନ୍ତି—କାରଣ ହୋଇଯାଏ କାର୍ଯ୍ୟ ଏବଂ କାର୍ଯ୍ୟ ହୁଏ କାରଣ । ସୂର୍ଯ୍ୟ ମଧ୍ୟରେ ନିରବଚ୍ଛିନ୍ନଭାବେ ଚାଲିଥିବା ତାପ-ପାରମାଣବିକ ପ୍ରକ୍ରିୟା ତା'ର ଏକ ଦୃଷ୍ଟାନ୍ତ । କାରଣ ଯେଉଁ ପ୍ରକ୍ରିୟା ଫଳରେ ଉଦଜାନ ଅଣୁସବୁ ହିଲିୟମ୍ ଗ୍ୟାସ୍ ଅଣୁରେ ପରିଣତ ହୁଅନ୍ତି, ତଦ୍ଦ୍ୱାରା (କୋଟି କୋଟି ଡିଗ୍ରୀର) ପ୍ରଚଣ୍ଡ ଉତ୍ତାପ ସୃଷ୍ଟି ହୁଏ, ଯାହାକି ପୁଣି ପର୍ଯ୍ୟାୟକ୍ରମରେ, ଅପରିହାର୍ଯ୍ୟ ଫଳସ୍ୱରୂପ ଉଦଜାନ ଅଣୁରୁ ହିଲିୟମ୍ ଅଣୁର ସମନ୍ୱୟ ସାଧନ କରେ ।

ସାମାଜିକ ଘଟଣାବଳୀ ଅଧ୍ୟୟନ କଲାବେଳେ ମଧ୍ୟ ଆମେ ବହୁ ସମୟରେ ମିଥକ୍ରିୟା ଦେଖିବାକୁ ପାଇଥାଉଁ । ଦୃଷ୍ଟାନ୍ତସ୍ୱରୂପ, ଏକ ପଣ୍ୟଦ୍ରବ୍ୟର ଚାହିଦା ବଢ଼ିଲେ ତାହା ତା'ର ଉତ୍ପାଦନକୁ ପ୍ରୋତ୍ସାହିତ କରେ । ପୁଣି ଅନ୍ୟ ପକ୍ଷରେ, ଏଇ ଉତ୍ପାଦନ ବୃଦ୍ଧି ଚାହିଦାକୁ ବଢ଼ାଏ । କାରଣ ଓ କ୍ରିୟା ସ୍ଥାନ ଅଦଳବଦଳ କରନ୍ତି; ଚାହିଦା ଉତ୍ପାଦନକୁ ପ୍ରଭାବିତ କରେ ଏବଂ ଉତ୍ପାଦନ ଚାହିଦାକୁ ପ୍ରଭାବିତ କରେ ।

ଅତଏବ କାରଣ ଓ କ୍ରିୟାକୁ, ଅଧିବିଦ୍ୟା ଦୃଷ୍ଟି ରଖି ଅଚଳ, ଅସଲଗ୍ନ ଓ ପରମ ବିରୋଧୀଭାବେ ଦେଖିବା ଅନୁଚିତ । ତାହାକୁ ଦ୍ୱନ୍ଦ୍ୱମୂଳକ ଦୃଷ୍ଟିକୋଣରୁ ଏକ ପରସ୍ପର ସଲଗ୍ନ, ପରସ୍ପର ରୂପାନ୍ତରଶୀଳ "ତରଳ" ଧାରଣାଭାବେ ବିଚାର କରିବା ଉଚିତ ।

ତେବେ, ବିଭିନ୍ନ ପ୍ରପଞ୍ଚ ଅଥବା ବିଭିନ୍ନ ଘଟଣାର ମିଥକ୍ରିୟାକୁ ପ୍ରକାଶିତ କରିଦେବାହିଁ ଯଥେଷ୍ଟ ନୁହେ; ସେଇ ମିଥକ୍ରିୟା ମଧ୍ୟରେ ନିର୍ଣ୍ଣାୟକ ଦିଗ କେଉଁଟି ତାହା ଆମକୁ ଆହୁରି ଦେଖିବାକୁ ପଡ଼ିବ । ଯେତେବେଳେ ଆମେ ତାହା ଆବିଷ୍କାର କରିପାରିବା, ସେତିକିବେଳେ ଯାଇଁ ଉକ୍ତ ପ୍ରକ୍ରିୟାର ମୂଳ ଉତ୍ସକୁ ନିର୍ଭୁଲଭାବେ ବୁଝି-ପାରିବା, ତହିଁରେ ସମ୍ପୃକ୍ତ ଥିବା ଶକ୍ତିମାନଙ୍କୁ ଚିହ୍ନିପାରିବା—ମୁଖ୍ୟ ଧାରାକୁ, ବିକାଶର ଦିଗକୁ ଆମେ ଜାଣିପାରିବା ।

ଉପରେ ଚାହିଦା ବୃଦ୍ଧି ଏବଂ ଉତ୍ପାଦନ ବୃଦ୍ଧି ଭିତରେ ମିଥକ୍ରିୟାର ଯେଉଁ ଉଦାହରଣ ଦିଆଗଲା ତାହାର ସଠିକ ଧାରଣା ଦେବା ନିମନ୍ତେ, ଏହି ମିଥକ୍ରିୟାରେ

ଉତ୍ପାଦନ ବୃଦ୍ଧି ଯେ ନିର୍ଣ୍ଣାୟକ ବିଷୟ, ତାହା ଗୁରୁତ୍ୱର ସହିତ ବୁଝାଇବା ଦରକାର ।

## ଅପରିହାର୍ଯ୍ୟତା ଓ ନିୟମ

ସମସ୍ତ ପ୍ରପଞ୍ଚ ଅପରିହାର୍ଯ୍ୟରୂପେ କାରଣବାଦର ଅଧୀନ, ଏହା ସ୍ୱୀକାର କରିବାଦ୍ୱାରା ଆମେ ସ୍ୱୀକାର କରୁଁ ଯେ ବିଶ୍ୱଜଗତ ଅପରିହାର୍ଯ୍ୟତା ଦ୍ୱାରା ପରିଚାଳିତ ହୁଏ । ପ୍ରପଞ୍ଚର ଉତ୍ପତ୍ତି ଓ ବିକାଶ, ଯାହା କୌଣସି ଏକ ପ୍ରକ୍ରିୟାର ମୂଳରେ ରହିଥିବା ସର୍ବମୁଖ୍ୟ ସମ୍ବନ୍ଧମାନଙ୍କରୁ ଜାତ, ତାହାକୁ ଅପରିହାର୍ଯ୍ୟ ବୋଲିଯାଏ । ଏକ ନିର୍ଦ୍ଦିଷ୍ଟ ଅବସ୍ଥାରେ ଯେଉଁ ବିକାଶ କେବେହେଲେ ବ୍ୟର୍ଥ ବା ବିଫଳ ହୁଏ ନାହିଁ ତାହାହିଁ ଅପରିହାର୍ଯ୍ୟ ବିକାଶ । ଉଦାହରଣସ୍ୱରୂପ, ଜୈବ ଜଗତର ଇତିହାସରେ ଅଧିକ ଉପଯୋଗଶୀଳ ଜୀବ କମ୍ ଉପଯୋଗଶୀଳ ଜୀବର ସ୍ଥାନ ଅପରିହାର୍ଯ୍ୟଭାବେ ଗ୍ରହଣ କରେ ।

ସମାଜ ଓ ପ୍ରକୃତିରେ ଅପରିହାର୍ଯ୍ୟତା, ପୂର୍ଣ୍ଣମାତ୍ରାରେ ନିୟମର ମଧ୍ୟ ଦେଇ ପ୍ରକଟିତ ହୁଏ । ପ୍ରପଞ୍ଚର ଉତ୍ପତ୍ତି ଓ ବିକାଶରେ ଅପରିହାର୍ଯ୍ୟତାକୁ ସ୍ୱୀକାର କରିବା ଅର୍ଥ, ସେମାନେ ଯେ କେତେକ ନିୟମାନୁବର୍ତ୍ତିତାର ଅଧୀନ, ତାହା ସ୍ୱୀକାର କରିବା । ଆଉ ସେ ନିୟମାନୁବର୍ତ୍ତିତା ମନୁଷ୍ୟର ଇଚ୍ଛା ଆକାଙ୍କ୍ଷାର ବାହାରେ ସ୍ୱାଧୀନ ସ୍ୱତନ୍ତ୍ରଭାବେ ବିଦ୍ୟମାନ ।

ପ୍ରତ୍ୟେକ ନିୟମ ହେଉଛି ପ୍ରପଞ୍ଚକୁ ପରିଚାଳିତ କରୁଥିବା ଅପରିହାର୍ଯ୍ୟତାର ଏକ ପ୍ରକାଶ ମାତ୍ର । ଦୃଷ୍ଟାନ୍ତସ୍ୱରୂପ, କୌଣସି ଦେହକୁ ଯଦି ପୃଥିବୀର ଉପରକୁ ଫିଙ୍ଗି ଦିଆଯାଏ,—ତେବେ ଯଦି ବିପରୀତ କାର୍ଯ୍ୟ କରୁଥିବା ଅନ୍ୟ କୌଣସି ଶକ୍ତି ତାକୁ ଟାଣି ନ ରଖେ—ତେବେ ପୁଣି ତାହା ପୃଥିବୀପୃଷ୍ଠରେ ଅପରିହାର୍ଯ୍ୟଭାବେ ଖସିପଡ଼ିବ । ଏହି ଉଦାହରଣରୁ ମାଧ୍ୟାକର୍ଷଣର ନିୟମ ବୁଝାଯାଏ ।

ନିୟମ କ'ଣ ? ପ୍ରପଞ୍ଚର, କିମ୍ବା କୌଣସି ଏକ ପ୍ରପଞ୍ଚର ବିଭିନ୍ନ ଦିଗର ଅଗାଧ, ଅତ୍ୟାବଶ୍ୟକ, ସ୍ଥାୟୀ ତଥା ପୁନଃପୁନଃ ସମ୍ପର୍କ ବା ନିର୍ଭରଶୀଳତା ହେଉଛି ନିୟମ । ଆର୍କିମିଡିସଙ୍କ ନିୟମକୁ ଦୃଷ୍ଟାନ୍ତଭାବେ ନିଆଯାଇପାରେ । ଏକ ତରଳ ବା ବାଷ୍ପୀୟ ପଦାର୍ଥ ମଧ୍ୟରେ ଅନ୍ୟ ଏକ ପଦାର୍ଥର ପତନ ଘଟିଲେ ତାହାଦ୍ୱାରା କେତେକ ତରଳ ବା ବାଷ୍ପୀୟ ପଦାର୍ଥ ସ୍ଥାନାନ୍ତରିତ ହୋଇଥାଏ । ଉକ୍ତ ପଦାର୍ଥର ପତନ ଦ୍ୱାରା ଛିଟାଙ୍କି ହୋଇ ପଡ଼ିଥିବା ତରଳ ବା ବାଷ୍ପୀୟ ପଦାର୍ଥର ଓଜନ ଏବଂ ତରଳ ବାଷ୍ପୀୟ ପଦାର୍ଥ ଦ୍ୱାରା ଉକ୍ତ ପଦାର୍ଥ ଉପରେ ପଡ଼ୁଥିବା "ଊର୍ଦ୍ଧ୍ୱମୁଖୀ ଧକ୍କା"ର ପରିମାଣରେ ମଧ୍ୟ ଏକ ସ୍ଥାୟୀ ସମ୍ବନ୍ଧ ରହିଛି । ଆର୍କିମିଡିସ୍ ଏହା ପ୍ରତିପାଦିତ କରିଥିଲେ । ନିୟମମାନ

ସ୍ୱଳ୍ପ-ସାଧାରଣ ହୋଇ ଏକ ସୀମାବଦ୍ଧ କ୍ଷେତ୍ରରେ କାର୍ଯ୍ୟ କରିପାରନ୍ତି ( ଯଥା—ଓହମ୍‌ସ ନିୟମ ), କିମ୍ବା ବହୁ-ସାଧାରଣ ହୋଇ ବ୍ୟାପକ କ୍ଷେତ୍ରରେ କାର୍ଯ୍ୟ କରିପାରନ୍ତି ( ଯଥା—ଶକ୍ତି ସଞ୍ଚୟର ନିୟମ) । କେତେକ ନିୟମ ପ୍ରପଞ୍ଚର ଅତି ସୁନିର୍ଦ୍ଦିଷ୍ଟ ପରିମାଣଗତ ନିର୍ଭରତା ପ୍ରତିଷ୍ଠା କରେ ଏବଂ ତାକୁ ଗାଣିତିକଭାବେ ପ୍ରକାଶ କରାଯାଇପାରେ (ଯଥା—ଯନ୍ତ୍ରବିଦ୍ୟାର ନିୟମ) । ଅନ୍ୟାନ୍ୟ ନିୟମ ଅତି ସୁନିର୍ଦ୍ଦିଷ୍ଟ ଗାଣିତିକ ନିର୍ଦ୍ଧାରଣ ଭଳି କାର୍ଯ୍ୟ କରେ ନାହିଁ ( ଯଥା—ପ୍ରାକୃତିକ ନିର୍ବାଚନର ନିୟମ) । କିନ୍ତୁ ସମସ୍ତ ନିୟମ ପ୍ରପଞ୍ଚର ବସ୍ତୁଗତ ଅପରିହାର୍ଯ୍ୟ ସମ୍ବନ୍ଧ ପ୍ରକାଶ କରିଥାଏ ।

ବସ୍ତୁଗତ ବାସ୍ତବତାହିଁ ନିୟମର ଜ୍ଞାନ, ଘଟଣାବଳୀର କାରଣ ବା ହେତୁ ବୁଝିବାରେ ସହାୟକ ହୁଏ ଏବଂ ସେଥିଯୋଗୁଁ ମନୁଷ୍ୟର ଉଦ୍ଦେଶ୍ୟମୂଳକ କ୍ରିୟା ଲାଗି ତାହା ଏକ ନିର୍ଭରଯୋଗ୍ୟ ଭିତ୍ତି ହୁଏ ।

ତେବେ କୌଣସି ନିୟମ ପ୍ରପଞ୍ଚର ସମସ୍ତ ଦିଗକୁ ଅନ୍ତର୍ଭୁକ୍ତ କରିପାରେ ନା । ପ୍ରପଞ୍ଚର ସବୁଠାରୁ ଅପରିହାର୍ଯ୍ୟ ସ୍ୱରୂପଗୁଡ଼ିକୁ ହିଁ ତାହା ପ୍ରକାଶ କରିଥାଏ ।

କୌଣସି ଏକ ନିର୍ଦ୍ଦିଷ୍ଟ ପ୍ରପଞ୍ଚକୁ ପରିଚାଳିତ କରୁଥିବା ନିୟମର ଆବିଷ୍କାର ନିମନ୍ତେ ସମସ୍ତ ଗୌଣ ପରିସ୍ଥିତିକୁ ବାଦ୍ ଦେଇଦେବା ଦରକାର ଏବଂ ପ୍ରପଞ୍ଚ ମଧ୍ୟରେ ଥିବା ତା'ର ମୁଖ୍ୟ, ନିଷ୍ପତ୍ତିମୂଳକ ସମ୍ବନ୍ଧକୁ ତାହାର ବିରୁଦ୍ଧ ସ୍ୱରୂପରୁ ପୃଥକ୍ କରିଦେବା ଆବଶ୍ୟକ । ବିଶେଷ ପରିକଳ୍ପିତ ନିରୀକ୍ଷା ଦ୍ୱାରା ଏବଂ ପ୍ରପଞ୍ଚର ମୁଖ୍ୟ ଦିଗମାନଙ୍କର ଯୁକ୍ତିଯୁକ୍ତ ପୃଥକୀକରଣ କିମ୍ବା ବିମୂର୍ତ୍ତୀକରଣ ଦ୍ୱାରା ବିଜ୍ଞାନ ଏହା ସମ୍ପାଦନ କରେ । ଉଦାହରଣସ୍ୱରୂପ, ଦେହର ନିର୍ବାଧ ପତନ ନିୟମ ( ଗାଲିଲିଓଙ୍କ ନିୟମ ) ବାୟୁର ବାଧା କଥା ବିଚାରକୁ ନିଏ ନାହିଁ ଏବଂ ସମସ୍ତ ଦେହ ଯେ ସେଇ ଏକା ଗତିବେଗର ସହିତ ପତିତ ହୁଏ ତାହା ପ୍ରତିପାଦିତ କରିଥାଏ । ଅଥଚ ପୃଥିବୀର ବାୟୁମଣ୍ଡଳ ଭିତରେ ଏକ ଦେହ ପଥର ଭଳି ଦ୍ରୁତ ବେଗରେ ପଡ଼ିପାରେ କିମ୍ବା ଶୁଖିଲା ପତ୍ର ଭଳି ଧୀରେ ଧୀରେ ଖସିପାରେ କିମ୍ବା ଶିମିଳି ତୁଳା ଭଳି କିଛି ସମୟ ପାଇଁ ଉପରକୁ ଉଠିଯାଇପାରେ ।

ଏ ସମସ୍ତ କ୍ଷେତ୍ରରେ ଗାଲିଲିଓଙ୍କ ନିୟମ ସୁପ୍ରତିଷ୍ଠ । କିନ୍ତୁ ଏକାକୀ ଏହି ନିୟମ, ଏକ ନିର୍ଦ୍ଦିଷ୍ଟ ଅବସ୍ଥାରେ, କୌଣସି ଦେହର ପତନକୁ ବୁଝାଇବା ଦିଗରେ ଯଥେଷ୍ଟ ନୁହେଁ । ତା'ର ବ୍ୟାଖ୍ୟା ଲାଗି କେବଳ ନିୟମ ସମ୍ବନ୍ଧରେ ଜ୍ଞାନ ଯଥେଷ୍ଟ ନୁହେଁ । ଯେଉଁ ପରିସ୍ଥିତିରେ ଉକ୍ତ ନିୟମ କାର୍ଯ୍ୟ କରେ ସେ ପରିସ୍ଥିତି ସମ୍ବନ୍ଧରେ ବି ଜ୍ଞାନ ଆବଶ୍ୟକ ।

## ଅପରିହାର୍ଯ୍ୟତା ଓ ଆକସ୍ମିକତା

ପ୍ରକୃତି ଓ ସମାଜର ବୈଚିତ୍ର୍ୟମୟ ପ୍ରପଞ୍ଚ ମଧ୍ୟରେ ଏପରି କେତେକ ପ୍ରପଞ୍ଚ ଅଛନ୍ତି ଯେଉଁମାନେ ଏକ ନିର୍ଦ୍ଦିଷ୍ଟ ପଦାର୍ଥ କିମ୍ବା ଏକ ନିର୍ଦ୍ଦିଷ୍ଟ ଘଟଣାବଳୀର ଧାରାର ନିୟମ-ପରିଚାଳିତ ବିକାଶକୁ ଅପରିହାର୍ଯ୍ୟଭାବେ ଅନୁସରଣ କରନ୍ତି ନାହିଁ । ଉକ୍ତ ଘଟଣାବଳୀର ନିଶ୍ଚୟତା ନାହିଁ । ତାହା ଘଟିପାରେ ବା ଘଟି ନ ପାରେ । ତାହା ଗୋଟିଏ ପ୍ରକାରେ ଘଟିପାରେ ବା ଅନ୍ୟ ଗୋଟାଏ ପ୍ରକାରେ ଘଟିପାରେ । ଏସବୁ ହେଲା ଆକସ୍ମିକ ପ୍ରପଞ୍ଚ ।

ଉଦାହରଣସ୍ୱରୂପ, ଯଦି କୁଆପଥର ମାଡ଼ରେ କୃଷକର ଫସଲ ନଷ୍ଟ ହେଲା ତେବେ ତାହା ଆକସ୍ମିକ । ତା'ର ପରିଶ୍ରମ ଓ ଉଦ୍ଭିଦବୃଦ୍ଧିର ନିୟମ ବାହାରରୁ ଏହା ଆକସ୍ମିକ ।

ଆକସ୍ମିକତାର ସମସ୍ୟା, ବିଜ୍ଞାନରେ ବହୁ ବାଦାନୁବାଦର ବିଷୟ ହୋଇ-ଆସିଛି । ପ୍ରକୃତି ଓ ମାନବସମାଜରେ ସମସ୍ତ ପ୍ରପଞ୍ଚର କାରଣ ରହିବା ସୁନିଶ୍ଚିତ, ଏହି ନିରାଟ ନିର୍ଭୁଲ ନୀତି ବହୁ ଦାର୍ଶନିକ ଓ ବୈଜ୍ଞାନିକଙ୍କୁ ଏକ ଭୁଲ ସିଦ୍ଧାନ୍ତକୁ ନେଇ-ଯାଇଛି ଯେ ବିଶ୍ୱଜଗତରେ କେବଳ ଅପରିହାର୍ଯ୍ୟତା ହିଁ ବିଦ୍ୟମାନ ଏବଂ କୌଣସି ଆକସ୍ମିକ ପ୍ରପଞ୍ଚ ନାହିଁ । ସେମାନଙ୍କ ମତରେ ଆକସ୍ମିକତା ହେଉଛି ଏକ ମନୋଗତ ଧାରଣା ; ଆଉ ଯେଉଁ କ୍ରିୟାର କାରଣ ଆମେ ଜାଣୁଁ ନା ସେଇ କ୍ରିୟାକୁ ବୁଝିବାଲାଗି ଆମେ ତାହା ବ୍ୟବହାର କରୁଁ ।

ଏହି ଦୃଷ୍ଟିକୋଣ ପୁରାପୂରି ଭୁଲ, କାରଣ ତାହା ଦୁଇଟି ପୃଥକ ଧାରଣା— ଅପରିହାର୍ଯ୍ୟତା ଓ କାରଣବାଦକୁ ଏକ ଓ ଅଭିନ୍ନ କରିଦିଏ । ଏ କଥା ସତ୍ୟ ଯେ ଜଗତରେ କୌଣସି କାରଣହୀନ ପ୍ରପଞ୍ଚ ନାହିଁ ଏବଂ ଆକସ୍ମିକ ପ୍ରପଞ୍ଚ କାରଣନିର୍ଣ୍ଣିତ । କିନ୍ତୁ ଆକସ୍ମିକ ପ୍ରପଞ୍ଚ ଯେ ଅପରିହାର୍ଯ୍ୟ ଏ କଥା ତଦ୍ୱାରା ପ୍ରତିପାଦିତ ହୁଏ ନାହିଁ । ଉଦାହରଣସ୍ୱରୂପ, ଏକ ରେଲଗାଡ଼ି ଲାଇନରୁ ଖସିପଡ଼ି ଭାଙ୍ଗି ଚୂରମାର୍ ହୋଇଗଲା । ଧରିନିଆଯାଉ, ରେଲଧାରଣା ଢିଲା ହୋଇଯାଇଛି, ରେଲବାଇ ଲୋକେ ତାହା ଦେଖିପାରିନାହାନ୍ତି, ତା'ଫଳରେ ଦୁର୍ଘଟଣା ଘଟିଲା - ଏଇ କାରଣ ଆମେ ଦେଖିଲୁଁ । ତଥାପି ଏ ଦୁର୍ଘଟଣା ଅପରିହାର୍ଯ୍ୟ ନୁହେ, ଏହା ଏକ ଆକସ୍ମିକତା । କାହିଁକି ? କାରଣ ଏହା ଏପରି ଏକ ପରିସ୍ଥିତିପ୍ରସୂତ ଯାହାକି ରେଲ ଯାନବାହନର ଗତିର ନିୟମ ସହିତ ଅପରିହାର୍ଯ୍ୟଭାବେ ସମ୍ବନ୍ଧଶୀଳ ନୁହେ ; ଯେହେତୁ ଏପରି ଦୁର୍ଘଟଣା ନ ଘଟିଲାଭଳି ଅବସ୍ଥା ଯାନ୍ତ୍ରିକ ପ୍ରୟୋଗ ଦ୍ୱାରା ବେଶ୍ ସମ୍ଭବପର ହୋଇପାରେ ।

ବସ୍ତୁଗତ ଆକସ୍ମିକତାର ଅସ୍ୱୀକାର ଏପରି ଏକ ସିଦ୍ଧାନ୍ତକୁ ନେଇଯିବ, ଯାହା ବୈଜ୍ଞାନିକ ଓ ବ୍ୟାବହାରିକ କର୍ମ ଦୃଷ୍ଟିରୁ କ୍ଷତିକାରକ ।

ଯଦି ଜଣେ ପ୍ରତ୍ୟେକ ଜିନିଷକୁ ଆବଶ୍ୟକ ବୋଲି ବିଚାର କରେ ତେବେ ସେ ସାର ଅସାର, ଅପରିହାର୍ଯ୍ୟ ଓ ଆକସ୍ମିକ ମଧ୍ୟରେ ପାର୍ଥକ୍ୟ ବାଛିବାରେ ଅସମର୍ଥ ହେବ । ଏଙ୍ଗେଲ୍‌ସ୍‌ କହିଲାଭଳି ନିଜେ ଅପରିହାର୍ଯ୍ୟତା ବି ଆକସ୍ମିକତା ସ୍ତରରେ ଯାଇ ପହଞ୍ଚିଯିବ ।

ଅପରିହାର୍ଯ୍ୟ ଓ ଆକସ୍ମିକ ଧାରଣା ସମ୍ପର୍କରେ ନିର୍ଭୁଲ ଉପଲବ୍ଧି ଲାଗି କେବଳ ସେମାନଙ୍କ ମଧ୍ୟରେ ବିଭିନ୍ନତା ଦେଖିଲେ ଚଳିବ ନାହିଁ ; ସେମାନଙ୍କର ସଂଯୋଗ ମଧ୍ୟ ଲକ୍ଷ୍ୟ କରିବାକୁ ହେବ । ଅଧିବିଦ୍ୟା ପୁରାପୁରି ଏ ସମ୍ବନ୍ଧ ଉପଲବ୍ଧି କରିବାରେ ଅସମର୍ଥ ; ତାହା ଅପରିହାର୍ଯ୍ୟତା ଓ ଆକସ୍ମିକତାକୁ ପରସ୍ପରବିରୋଧୀ ବୋଲି ବିଚାରେ, ସେମାନଙ୍କ ଭିତରେ କୌଣସି ସାଧାରଣ ସମ୍ବନ୍ଧ ନାହିଁ ବୋଲି ମନେ କରେ । ଅଧିବିଦ୍ୟାର ବିପରୀତଭାବରେ ବସ୍ତୁବାଦୀ ଦ୍ୱନ୍ଦ୍ୱ ପ୍ରମାଣ କରିଛି ଯେ ଆକସ୍ମିକତାକୁ ଚୂଡ଼ାନ୍ତଭାବେ ଅପରିହାର୍ଯ୍ୟତାର ବିରୋଧୀ ବୋଲି ବିଚାରିବା ଏବଂ ଆକସ୍ମିକତାକୁ ଅପରିହାର୍ଯ୍ୟତାରୁ ବିଚ୍ଛିନ୍ନ କରି ପୃଥକଭାବେ ଦେଖିବା ଭୁଲ । ଅଧିବିଦ୍ୟାଭି ଧାରାରେ ଚିନ୍ତା କରୁଥିବା ଲୋକେ ଏହି ଭୁଲ୍ କରିଥାନ୍ତି । ଚୂଡ଼ାନ୍ତ ବା ପରମ ଆକସ୍ମିକତା ବୋଲି କିଛି ନାହିଁ । ଆକସ୍ମିକତା କୌଣସି ଦ୍ରବ୍ୟ ସହିତ ଆପେକ୍ଷିକଭାବେ ରହିଛି ।

ପ୍ରପଞ୍ଚ ଅବିମିଶ୍ରଭାବେ ଅପରିହାର୍ଯ୍ୟ ହେବ ବା ଅବିମିଶ୍ରଭାବେ ଆକସ୍ମିକ ହେବ, ଏପରି ଭାବିବା ଭୁଲ । ପ୍ରତ୍ୟେକ ଆକସ୍ମିକତା ମଧ୍ୟରେ ଅପରିହାର୍ଯ୍ୟତାର ଉପାଦାନ ରହିଛି । ଆଉ ଅପରିହାର୍ଯ୍ୟତା, ଆକସ୍ମିକତାର ଗୋଲକଧନ୍ଦା ମଧ୍ୟ ଦେଇ ଅଗ୍ରସର ହୋଇଥାଏ । ଆକସ୍ମିକତା ଏଭଳି ରୂପରେ ଦେଖାଦିଏ ଯାହା ମଧ୍ୟରେ ଅପରିହାର୍ଯ୍ୟତା ଆତ୍ମପ୍ରକାଶ ଲାଭ କରେ, ପୁଣି ତାହା ଅପରିହାର୍ଯ୍ୟତାର ପରିପୂରକ,—ଏହା ହିଁ ହେଉଛି ଅପରିହାର୍ଯ୍ୟତା ଓ ଆକସ୍ମିକତାର ଦ୍ୱନ୍ଦ୍ୱ । ଅତଏବ ଅପରିହାର୍ଯ୍ୟ ପ୍ରକ୍ରିୟା ଭିତରେ ମଧ୍ୟ ଆକସ୍ମିକତାର ସ୍ଥାନ ରହିଛି ।

ଏଠି ଏକ ଦୃଷ୍ଟାନ୍ତ ଦେଖାଯାଉ । ଶୀତକାଳରେ ଉତ୍ତର ଅକ୍ଷାଂଶ ଅଞ୍ଚଳରେ ପ୍ରବଳ ଶୀତ ହୁଏ ଓ ବରଫ ପଡ଼େ । ଏହା ଅପରିହାର୍ଯ୍ୟ; କିନ୍ତୁ କେଉଁ ନିର୍ଦ୍ଦିଷ୍ଟ ଦିନରେ ତାପମାନର ମାତ୍ରା ଶୂନ୍ୟ ତଳକୁ ଖସିଯିବ, ବରଫପାତ ହେବ, ଆଉ କେତେ ମାତ୍ରାରେ ଥଣ୍ଡା ହେବ ବା କେତେ ପରିମାଣ ବରଫ ପଡ଼ିବ ଇତ୍ୟାଦି—ଏ ସବୁ ଆକସ୍ମିକ । ତଥାପି ଏହିସବୁ ଆକସ୍ମିକତା ମଧ୍ୟରେ ଅପରିହାର୍ଯ୍ୟତା ରହିଛି । କାରଣ ଶୀତ ଓ ବରଫ ଉଭୟ ଉକ୍ତ ଅଞ୍ଚଳରେ ଶୀତକାଳର ଅପରିହାର୍ଯ୍ୟ ସଙ୍କେତ ।

ପୂର୍ବର ଲାଇନଚ୍ୟୁତ ରେଲଗାଡ଼ି ଦୃଷ୍ଟାନ୍ତରେ ଦୁର୍ଘଟଣା ଏକ ଆକସ୍ମିକତା । କିନ୍ତୁ ରେଲବାଇ ସଂଗଠନ ଯଦି ଖରାପ ହୁଏ, ସେଥିରେ ଶୃଙ୍ଖଳା ନ ରହେ,

ରେଲବାଇ କର୍ମଚାରୀମାନେ ଅନାଡ଼ି ଅଦକ୍ଷ ହୋଇଥାନ୍ତି, ତାହା ହେଲେ ଦୁର୍ଘଟଣା ଏକ ବିରଳ ଆକସ୍ମିକତା ପରିବର୍ତ୍ତେ, ରେଲବାଇର ଅସନ୍ତୋଷଜନକ କାର୍ଯ୍ୟ ହେତୁ, ଏକ ଅପରିହାର୍ଯ୍ୟ ପ୍ରତିଫଳରେ ପରିଣତ ହେବ । ଅବଶ୍ୟ ସେ କ୍ଷେତ୍ରରେ ମଧ୍ୟ ଦୁର୍ଘଟଣାର ନିର୍ଦ୍ଦିଷ୍ଟ ସ୍ଥାନ, ସମୟ ଓ ପରିସ୍ଥିତି ଆଦି ଗୁଣାଧିକେ ଆକସ୍ମିକ ହୋଇ ରହିବ ।

ଆଉ ମଧ୍ୟ, ଆକସ୍ମିକତା, ଅପରିହାର୍ଯ୍ୟର ପ୍ରକ୍ରିୟାକୁ ପ୍ରଖର ବା ପଶ୍ଚାତ୍‌ଗାମୀ କରିବା ଦ୍ୱାରା ତା'ର ବିକାଶକୁ ପ୍ରଭାବିତ କରିପାରେ । କେବେ କେବେ ଅପରିହାର୍ଯ୍ୟ ପ୍ରକ୍ରିୟା ମଧ୍ୟରେ ଆକସ୍ମିକତା ଏତେ ବହୁଳଭାବେ ପ୍ରବେଶ କରେ ଯେ ତାହା ଅପରିହାର୍ଯ୍ୟ ହୋଇଉଠେ । ତେଣୁ ଡାରଉଇନଙ୍କ ତତ୍ତ୍ୱ ଅନୁଯାୟୀ ଜୀବ ଅଙ୍ଗର ଅତି ସାମାନ୍ୟ ଆକସ୍ମିକ ପରିବର୍ତ୍ତନମାନ, ଯାହାସବୁ ସେମାନଙ୍କ ପ୍ରତି ହିତକାରକ, ସେ-ସବୁ ବିବର୍ତ୍ତନର ପ୍ରକ୍ରିୟା ଦ୍ୱାରା ପୁରୁଷାନୁକ୍ରମେ ପ୍ରତିଷ୍ଠିତ ହେଲା ଓ ଶକ୍ତିଶାଳୀ ହୋଇ-ଉଠିଲା ; ଫଳରେ ପ୍ରାଣୀମାନଙ୍କ ମଧ୍ୟରେ ପରିବର୍ତ୍ତନ ଆଣିଦେଲା । ଅତଏବ ଆକସ୍ମିକ ପାର୍ଥକ୍ୟମାନ ଏକ ନୂତନ ପ୍ରାଣୀ-ଜାତିର ଏକ ନୂତନ ଅପରିହାର୍ଯ୍ୟ ବୈଶିଷ୍ଟ୍ୟ ହୋଇ-ଉଠିଲା ।

ଉପରୋକ୍ତ ଉଦାହରଣରୁ ପ୍ରମାଣିତ ହୁଏ ଯେ ଅପରିହାର୍ଯ୍ୟତା ଓ ଆକସ୍ମିକତା ପରସ୍ପରଠାରୁ ଚୂଡ଼ାନ୍ତଭାବେ ପୃଥକ ନୁହନ୍ତି । ସେମାନେ ପରସ୍ପର ଉପରେ କ୍ରିୟାଶୀଳ, ମିଥଃକ୍ରିୟାରତ; ବିକାଶର ପ୍ରକ୍ରିୟା ମଧ୍ୟରେ ଏକ ଆରେକ ମଧ୍ୟକୁ ଗତି କରେ ।

ଅପରିହାର୍ଯ୍ୟତା ଓ ଆକସ୍ମିକତା ଭିତରର ଏଇ ସମ୍ବନ୍ଧରୁ ଜଣାଯାଏ ଯେ ଆକସ୍ମିକ ପ୍ରପଞ୍ଚ ମଧ୍ୟ କେତେକ ନିୟମ ଦ୍ୱାରା ନିୟନ୍ତ୍ରିତ । ତାହାକୁ ଅଧ୍ୟୟନ କରାଯାଇପାରେ ଓ ବୁଝାଯାଇପାରେ ।

ଦୃଷ୍ଟାନ୍ତସ୍ୱରୂପ, ଆମେରିକାରେ ନିଗ୍ରୋ ଲୋକଙ୍କ ତୁଳନାରେ ଗୋରା ଲୋକଙ୍କର ହାରାହାରି ପରମାୟୁ ଯେ ଅଧିକ ତାହା ତଥ୍ୟଦ୍ୱାରା ପ୍ରମାଣିତ ହୋଇଛି । ଏଇ ନିୟମିତତାର ଅର୍ଥ ନୁହେ ଯେ ପ୍ରତ୍ୟେକ ଗୋରା ଲୋକ ପ୍ରତ୍ୟେକ ନିଗ୍ରୋ ଲୋକଠାରୁ ଅଧିକକାଳ ବଞ୍ଚୁଛି । କେତେକ ଗୋରା ଲୋକ ଅଳ୍ପ ବୟସରେ ମରୁଛନ୍ତି, ଆଉ କେତେକ ନିଗ୍ରୋ ଲୋକ ପାଚିଲା ବୁଢ଼ା ହେବାଯାଏ ବଞ୍ଚିଥାନ୍ତି । କିନ୍ତୁ ମୋଟ ଉପରେ ଉପରୋକ୍ତ ନିୟମିତତା ହାରାହାରିଭାବେ ନିର୍ଭୁଲ ; ତାହା ଆମେରିକାରେ ନିଗ୍ରୋମାନଙ୍କର ପ୍ରତିକୂଳ ଅବସ୍ଥାକୁ ପ୍ରତିଫଳିତ କରେ, ଯଥା—ବର୍ଣ୍ଣବୈଷମ୍ୟ, ଅନୁନ୍ନତ ଚଳାଚଳ ଅବସ୍ଥା, ଊଣା ମଜୁରି ଇତ୍ୟାଦି ।

ଆକସ୍ମିକ ପ୍ରପଞ୍ଚକୁ ନିୟନ୍ତ୍ରିତ କରୁଥିବା ନିୟମିତତାସବୁ ବହୁ ବୈଜ୍ଞାନିକ ତତ୍ତ୍ୱରେ ସାମାନ୍ୟୀକୃତ ହୋଇଛି । ସମ୍ଭାବିତ-ଗାଣିତିକ ତତ୍ତ୍ୱରେ ତାହା ବିଶେଷଭାବେ ଦେଖାଯାଏ ।

## ନିମିତ୍ତବାଦ ଓ ଆଧୁନିକ ବିଜ୍ଞାନ

ବସ୍ତୁବାଦୀମାନେ ସଦାସର୍ବଦା ନିମିତ୍ତବାଦ ନୀତିର ଦୃଢ଼ ସମର୍ଥକ । ନିମିତ୍ତବାଦ, ବିଶ୍ୱଜଗତ ସମ୍ବନ୍ଧର ବସ୍ତୁଗତ ଚରିତ୍ରର ସ୍ୱୀକୃତି, ପ୍ରପଞ୍ଚର କାରଣ-ସାପେକ୍ଷ ନିର୍ଣ୍ଣୟ ତଥା ପ୍ରକୃତି ଓ ସମାଜ ମଧ୍ୟରେ ଅପରିହାର୍ଯ୍ୟତା ଓ ନିୟମିତତାର ବିଧାନକୁ ନେଇ ଗଠିତ ।

ନିମିତ୍ତବାଦ ହେଉଛି ସମସ୍ତ ପ୍ରକାର ନିର୍ମଳ ବୈଜ୍ଞାନିକ ଚିନ୍ତାର ମୌଳିକ ନୀତି ; କାରଣ, କେବଳ ପ୍ରପଞ୍ଚର ହେତୁ ଜାଣିବାଦ୍ୱାରା ତା'ର ଉତ୍ପତ୍ତିକୁ ବୈଜ୍ଞାନିକ-ଭାବେ ବ୍ୟାଖ୍ୟା କରାଯାଇପାରେ ଏବଂ କେବଳ ପ୍ରପଞ୍ଚକୁ ନିର୍ଣ୍ଣିତ କରୁଥିବା ନିୟମକୁ ଜାଣିବାଦ୍ୱାରା ତା'ର ଉତ୍ତରୋତ୍ତର ବିକାଶକୁ ଅନୁମାନ କରାଯାଇପାରେ । ତେବେ ବିଜ୍ଞାନର ବିକାଶ ସଙ୍ଗେ ସଙ୍ଗେ ନିମିତ୍ତବାଦର ଧାରଣାର ପରିବର୍ତ୍ତନ ଘଟିଛି । ଅଷ୍ଟାଦଶ ଓ ଊନବିଂଶ ଶତାବ୍ଦୀରେ ପ୍ରକୃତିବିଜ୍ଞାନ ଯେତେବେଳେ "ମହାଜଗତ"ର—ଅର୍ଥାତ୍, ଅପେକ୍ଷାକୃତ ବିଶାଳ ଦେହ ଏବଂ ତା'ର ଅଂଶବିଶେଷର—ଅଧ୍ୟୟନରେ ନିଜକୁ ଆବଦ୍ଧ ରଖିଥିଲା, ଆଉ ପ୍ରଧାନତଃ ନିଉଟନଙ୍କ ଯନ୍ତ୍ରବିଦ୍ୟା ଉପରେ ପ୍ରତିଷ୍ଠିତ ଥିଲା, ସେ ସମୟରେ ତାହା ଯାନ୍ତ୍ରିକ ନିମିତ୍ତବାଦ ଦ୍ୱାରା ନିୟନ୍ତ୍ରିତ ହେଉଥିଲା । ପ୍ରତ୍ୟେକ କାରଣକୁ ତାହା ଯାନ୍ତ୍ରିକଭାବେ ଦେଖୁଥିଲା—ଏହାହିଁ ତା'ର ବିଶିଷ୍ଟ ରୂପ ଏବଂ ତ୍ରୁଟି ମଧ୍ୟ । ବିଲିଆର୍ଡ଼ ବଲ୍ ବାଡ଼ିମୁଣ୍ଡରେ ପିଟି ହୋଇ ଯେଉଁ ଗତି ଲାଭ କଲା, ତାହା ହେଲା କାରଣସାପେକ୍ଷ ଯାନ୍ତ୍ରିକ ସମ୍ବନ୍ଧ । ବିଲିଆର୍ଡ଼ ବଲ୍ ଯେଉଁ ଗତିବେଗ ଲାଭ କରୁଛି ତାହା ତାକୁ ବାଡ଼ି ଦେଇଥିବା ଗତିବେଗ ସହିତ ସମାନ । କାରଣ ମଧ୍ୟରେ ଯାହା ନିହିତ, ତା'ର ବହିର୍ଭୂତ କୌଣସି ଜିନିଷ କ୍ରିୟା ବା ପ୍ରଭାବରେ ସଂଘଟିତ ହୋଇ ନ ପାରେ,—ଏ ପ୍ରକାର ଧାରଣା ଯାନ୍ତ୍ରିକ ନିମିତ୍ତବାଦର ବୈଶିଷ୍ଟ୍ୟ । ତେଣୁ, ସେଇଥିରୁ ଆସିଯାଉଛି, ଯଦି ଆମେ କୌଣସି ସମୟରେ ଏକ ଦେହର କିମ୍ବା ଦେହମଣ୍ଡଳର ଅବସ୍ଥା ଜାଣିପାରୁଁ ତେବେ ଆମେ ଶାସ୍ତ୍ରୀୟ ଯନ୍ତ୍ରବିଦ୍ୟାର ନିୟମ (ଅର୍ଥାତ୍ ନିଉଟନଙ୍କ ଯନ୍ତ୍ରବିଦ୍ୟା) ଦ୍ୱାରା ଆଉ ଯେକୌଣସି ସମୟରେ ଉକ୍ତ ଦେହ ବା ଦେହମଣ୍ଡଳର ଅବସ୍ଥା ଅନୁମାନ କରିପାରିବା, ସେ ବିଷୟରେ ଭବିଷ୍ୟତ ବାଣୀ କରିଦେଇପାରିବା ।

ଆକାଶସ୍ଥିତ ଗ୍ରହନକ୍ଷତ୍ର, ଆଉ ମଧ୍ୟ ପରିଦୃଷ୍ଟ ପାର୍ଥିବ ଦେହ ଓ ସେମାନଙ୍କ ଅଙ୍ଗମାନଙ୍କର ଗତି ଓ ଯାନ୍ତ୍ରିକ ମିଥିକ୍ରିୟାର ଅଧ୍ୟୟନ ମଧ୍ୟରେ ଏଇ ଦୃଷ୍ଟିକୋଣ ଯୁକ୍ତିଯୁକ୍ତ ବୋଲି ପ୍ରମାଣିତ ହୋଇଛି, ବ୍ୟାବହାରିକ କର୍ମ ଦ୍ୱାରା ସମର୍ଥିତ ହୋଇଛି । ଆଉ ସେଇ ଯାନ୍ତ୍ରିକ ନିମିତ୍ତବାଦର ପଦ୍ଧତି ପ୍ରୟୋଗ କରି ବୈଜ୍ଞାନିକମାନେ ସୂର୍ଯ୍ୟ ଓ ଗ୍ରହମାନଙ୍କ ଦୃଷ୍ଟିଗୋଚର ଅବସ୍ଥିତି ସମ୍ପର୍କରେ ଭବିଷ୍ୟତ ବାଣୀ କରିପାରୁଥିଲେ,

ମେସିନ ଯନ୍ତ୍ର ନିର୍ମାଣ ଓ ଇଞ୍ଜିନିଅରିଂ କାରଖାନାସଂକ୍ରାନ୍ତ ଗଣନା ମଧ୍ୟ କରିପାରୁଥିଲେ ।

ଏସବୁ ସତ୍ତ୍ୱେ ଅଧିକ ଜଟିଳ ପ୍ରପଞ୍ଚ ଅଧ୍ୟୟନ କରିବାରେ ଯାନ୍ତ୍ରିକ ନିମିତ୍ତବାଦର ନୀତି ପ୍ରୟୋଗର ସମସ୍ତ ଉଦ୍ୟମ ବିଫଳ ହୋଇଛି । ଜୀବତତ୍ତ୍ୱ ପ୍ରପଞ୍ଚ, ଶରୀରଗଠନ-ସଂକ୍ରାନ୍ତ ଆଉ ମାନସିକ ପ୍ରକ୍ରିୟା ଏବଂ ଜନସାଧାରଣଙ୍କ ସାମାଜିକ କାର୍ଯ୍ୟକ୍ରମକୁ କେବଳ ମାତ୍ର ଯାନ୍ତ୍ରିକ ନିମିତ୍ତବାଦ ଦ୍ୱାରା ବ୍ୟାଖ୍ୟା କରାଯାଇ ନ ପାରେ । ଏସବୁ କ୍ଷେତ୍ରରେ ବିଜ୍ଞାନ, ସରଳ ଯାନ୍ତ୍ରିକ ଗତି ପରିବର୍ତ୍ତେ ଜଟିଳ ବିକାଶର ସମ୍ମୁଖୀନ ହେଉଛି । କାରଣ କ୍ରିୟା ବା ପ୍ରଭାବ ସମାନ ହେବା ପରିବର୍ତ୍ତେ, ପ୍ରଭାବରେ ଏକ ନୂତନ ଉପାଦାନ ଦେଖାଯାଏ ଯାହାକି କାରଣ ମଧ୍ୟରେ ନ ଥାଏ ।

ତେଣୁ ସ୍ୱୀକାର କରିବାକୁ ପଡ଼ିବ ଯେ, କାରଣବାଦର ଯାନ୍ତ୍ରିକ ରୀତି ବ୍ୟତୀତ ଅନ୍ୟାନ୍ୟ ପ୍ରକାର କାରଣସାପେକ୍ଷ ସମ୍ବନ୍ଧ ରହିଛି ।

ନିମିତ୍ତବାଦର ଅତି ଗୁରୁତର ଦ୍ୱିତୀୟ ତ୍ରୁଟି ହେଲା, ତାହା ଆକସ୍ମିକ ପ୍ରପଞ୍ଚର ବାସ୍ତବତାକୁ ସ୍ୱୀକାର କରେ ନାହିଁ । ତା'ର ସମର୍ଥକମାନେ ଆକସ୍ମିକତାକୁ କାରଣ-ଶୂନ୍ୟତା ସହିତ ସମାନ ଦୃଷ୍ଟିରେ ପ୍ରତ୍ୟାଖ୍ୟାନ କରିଆନ୍ତି ।

ଯେତେବେଳେ ବିଜ୍ଞାନ ଓ ପ୍ରୟୋଗବିଦ୍ୟାର ଅଗ୍ରଗତି ଘଟିଲା, ଯାହା ଫଳରେ କ୍ଷୁଦ୍ରତମ ସୃଷ୍ଟି ଓ ତଥାକଥିତ ମୌଳିକ କଣାମାନଙ୍କର—ଅର୍ଥାତ୍ ଆଧୁନିକ ବିଜ୍ଞାନ ଅବଗତ ଥିବା ଅତ୍ୟନ୍ତ ସରଳ, ଅତ୍ୟନ୍ତ କ୍ଷୁଦ୍ର (ଇଲେକ୍‌ଟ୍ରୋନ, ପୋଜିଟ୍ରନ, ମେସନ ପ୍ରଭୃତି) କଣାମାନଙ୍କର ଅବଧାରଣ ଆରମ୍ଭ ହେଲା, ସେତେବେଳେ ଯାନ୍ତ୍ରିକ ନିମିତ୍ତବାଦର ଦାରିଦ୍ର୍ୟ ବିଶେଷଭାବେ ଜଣାପଡ଼ିଲା ।

ମହାଜଗତ ମଧ୍ୟରେ ଏକ ଗତିଶୀଳ ଦେହର ସ୍ଥିତି, ଏକ ନିର୍ଦ୍ଦିଷ୍ଟ ମୁହୂର୍ତ୍ତରେ ଶୂନ୍ୟଦେଶରେ ତା'ର (ସମନ୍ୱୟ) ଅବସ୍ଥିତି ଏବଂ ତା'ର ବେଗ ଦ୍ୱାରା ନିର୍ଣ୍ଣିତ ହୋଇଥାଏ । ଏଇସବୁ ବିଶାଳତାକୁ ନିର୍ଭୁଲଭାବେ ନିର୍ଣ୍ଣୟ କରାଯାଇପାରେ ଏବଂ ଥରେ ତାହା ଜାଣିପାରିଲେ ଆମେ ଶାସ୍ତ୍ରୀୟ ଯନ୍ତ୍ରବିଦ୍ୟାର ନିୟମମାନଙ୍କ ଭିତ୍ତିରେ ଭବିଷ୍ୟତରେ ଯେକୌଣସି ସମୟରେ ନିଶ୍ଚିତଭାବେ ସେମାନଙ୍କର ମୂଲ୍ୟ ନିର୍ଦ୍ଧାରଣ କରିପାରୁଁ ।

କ୍ଷୁଦ୍ରତମ ସୃଷ୍ଟି ମଧ୍ୟରେ ପ୍ରପଞ୍ଚର ସ୍ୱତନ୍ତ୍ର ଚରିତ୍ର ଯୋଗୁଁ ତା'ର କଣାର ଗତି ଅତ୍ୟଧିକ ଜଟିଳ । ଏକ କ୍ଷୁଦ୍ରତମ କଣାର ବେଗ ଅଥବା ତା'ର ଅବସ୍ଥାନକୁ ଏକ ନିର୍ଦ୍ଦିଷ୍ଟ ମୁହୂର୍ତ୍ତରେ ନିର୍ଭୁଲଭାବେ ଯେକୌଣସି ଇଚ୍ଛାକୃତ ମାତ୍ରାରେ ଜଣେ ନିର୍ଣ୍ଣୟ କରିଦେଇପାରେ । କିନ୍ତୁ ଶାସ୍ତ୍ରୀୟ ଯନ୍ତ୍ରବିଦ୍ୟାର ନିୟମ କ୍ଷୁଦ୍ରତମ ସୃଷ୍ଟି ପ୍ରତି ପ୍ରୟୋଗ କରାଗଲେ ତା'ର ଦାରିଦ୍ର୍ୟ ପ୍ରକଟିତ ହୁଏ, କାରଣ ତାହାଦ୍ୱାରା ଆମେ

କ୍ଷୁଦ୍ରତମ କଣାର ସଠିକ ବେଗ ଓ ଅବସ୍ଥା ପୂର୍ବରୁ ନିର୍ଭୁଲଭାବେ ଗଣନା କରିପାରୁନାହିଁ । ତେବେ କ୍ୱାଣ୍ଟମ ଯନ୍ତ୍ରବିଦ୍ୟା ( ଅର୍ଥାତ୍ କ୍ଷୁଦ୍ରତମ ସୃଷ୍ଟି ମଧ୍ୟରେ ବେଗ ପ୍ରତି ପ୍ରଯୋଜ୍ୟ ଯନ୍ତ୍ରବିଦ୍ୟା) ର ନିୟମ ଜାଣିବା ଦ୍ୱାରା ଯେକୌଣସି ନିର୍ଦ୍ଦିଷ୍ଟ ଭବିଷ୍ୟତରେ ଜଣେ ସେମାନଙ୍କର ସମ୍ଭାବ୍ୟ ମୂଲ୍ୟ ନିର୍ଦ୍ଧାରଣ କରିପାରେ ।

ଅତି କ୍ଷୁଦ୍ରତମ ସୃଷ୍ଟି ମଧ୍ୟରେ ଆକସ୍ମିକତା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥାଏ । ତା ମଧ୍ୟରେ ଘଟୁଥିବା ପ୍ରକ୍ରିୟାକୁ ବୁଝିବା ଲାଗି କ୍ୱାଣ୍ଟମ୍ ଯନ୍ତ୍ରବିଦ୍ୟା ପକ୍ଷରେ ଅପରିହାର୍ଯ୍ୟତା ଓ ଆକସ୍ମିକତା ଉଭୟଙ୍କୁ ବିଚାରକୁ ନେବାକୁ ହେବ ।

କ୍ଷୁଦ୍ରତମ ସୃଷ୍ଟି ସମ୍ପର୍କରେ ସମସ୍ତ ଆବିଷ୍କାର ଏବଂ କ୍ୱାଣ୍ଟମ୍ ଯନ୍ତ୍ରବିଦ୍ୟାର ବିକାଶ, ବିଜ୍ଞାନର ଏକ ମହାନ କୃତିତ୍ୱ ; ବିଶ୍ୱଜଗତର ଦ୍ୱନ୍ଦ୍ୱମୂଳକ ଧାରଣା ତହିଁର ଅନ୍ତର୍ନିହିତ । ଦେଖାଯାଇଛି ଯେ ଭୌତିକ ଦେହମାନଙ୍କର ଉପାଦାନ ଓ ସମ୍ପର୍କ-ସବୁ ଏବଂ ସେମାନଙ୍କ କଣାଗୁଡ଼ିକୁ ପୂର୍ବର ପଦାର୍ଥବିଜ୍ଞାନୀମାନେ ଯେପରି ସମାନ ଗୁଣ ଓ ସମାନ ପ୍ରକୃତିବିଶିଷ୍ଟ ବୋଲି ଧାରଣା କରୁଥିଲେ ତାହା ସେପରି ନୁହେ । ବସ୍ତୁ ତା'ର ବୈଚିତ୍ର୍ୟ ମଧ୍ୟରେ ଅକ୍ଷୟ ଓ ଅବିନଶ୍ୱର ।

ତେବେ ପଦାର୍ଥବିଜ୍ଞାନର ଆବିଷ୍କାର ଭାବବାଦୀ ସିଦ୍ଧାନ୍ତ ଆହରଣ କରିବାରେ ମଧ୍ୟ ସାହାଯ୍ୟ କରିଛି । କେବଳ ଭାବବାଦୀ ଦାର୍ଶନିକମାନେ ତାକୁ ସମ୍ବଲ କରି ଧରି-ନାହାନ୍ତି, ପୁଞ୍ଜିବାଦୀ ଦେଶର କେତେକ ମୁଖ୍ୟ ବୈଜ୍ଞାନିକ, ଯେଉଁମାନେ ଧର୍ମ ଓ ଭାବବାଦ ଦ୍ୱାରା ପ୍ରଭାବିତ, ସେମାନେ ମଧ୍ୟ ତା'ର ସମର୍ଥକ ।

ଆଧୁନିକ ପଦାର୍ଥବିଜ୍ଞାନ ଓ ପ୍ରକୃତିବିଜ୍ଞାନର ଦର୍ଶନ ମଧ୍ୟରେ 'ଅନିମିତ୍ତ-ବାଦ'ର ଗୋଷ୍ଠୀ ଆତ୍ମପ୍ରକାଶ କରିଛନ୍ତି । ଏହାର ପ୍ରତିନିଧିମାନେ ବସ୍ତୁଗତଭାବେ ଅପରିହାର୍ଯ୍ୟ ସମ୍ବନ୍ଧର ମୂଳନୀତିକୁ ପ୍ରତ୍ୟାଖ୍ୟାନ କରନ୍ତି । ସେମାନେ ଏକ ଭ୍ରମ ଧାରଣାରୁ ଅଗ୍ରସର ହୁଅନ୍ତି ଯେ— ନିମିତ୍ତବାଦ କେବଳ ତା'ର ପୁରୁଣା ଯାନ୍ତ୍ରିକ ରୂପରେ ସମ୍ଭବପର, ଯାହାକି ଆକସ୍ମିକତାକୁ ଅସ୍ୱୀକାର କରେ । ବୈଜ୍ଞାନିକଭାବରେ ପ୍ରମାଣିତ ହୋଇଥିବା ଯାନ୍ତ୍ରିକ ନିମିତ୍ତବାଦର ଏଇ ଦାରିଦ୍ର୍ୟ ଭିତରେ ସେମାନେ ସିଦ୍ଧାନ୍ତ କରନ୍ତି ଯେ ନିମିତ୍ତବାଦ କୌଣସି ରୂପରେ ବି ଗ୍ରହଣଯୋଗ୍ୟ ନୁହେଁ । ସେମାନେ ସ୍ୱେଚ୍ଛାରେ ବା ଅସ୍ୱେଚ୍ଛାରେ ଅନ୍ଧବିଶ୍ୱାସ, କୁସଂସ୍କାର, ଅଲୌକିକ ଘଟଣା ପ୍ରତି ଅସ୍ଥାକୁ ବିଜ୍ଞାନରେ ସ୍ଥାନ ଦେଇଥାନ୍ତି । ସେମାନଙ୍କ ମଧ୍ୟରୁ କେତେକ ଏତେ ଦୂର ମାଡ଼ିଯାଆନ୍ତି ଯେ ବିଦ୍ୟୁତ୍‌କଣା ( ଇଲେକ୍‌ଟ୍ରନ୍ )ର "ସ୍ୱାଧୀନ ଇଚ୍ଛା" ଅଛି ବୋଲି କହିଥାନ୍ତି । ସେମାନଙ୍କର ବିଚାରରେ ବିଜ୍ଞାନ ନିଜର ବିକାଶ ଦ୍ୱାରା ନିଜକୁ ଧର୍ମ ଓ ଭାବବାଦ ସହିତ ସମନ୍ୱିତ ଓ ସମ୍ମିଳିତ କରିବା ସମ୍ଭବପର କରିଛି ।

ତେବେ, ବାସ୍ତବରେ, ଆଧୁନିକ ପଦାର୍ଥବିଜ୍ଞାନ ନିମିତ୍ତବାଦକୁ ଖଣ୍ଡନ କରି-ନାହିଁ । କିନ୍ତୁ ତାହା ଯେ କ୍ଷୁଦ୍ରତମ ସୃଷ୍ଟି ମଧ୍ୟରେ ଏକ ସ୍ୱତନ୍ତ୍ର ଭାବରେ କାର୍ଯ୍ୟ କରେ, ତାକୁହିଁ ପ୍ରକଟିତ କରିଛି । ଏକ କ୍ଷୁଦ୍ରତମ କଣାର ନିର୍ଦ୍ଦିଷ୍ଟ ଅବସ୍ଥା ଓ ବେଗ ଏକ ସଙ୍ଗରେ ନିର୍ଣ୍ଣୟ କରିବା ଯେ ଅସମ୍ଭବ, ତଦ୍ୱାରା ବିଦ୍ୟୁତ୍‌କଣା (ଇଲେକ୍‌ଟ୍ରନ୍) ର "ସ୍ୱାଧୀନ ଇଚ୍ଛା" ଯେ ପ୍ରମାଣିତ ହୁଏ ନାହିଁ, ବରଂ ତାହା ଅତି କ୍ଷୁଦ୍ରତମ କଣା ମଧ୍ୟରେ ମିଳୁଥିବା ପ୍ରପଞ୍ଚର ଅସାଧାରଣ ଜଟିଳତା ଓ ସ୍ୱତନ୍ତ୍ର ଚରିତ୍ରକୁହିଁ ପ୍ରକାଶ କରିଥାଏ, ଏଇସବୁ ପ୍ରପଞ୍ଚକୁ ନିୟନ୍ତ୍ରିତ କରୁଥିବା ନିୟମମାନଙ୍କର ଅଧ୍ୟୟନ କ୍ୱାଣ୍ଟମ୍ ଯନ୍ତ୍ରବିଦ୍ୟାର ମୁଖ୍ୟ ବିଷୟ, ତାହା ବୈଜ୍ଞାନିକ ଓ ଇଞ୍ଜିନିଅରଙ୍କ ଗଣନାରେ ସନ୍ତୋ-ଷଜନକ ଭାବରେ ପ୍ରୟୋଗ କରାଯାଉଛି । ଏ କ୍ଷେତ୍ରରେ ମଧ୍ୟ ଆମେ ଯେ ବାସ୍ତବତାର ସମସ୍ତ ପ୍ରପଞ୍ଚ ମଧ୍ୟରେ ନିହିତ ଥିବା ବସ୍ତୁଗତ ଅପରିହାର୍ଯ୍ୟ ସମ୍ବନ୍ଧ ଏବଂ ନିମିତ୍ତବାଦକୁ ସ୍ୱୀକାର କରୁଛୁ, ଏସବୁ ତା'ର ପ୍ରାମାଣିକ ସାକ୍ଷ୍ୟ ।

## (୨) ପ୍ରକୃତି ଓ ସମାଜରେ ପରିମାଣଗତ ଓ ଗୁଣଗତ ପରିବର୍ତ୍ତନ

ବାସ୍ତବତାର ବିଭିନ୍ନ ପ୍ରପଞ୍ଚକୁ ଅନୁସନ୍ଧାନ ଓ ପରୀକ୍ଷା କରିବାକୁ ଗଲବେଳେ ଅଧ୍ୟୟନ କରାଯାଉଥିବା ନିର୍ଦ୍ଦିଷ୍ଟ ପ୍ରପଞ୍ଚକୁ ଅନ୍ୟାନ୍ୟମାନଙ୍କଠାରୁ ପୃଥକ୍ କରି ଚିହ୍ନୋଟ କରିବା ହେଲା ପ୍ରଥମ କାର୍ଯ୍ୟ ।

### ପଦାର୍ଥମାନଙ୍କର ଗୁଣଗତ ଓ ପରିମାଣଗତ ନିର୍ଦ୍ଦିଷ୍ଟତା

ଏକ ନିର୍ଦ୍ଦିଷ୍ଟ ପଦାର୍ଥ ବା ପ୍ରପଞ୍ଚର ମୁଖ୍ୟ ରୂପଗୁଡ଼ିକର ସମଷ୍ଟି, ଯାହା ଉକ୍ତ ପଦାର୍ଥ ବା ପ୍ରପଞ୍ଚକୁ ସେଇ ପଦାର୍ଥ ଓ ପ୍ରପଞ୍ଚଭାବେ ସଂଗଠିତ କରେ, ଏବଂ ତାକୁ, ଅନ୍ୟମାନଙ୍କଠାରୁ ପୃଥକ୍‌ଭାବେ ଚିହ୍ନିତ କରେ ତାହାକୁ ଗୁଣ କୁହାଯାଏ । ଦୈନନ୍ଦିନ ଜୀବନରେ, ଯେଉଁଠି ମୂଲ୍ୟ ସହିତ ଗୁଣର ଧାରଣା ଜଡ଼ିତ ଥାଏ, ତାହାଠାରୁ ଗୁଣରେ ଦାର୍ଶନିକ ଧାରଣା ଭିନ୍ନ । ଦୃଷ୍ଟାନ୍ତସ୍ୱରୂପ, ଦୈନନ୍ଦିନ ଧାରଣା ଅନୁସାରେ ଲୋକେ ଭଲ ମନ୍ଦ ଖାଦ୍ୟ, ଭଲ ମନ୍ଦ ଶିଳ୍ପଜାତ ଦ୍ରବ୍ୟ ଅଥବା କାରୁକାର୍ଯ୍ୟ ଆଦି କଥା କହିଥାନ୍ତି । କିନ୍ତୁ ଗୁଣର ଦାର୍ଶନିକ ଧାରଣା ମଧ୍ୟରେ ମୂଲ୍ୟର କୌଣସି ଉପାଦାନ ନ ଥାଏ । ଦାର୍ଶନିକ ଦୃଷ୍ଟିରେ ଏହା ହେଉଛି କେବଳ ଏକ ଧାରଣା ଯାହାକି ଏକ ପ୍ରପଞ୍ଚ ଗଠନ କରୁଥିବା ନିର୍ଦ୍ଦିଷ୍ଟତାରେ ରହିଥିବା ତା'ର ଅବିଚ୍ଛେଦ୍ୟ ସ୍ୱତନ୍ତ୍ର ରୂପ, ତା'ର ଅଭ୍ୟନ୍ତରୀଣ ଗଠନପ୍ରଣାଳୀକୁ ପ୍ରକାଶ କରିଥାଏ ; ଏହାର ଅଭାବରେ ସେ ତାହାର ପୂର୍ବ ରୂପରେ ରହେ ନାହିଁ ।

ଦୃଷ୍ଟାନ୍ତସ୍ୱରୂପ, ଏକ ଜଙ୍ଗଲ, ଅଣ ନବଡ଼ଭାବେ ବୃକ୍ଷମାନଙ୍କର ଉପସ୍ଥିତିର ଧାରଣା ଦିଏ । ଯଦି ଜଙ୍ଗଲରୁ ଗଛମାନଙ୍କୁ ହାଣି ପରିଷ୍କାର କରିଦିଆଯାଏ ତେବେ ତାହା ଆଉ ଜଙ୍ଗଲ ହୋଇ ରହେ ନାହିଁ । ତାହା କେବଳ ଡଙ୍ଗଲା ପଡ଼ିଆ ହୋଇଯାଏ । ଏକ ପଦାର୍ଥ ତା'ର ଗୁଣ ହରାଇବା ଦ୍ୱାରା ତାହା ପରିବର୍ତ୍ତିତ ହେଉଛି, ଏକ ଭିନ୍ନ ପ୍ରକାରର ଗୁଣଗତ ନିର୍ଦ୍ଦିଷ୍ଟତା ଯେନ ଅନ୍ୟ ଏକ ପଦାର୍ଥରେ ପରିଣତ ହେଉଛି ।

ପଦାର୍ଥମାନଙ୍କ ଭିତରେ ଗୁଣଗତ ପାର୍ଥକ୍ୟ ନିର୍ଣ୍ଣୟ କରିବା ବ୍ୟାବହାରିକ ଦୃଷ୍ଟିରୁ ମଧ୍ୟ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । କାରଣ ତା'ଦ୍ୱାରା ଆମେ ଆମର ସୁବିଧା ଅନୁସାରେ ସେମାନଙ୍କୁ ବ୍ୟବହାର କରିବାରେ ସମର୍ଥ ହୋଇଥାଉଁ । ଦୃଷ୍ଟାନ୍ତସ୍ୱରୂପ, ତମ୍ବା, ଆଲୁମିନିୟମ, ୟୁରାନିୟମ ପ୍ରଭୃତି ଗୁଣଗତଭାବେ ବିଭିନ୍ନ ଧାତୁ । ସେଥିଯୋଗୁଁ ଇଞ୍ଜିନିୟରିଙ୍ଗ୍ କାମରେ ସେମାନଙ୍କର ବିଭିନ୍ନ ପ୍ରକାରର ବ୍ୟବହାର ରହିଛି । ଉଡ଼ାଜାହାଜ ତିଆରିରେ ଆଲୁମିନିୟମ ଲାଗେ, ଇଲେକ୍ଟ୍ରିକ ତାର ତିଆରିରେ ତମ୍ବା ଲଗାଯାଏ, ଆଣବିକ ଶକ୍ତି ଉତ୍ପାଦନରେ ୟୁରାନିୟମ ବ୍ୟବହୃତ ହୋଇଥାଏ ।

ସାମାଜିକ ପ୍ରପଞ୍ଚକୁ ବୁଝିବା ଲାଗି ଗୁଣର ଧାରଣା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ, ଯଥା— ସମାଜବାଦୀ ସମାଜ ଏବଂ ଦାସ, ସାମନ୍ତବାଦୀ ବା ପୁଞ୍ଜିବାଦୀ ସମାଜ ମଧ୍ୟରେ ଗୁଣଗତ ପାର୍ଥକ୍ୟ ରହିଛି । ଏ ପାର୍ଥକ୍ୟ ନିର୍ଣ୍ଣୟ କରିବାଲାଗି ସମାଜବାଦର ବୈଶିଷ୍ଟ୍ୟ, ତା'ର ସବୁଠାରୁ ମୁଖ୍ୟ ସାମାଜିକ ସମ୍ପର୍କ, ତା'ର ଅର୍ଥନୈତିକ ସଂଗଠନକୁ ବାହାର କରିବାକୁ ହେବ ଯାହାଦ୍ୱାରା କି ତାହା ଅନ୍ୟାନ୍ୟ ସାମାଜିକ ବ୍ୟବସ୍ଥାଠାରୁ ନିଜକୁ ପୃଥକଭାବେ ଚିହ୍ନିତ କରେ ।

ଅବଶ୍ୟ, ସ୍ମରଣ ରଖିବା ଉଚିତ ଯେ ଗୁଣର ନିଜର କୌଣସି ଅସ୍ତିତ୍ୱ ନାହିଁ ; କେବଳ ପଦାର୍ଥ ବା ପ୍ରପଞ୍ଚମାନଙ୍କର ଏକ ବା ବିଭିନ୍ନ ପ୍ରକାରର ଗୁଣ ରହିଛି ।

କେତେ ପଦାର୍ଥମାନଙ୍କ ମଧ୍ୟରେ, କିମ୍ବା ଏକ ଅଣ ସ୍ପଷ୍ଟ ଗୁଣଗତ ନିର୍ଦ୍ଦିଷ୍ଟତା ଥିବା ସେମାନଙ୍କ ସମଷ୍ଟି ଭିତରେ, ଊଣାଅଧିକ ଗୁରୁତ୍ୱପୂର୍ଣ୍ଣ ଗୁଣଗତ ପାର୍ଥକ୍ୟ ଥାଇ- ପାରେ । ଉଦାହରଣସ୍ୱରୂପ, ଜୀବଜଗତରେ ମେରୁଦଣ୍ଡବିଶିଷ୍ଟ ପ୍ରାଣୀ କୀଟକୀଟାଣୁ ଜୀବଠାରୁ ଗୁଣଗତଭାବେ ପୃଥକ୍ । ମାଛ, ପକ୍ଷୀ, ସରୀସୃପ, ଉଭୟଚର ପ୍ରାଣୀ ଓ ସ୍ତନ୍ୟପାୟୀ ଜନ୍ତୁମାନଙ୍କ ଭଳି ମେରୁଦଣ୍ଡବିଶିଷ୍ଟ ପ୍ରାଣୀଙ୍କ ସାଧାରଣ ଉପବିଭାଗମାନଙ୍କ ଭିତରେ ବି ଗୁଣଗତ ପ୍ରଭେଦ ରହିଛି । ପୁଣି, ସ୍ତନ୍ୟପାୟୀ ପଶୁମାନଙ୍କ ଭିତରେ ଗୁଣଗତ ପ୍ରଭେଦ ଅଛି ।

ଯେଉଁ ସକଳ ରୂପ ଓ ବିଶେଷତ୍ୱ ଯେନ ଏକ ପ୍ରପଞ୍ଚର ଗୁଣ ସଂଗଠିତ, ତା'ର ଚିହ୍ନର ସୀମା ଓ ପରିଚୟ ଅବଧାରଣର ପ୍ରାରମ୍ଭ ମାତ୍ର । ଗୁଣ ବ୍ୟତୀତ, ପ୍ରତ୍ୟେକ

ପଦାର୍ଥର ଏକ ପରିମାଣଗତ ଦିଗ ବି ରହିଛି । ତାହା ସ୍ୱତନ୍ତ୍ର ପରିମାଣଗତ ବୈଶିଷ୍ଟ୍ୟ ଦ୍ୱାରା ଚିହ୍ନିତ, ଆଉ ସେଇ ପରିମାଣଗତ ବିଶିଷ୍ଟତା ମଧ୍ୟରେ ତା'ର ଗୁଣ ବିଦ୍ୟମାନ ।

ଏକ ପଦାର୍ଥର ପରିମାଣଗତ ନିର୍ଦ୍ଦିଷ୍ଟତା ତା'ର ବାହ୍ୟ ରୂପ ପ୍ରତି ପ୍ରଯୋଜ୍ୟ ହୋଇପାରେ । ଯେମିତି କୌଣସି ଏକ ପଦାର୍ଥ ବଡ଼ ବା ସାନ ହୋଇପାରେ । କିନ୍ତୁ ତାହା କୌଣସି ପଦାର୍ଥର ଅନ୍ତର୍ନିହିତ ପ୍ରକୃତିର ଚରିତ୍ର ମଧ୍ୟ ପ୍ରକାଶ କରିପାରେ । ଏଇଭଳି ପ୍ରତ୍ୟେକ ଧାତୁର ନିଜର ଉତ୍ତାପ ସଂଗ୍ରହଣ ଶକ୍ତି ରହିଛି, ତା'ର ପ୍ରସାରର ସହଗ ଶକ୍ତି ରହିଛି ; ଏବଂ ପ୍ରତ୍ୟେକ ତରଳ ପଦାର୍ଥର ଉତ୍ତାପ ଶକ୍ତି ରହିଛି । ତା'ର ଗରମ ହୋଇ ଫୁଟିବାର ବା ଥଣ୍ଡା ହୋଇ ଜମାଟ ବାନ୍ଧିବାର ନିର୍ଦ୍ଦିଷ୍ଟ ପରିଣତି ବା ସୀମାରେଖା ରହିଛି ; ଆଉ ପ୍ରତ୍ୟେକ ପ୍ରକାର ବାଷ୍ପ ତରଳିବା ଲାଗି ତା'ର ନିଜର ନିର୍ଦ୍ଦିଷ୍ଟ ଉତ୍ତାପ ଅଛି, ଇତ୍ୟାଦି ।

ଗୁଣଗତଭାବେ ପୃଥକ ବିଭିନ୍ନ ଦ୍ରବ୍ୟ ଓ ପ୍ରକ୍ରିୟାର ପରିମାଣଗତ ବୈଶିଷ୍ଟ୍ୟ, ପ୍ରଯୋଗବିଦ୍ୟାରେ ( ଟେକ୍‌ନୋଲଜି ) ବିଶେଷ ଗୁରୁତ୍ୱପୂର୍ଣ୍ଣ । ଆଧୁନିକ ଶିଳ୍ପ ପ୍ରତ୍ୟେକ ପଦକ୍ଷେପରେ ତାହା ଉପରେ ନିର୍ଭରଶୀଳ ।

ତେଣୁ ଯେତେବେଳେ କେବଳ ପ୍ରପଞ୍ଚ ସହିତ ସଂପୃକ୍ତ ପରିମାଣଗତ ପରିମାପନ ଗୁଣଗତ ବର୍ଣ୍ଣନା ସହିତ ସଂଶ୍ଳିଷ୍ଟ ହେଲା, ସେତେବେଳେ ପ୍ରକୃତି-ବିଜ୍ଞାନର ଉଲ୍ଲେଖଯୋଗ୍ୟ ଅଗ୍ରଗତି ସମ୍ଭବ ହୋଇପାରିଲା । ନକ୍ଷତ୍ର ଓ ଗ୍ରହମାନଙ୍କର ପରିଦୃଷ୍ଟ ଗତିର ପର୍ଯ୍ୟବେକ୍ଷଣ ବହୁକାଳରୁ ଆରମ୍ଭ ହୋଇଥିଲା । କିନ୍ତୁ ଆକାଶରେ ନକ୍ଷତ୍ରମାନଙ୍କର ପରିଦୃଷ୍ଟ ଅବସ୍ଥାନ ଏବଂ ସେମାନଙ୍କ ମଧ୍ୟରେ କୌଣିକ ଦୂରତ୍ୱ ଆଦିର ପରିମାପନ ନ ହେବା ପର୍ଯ୍ୟନ୍ତ ଗଣିତ-ଜ୍ୟୋତିଷବିଦ୍ୟା ଏକ ବିଜ୍ଞାନ ହିସାବରେ ବିକାଶ ଲାଭ କରି ନ ଥିଲା । ସେଇପରି ଅନ୍ୟାନ୍ୟ ବିଜ୍ଞାନ କ୍ଷେତ୍ରରେ ମଧ୍ୟ ମାପ ଓ ଗଣନାକାରୀ ଯନ୍ତ୍ରର ଉନ୍ନତି, ପରିମାପନ ପଦ୍ଧତି ଆଦିର ବିକାଶ ସହିତ ବୈଜ୍ଞାନିକ ଜ୍ଞାନର ଅଗ୍ରଗତି ସଂଯୁକ୍ତ ରହିଛି ।

ଅତଏବ, ଗାଲିଲିଓଙ୍କ ଭଳି ଆଧୁନିକ ଯୁଗର ବିଜ୍ଞାନର ପ୍ରତିଷ୍ଠାତାମାନେ ପ୍ରପଞ୍ଚର ପରିମାଣଗତ ସଂପର୍କ ଏବଂ ବୈଶିଷ୍ଟ୍ୟ ଗୁଣର ବିଶ୍ଳେଷଣକୁ ପ୍ରକୃତିବିଜ୍ଞାନର ମୁଖ୍ୟ କାର୍ଯ୍ୟ ବୋଲି ସ୍ୱୀକାର କରୁଥିଲେ, ଏଥିରେ ବିସ୍ମିତ ହେବାର କିଛି ନାହିଁ ।

ତେବେ ସେ ସମୟର ବୈଜ୍ଞାନିକମାନେ ଏକଦମ ଶେଷ ସୀମାକୁ ମାଡ଼ି-ଯାଇଥିଲେ । ଯେହେତୁ ଗୁଣ ପରିମାଣର ଅନୁରୂପ ସେ ସମସ୍ତ 'ଗୁଣ'କୁ 'ପରିମାଣ'ରେ ପରିଣତ କରିବାକୁ ସେମାନେ ଉଦ୍ୟମ କରିଥିଲେ ଏବଂ ପ୍ରପଞ୍ଚର ପରିମାଣଗତ ପାର୍ଥକ୍ୟ ପଛରେ ଗୁଣଗତ ପାର୍ଥକ୍ୟ ଦେଖିବାରେ ବିଫଳ ହୋଇଥିଲେ ।

ପ୍ରାକୃତିକ ପ୍ରପଞ୍ଚ ପ୍ରତି ବିଶୁଦ୍ଧ ପରିମାଣଗତ ଦୃଷ୍ଟିଭଙ୍ଗୀ ସପ୍ତଦଶ ଓ ଅଷ୍ଟାଦଶ ଶତାବ୍ଦୀର ଏକ ବିଶେଷ ଯନ୍ତ୍ରବିଦ୍ୟା ଦିଗକୁ ନେଇଯାଇଛି, ଅର୍ଥାତ୍ ଦୃଢ଼ ବିଶ୍ୱାସ ଆସିଛି ଯେ ବିଶ୍ୱଜଗତର ଅବଧାରଣ ଲାଗି ଗଣିତ ଓ ଯନ୍ତ୍ରବିଦ୍ୟା ଯଥେଷ୍ଟ ଭିତ୍ତି ଯୋଗାଇଥାଏ ଏବଂ ଯନ୍ତ୍ରବିଦ୍ୟାର ନିୟମ ଦ୍ୱାରା ଯଦି ବୁଝାଇଦିଆଯାଇପାରେ ତେବେ ଯେକୌଣସି ପ୍ରପଞ୍ଚକୁ ବୁଝିହେବ । ଦୃଷ୍ଟାନ୍ତସ୍ୱରୂପ, ସପ୍ତଦଶ ଶତାବ୍ଦୀର ଫରାସୀ ଦାର୍ଶନିକ ରେନେ ଡେସକାର୍ଟିସଙ୍କ ମତରେ ଜୀବଜନ୍ତୁମାନେ କେବଳ ଜଟିଳ ମେସିନ ମାତ୍ର ; ଯନ୍ତ୍ରବିଦ୍ୟାର ନିୟମ ଜରିଆରେ ସେମାନଙ୍କର ସବୁ କାର୍ଯ୍ୟକୁ ପୁରାପୁରି ବୁଝାଯାଇପାରେ । ଫ୍ରାନ୍ସର ଅଷ୍ଟାଦଶ ଶତାବ୍ଦୀର ବସ୍ତୁବାଦୀ ଲ ମେଟ୍ରି ଆହୁରି ଆଗକୁ ମାଡ଼ିଯାଇ ତାଙ୍କର "ମନୁଷ୍ୟ ଯନ୍ତ୍ର" ପ୍ରବନ୍ଧରେ ଯୁକ୍ତି କରିଥିଲେ ଯେ କେବଳ ଜୀବଜନ୍ତୁ ନୁହନ୍ତି, ମନୁଷ୍ୟ ମଧ୍ୟ ମେସିନରୁ ଅଧିକ ନୁହେ ।

ପ୍ରକୃତିର ଏ ଯନ୍ତ୍ରବାଦୀ ଦୃଷ୍ଟିକୋଣ ସେ ସମୟ ପାଇଁ ପ୍ରଗତିଶୀଳ ଥିଲା, କାରଣ ତାହା ସମସ୍ତ ପ୍ରାକୃତିକ ପ୍ରପଞ୍ଚ ପ୍ରତି ଏକ ଦୃଢ଼ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଦାବୀ କରିଥିଲା; ସମସ୍ତ ପ୍ରକାରର ଭାବବାଦୀ ଓ ଧର୍ମସମ୍ବନ୍ଧୀୟ 'ବ୍ୟାଖ୍ୟା'କୁ ତାହା ପ୍ରତ୍ୟାଖ୍ୟାନ କରିଥିଲା । କିନ୍ତୁ କେବଳ ପରିମାଣଗତ ଦୃଷ୍ଟିଭଙ୍ଗୀ ଯେ ଯଥେଷ୍ଟ ନୁହେ ତାହା ଅତିଶୀଘ୍ର ଜଣାପଡ଼ିଗଲା । ପଦାର୍ଥ ଓ ପ୍ରପଞ୍ଚର ଅବଧାରଣ ଲାଗି ସେମାନଙ୍କର ନିଜସ୍ୱ ବୈଶିଷ୍ଟ୍ୟ, ସ୍ୱତନ୍ତ୍ର ନିର୍ଦ୍ଦିଷ୍ଟ ରୂପର ଆବିଷ୍କାରର ପ୍ରୟୋଜନୀୟତା ଅନୁଭୂତ ହୋଇଥିଲା । ବାହ୍ୟ ଜଗତ ବୈଚିତ୍ର୍ୟମୟ, ନାନା ଗୁଣରେ ପରିପୂର୍ଣ୍ଣ; ଯଦି ସମସ୍ତ ପ୍ରପଞ୍ଚ ଓ ପ୍ରକ୍ରିୟାର ଗୁଣଗତ ଆଉ ପରିମାଣଗତ ଦିଗମାନଙ୍କୁ ବିଚାର କରାଯାଇପାରେ, ତେବେ କେବଳ ତାଙ୍କୁ ବ୍ୟାଖ୍ୟା ଓ ଉପଲବ୍ଧି କରାଯାଇପାରିବ । ତେଣୁ ସମସ୍ୟାଟି କେବଳ ଏକ ପ୍ରପଞ୍ଚର ଗୁଣକୁ ତା'ର ପରିମାଣରେ ପରିଣତ କରିବା ନୁହେ, ସମସ୍ୟାଟି ହେଉଛି ଏକ ପ୍ରପଞ୍ଚର ପରିମାଣଗତ ନିର୍ଦ୍ଦିଷ୍ଟତା ଏବଂ ତା'ର ଗୁଣଗତ ନିର୍ଦ୍ଦିଷ୍ଟତା ମଧ୍ୟରେ କି ପ୍ରକାର ସମ୍ବନ୍ଧ ରହିଛି ତାକୁ ଉପଲବ୍ଧି କରିବା ।

ଗୁଣଗତଭାବେ ପୃଥକ ବହୁ ପଦାର୍ଥ ଓ ପ୍ରକ୍ରିୟା ମଧ୍ୟରେ ଯେ ପରିମାଣଗତ ସାଧାରଣ ସମ୍ପର୍କ ରହିଛି ତାହା ବିଜ୍ଞାନର ବିକାଶ ଦ୍ୱାରା ଜଣାପଡ଼ିଥିଲା । ଦୃଷ୍ଟାନ୍ତସ୍ୱରୂପ, ତରଙ୍ଗତତ୍ତ୍ୱର ଗାଣିତିକ ସୂତ୍ର ବିଭିନ୍ନ ପ୍ରକାର ପଦାର୍ଥର ପ୍ରପଞ୍ଚ, ଯଥା—ଯାନ୍ତ୍ରିକ ସ୍ପନ୍ଦନ, ବିଦ୍ୟୁତ୍-ଚୁମ୍ବକ ଦୋଳନ, ଜଳୀୟ ଅସ୍ଥିରତା ପ୍ରଭୃତି ଅନ୍ୟାନ୍ୟ କ୍ଷେତ୍ର ପ୍ରତି ପ୍ରଯୋଜ୍ୟ । ଏସବୁ ସମ୍ଭବ ହେଉଛି କାରଣ ଏ ସମସ୍ତ ପ୍ରପଞ୍ଚର ବସ୍ତୁଗତଭାବେ କେତେକ ସାଧାରଣ ରୂପ, ସାଧାରଣ ନିୟମିତତା ରହିଛି, ଯାହାକୁ କି ପରିମାଣଗତଭାବେ ପ୍ରକାଶ କରାଯାଇପାରେ ।

ଏବେ ବିଜ୍ଞାନର ସମସାମୟିକ ପର୍ଯ୍ୟାୟରେ, ପରିମାଣଗତ ସମ୍ପର୍କକୁ ବିଚାର କରୁଥିବା ଗଣିତବିଦ୍ୟାକୁ ପ୍ରୟୋଗବିଦ୍ୟାରେ ତଥା ବାସ୍ତବ ଅବସ୍ଥାର ଗୁଣଗତଭାବେ

ପୃଥକ ବସ୍ତୁ କ୍ଷେତ୍ରରେ ବୈଜ୍ଞାନିକ ଗବେଷଣା କାର୍ଯ୍ୟରେ ଅଧିକରୁ ଅଧିକ ପ୍ରୟୋଗ କରାଯାଉଛି । ଏହା ଯେ ପ୍ରଗତିର ଚିହ୍ନ, ତାହା ନିଃସନ୍ଦେହଭାବେ କୁହାଯାଇପାରେ ।

ତେବେ, ଏକ ନିର୍ଦ୍ଦିଷ୍ଟ ପରିମାଣଗତ ସପର୍କକୁ ଗୁଣଗତଭାବେ ପୃଥକ ପ୍ରକ୍ରିୟା ପ୍ରତି ପ୍ରୟୋଗ କରିବାର ଏଇ ସମ୍ଭାବନା, ସେମାନଙ୍କ ପ୍ରତ୍ୟେକର ସମସ୍ତ ଗୁଣଗତ ବୈଶିଷ୍ଟ୍ୟଗୁଡ଼ିକର ଏକ ପୁଙ୍ଖାନୁପୁଙ୍ଖ ଅଧ୍ୟୟନ ଫଳରେ ଆସିଥାଏ ।

## ପରିମାଣଗତ ପରିବର୍ତ୍ତନର ଗୁଣଗତ ପରିବର୍ତ୍ତନରେ ରୂପାନ୍ତର

ପରିମାଣଗତ ହେଉ ବା ଗୁଣଗତ ହେଉ କେବଳ ଗୋଟିଏ ଦିଗ ଉପରେ ଜୋର ଦେବା ଅଧିବିଦ୍ୟାଗତ ଦୃଷ୍ଟିଭଙ୍ଗୀର ପରିଚୟ ଦିଏ । ପରିମାଣ ଓ ଗୁଣ ମଧ୍ୟରେ ଯେଉଁ ସ୍ୱାଭାବିକ ଅପରିହାର୍ଯ୍ୟ ସମ୍ବନ୍ଧ ରହିଛି ସେ ଦିଗରେ ଅଧିବିଦ୍ୟା ଅନ୍ଧ, ବିଚାରହୀନ । ଅପର ପକ୍ଷରେ ପଦାର୍ଥମାନଙ୍କର ପରିମାଣଗତ ନିର୍ଦ୍ଦିଷ୍ଟତା ଓ ଗୁଣଗତ ନିର୍ଦ୍ଦିଷ୍ଟତା ସମ୍ପୂର୍ଣ୍ଣରୂପେ ବାହ୍ୟ ଓ ଆକର୍ଷଣଶୂନ୍ୟ ବିରୋଧିତା ନୁହେ, ବରଂ ସେମାନଙ୍କ ମଧ୍ୟରେ ଏକ ଗଭୀର ଦ୍ୱନ୍ଦ୍ୱମୂଳକ ସମ୍ବନ୍ଧ ରହିଛି, ଏହା ପ୍ରତିପାଦିତ କରିବାଦ୍ୱାରା ଦ୍ୱନ୍ଦ୍ୱମୂଳକ ଚିନ୍ତା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଅଗ୍ରଗତି ହାସଲ କରିପାରିଛି । କୌଣସି ପଦାର୍ଥର ପରିମାଣଗତ ପରିବର୍ତ୍ତନ ଅପରିହାର୍ଯ୍ୟଭାବେ ତା'ର ଗୁଣରେ ପରିବର୍ତ୍ତନ ଆଣେ, ଏଇ ସମ୍ବନ୍ଧଟି ହେଲା ତା'ର ଅତି ସାଧାରଣ ସ୍ୱରୂପ ।

ଆମେ ଆମର ଚତୁର୍ଦ୍ଦିଗରେ ଏଇପରି ପରିମାଣଗତରୁ ଗୁଣଗତ ପରିବର୍ତ୍ତନର ଦୃଷ୍ଟାନ୍ତ ଦ୍ୱାରା ପରିବେଷ୍ଟିତ ହୋଇ ରହିଛୁ ।

ଏହିପରି ଏକ ବାଦ୍ୟଯନ୍ତ୍ରର ତାରର ଦୈର୍ଘ୍ୟରେ ପରିବର୍ତ୍ତନ ଘଟିଲେ ତା'ର ସ୍ୱରରେ ମଧ୍ୟ ପରିବର୍ତ୍ତନ ଆସେ ।

ବିଦ୍ୟୁତ୍‌-ଚୁମ୍ବକ ତରଙ୍ଗର ଦୈର୍ଘ୍ୟରେ ପରିବର୍ତ୍ତନ ଆସିଲେ ସେଥି ସଙ୍ଗେ ସଙ୍ଗେ ରେଡିଓ ତରଙ୍ଗ, ଅବଲୋହିତ ରଶ୍ମି କଣିକା, ପରିଦୃଷ୍ଟ ରଶ୍ମି କଣିକା-ବର୍ଣ୍ଣାଳୀ, ଘନ-ବାଇଗଣି ରଶ୍ମି, ରଞ୍ଜନ ରଶ୍ମି ଏବଂ ଶେଷରେ ତଥାକଥିତ ଗାମା ରଶ୍ମିରେ ଗୁଣଗତ ପାର୍ଥକ୍ୟ ଆସିଥାଏ ।

ପରିମାଣଗତ ପରିବର୍ତ୍ତନ ଦ୍ୱାରା ଅସଂଖ୍ୟ ଗୁଣଗତ ପରିବର୍ତ୍ତନ ରାସାୟନିକ କ୍ଷେତ୍ରରେ ଦେଖିବାକୁ ମିଳେ । ସିନ୍ଥେଟିକ୍ ବା ସାଂଶ୍ଳେଷିକ ପଦାର୍ଥ (ରବର, ପ୍ଲାଷ୍ଟିକ ବା କୃତ୍ରିମ ତନ୍ତୁ)ମାନଙ୍କୁ ନିଆଯାଉ । ଆଜି ସେସବୁ ଶିଳ୍ପକାରଖାନାରେ ବିଶେଷଭାବେ ପ୍ରଚଳିତ, ଦୈନନ୍ଦିନ ଜୀବନରେ ବିଶେଷ ବ୍ୟବହୃତ । ସେମାନଙ୍କ ପରମାଣୁଗୁଡ଼ିକର ଆକାର ବଡ଼ ବଡ଼, ଆଉ ସେ ପ୍ରତ୍ୟେକଟି ପରମାଣୁ ଏକଭଳିଆ ନିର୍ମିତ ବହୁ ଖଣ୍ଡ କ୍ଷୁଦ୍ର ପରମାଣୁମାନଙ୍କୁ ନେଇ ଗଠିତ । ଏଇ କ୍ଷୁଦ୍ର ପରମାଣୁମାନଙ୍କ

(ମନୋମର୍ସର) ସମଷ୍ଟି ଦ୍ୱାରା ବୃହତ୍ତ ପରମାଣୁ (ପଲିମର୍ସ) ର ସୃଷ୍ଟି ଫଳରେ ଗୁଣଗତ ପରିବର୍ତ୍ତନ ଘଟିଥାଏ । ପଲିମର୍ସମାନଙ୍କର ( ବୃହତ୍ତ ପରମାଣୁର ) ବହୁ ଅଦ୍ଭୁତ ଗୁଣ ରହିଛି ଯାହାକି ମନୋମର୍ସମାନଙ୍କର ( କ୍ଷୁଦ୍ର ପରମାଣୁର ) ଦେଖାଯାଏ ନାହିଁ ।

ଏଇ ପରିମାଣଗତ ପରିବର୍ତ୍ତନ ଊଣାଅଧିକେ ଧୀରମନ୍ଥରଭାବେ ଘଟିଥାଏ ଏବଂ କ୍ୱଚିତ୍ ଦୃଷ୍ଟିଗୋଚର ହୁଏ । ପ୍ରଥମରେ ସେମାନେ ପଦାର୍ଥର ଗୁଣଗତ ନିର୍ଦ୍ଦିଷ୍ଟତାରେ ବିଶେଷ ପରିବର୍ତ୍ତନ ଆଣନ୍ତି ନାହିଁ । ତା'ପରେ ସେମାନେ ପୁଞ୍ଜୀଭୂତ ହୁଅନ୍ତି, ଆଉ ଶେଷରେ ଏକ ମୌଳିକ ଗୁଣଗତ ପରିବର୍ତ୍ତନରେ ପହଞ୍ଚନ୍ତି । "ପରିମାଣ" "ଗୁଣରେ ରୂପାନ୍ତରିତ ହୁଏ" ବୋଲି କୁହାଯାଇଥାଏ ।

ଏହିପରି ଲୁହା ଗରମ ହେଲାବେଳେ ତା'ର ଘନତା ରହିଥାଏ । ମାତ୍ର ଯେତେବେଳେ ତା'ର ଉତ୍ତାପ ସଙ୍କଟ ପଏଣ୍ଟରେ ପହଞ୍ଚେ, ସେତେବେଳେ ଧାତୁ ଆଉ ଘନ ହୋଇ ରହେ ନାହିଁ, ତରଳ ହୋଇଯାଏ ।

ବିକାଶର ପ୍ରକ୍ରିୟା ବୁଝିବା ନିମନ୍ତେ ପରିମାଣରୁ ଗୁଣକୁ ହେଉଥିବା ଦ୍ୱନ୍ଦ୍ୱମୂଳକ ରୂପାନ୍ତର ଜାଣିବା ଗୁରୁତ୍ୱପୂର୍ଣ୍ଣ । କାରଣ ଯେଉଁ ନୂତନ ଗୁଣର ଉଦ୍ଭବ ବିନା କୌଣସି ବିକାଶ ସମ୍ଭବ ନୁହେଁ, ତାହା ତାକୁହିଁ ବ୍ୟାଖ୍ୟା କରିଥାଏ ।

ଦୃଷ୍ଟାନ୍ତସ୍ୱରୂପ, ସାମାଜିକ ବିକାଶର ପ୍ରଥମ ଅବସ୍ଥାରେ ପ୍ରାକୃତିକ ଅର୍ଥନୀତି ପ୍ରଚଳିତ ଥିଲା । ସେତେବେଳେ ପ୍ରତ୍ୟେକ ଗୋଷ୍ଠୀ ନିଜନିଜର ଜୀବନଧାରଣ ଲାଗି ସମସ୍ତ ଆବଶ୍ୟକ ଦ୍ରବ୍ୟ ଉତ୍ପନ୍ନ କରୁଥିଲେ । ପରେ ଯେତେବେଳେ ଉତ୍ପାଦନ ବୃଦ୍ଧି ପାଇଲା, ପଣ୍ୟର ବିନିମୟ ଆରମ୍ଭ ହେଲା । ଏ ବିନିମୟର ମାତ୍ରା ବଢ଼ିଲା, ପଣ୍ୟର ପରିମାଣ ବୃଦ୍ଧି ପାଇଲା । ଅବଶେଷରେ ତାହା ସାମାଜିକ ଜୀବନରେ ଏକ ବିରାଟ ମୌଳିକ ଗୁଣଗତ ପରିବର୍ତ୍ତନ ଆଣି ଦେଲା ; ପଣ୍ୟ ଅର୍ଥନୀତି ପ୍ରାକୃତିକ ଅର୍ଥନୀତିର ସ୍ଥାନ ଗ୍ରହଣ କଲା । ସେ ଅବସ୍ଥାରେ ଲୋକେ ନିଜର ଉପଭୋଗ ଅପେକ୍ଷା ବରଂ ବିନିମୟ ଲାଗି ଦ୍ରବ୍ୟ ଉତ୍ପନ୍ନ କଲେ ଏବଂ ସେମାନଙ୍କର ପ୍ରୟୋଜନୀୟ ଦ୍ରବ୍ୟ ବିନିମୟ ଜରିଆରେ ଲାଭ କଲେ ।

ପରିମାଣଗତ ପରିବର୍ତ୍ତନ ମଧ୍ୟରୁ ଯଦି ନୂତନ ଗୁଣର ଉଦ୍ଭବ ହୁଏ, ତେବେ ସେ ନୂତନ ଗୁଣର ଏକ ନୂତନ ପରିମାଣଗତ ନିର୍ଦ୍ଦିଷ୍ଟତା ଆସିବ । ତାହା ହେଲା "ଗୁଣରୁ ପରିମାଣକୁ ପରିବର୍ତ୍ତନ" । ଅତଏବ ଏକ ମେସିନର ଗୁଣଗତ ଏକ ନୂତନ ମଡେଲ ଫଳରେ ଶ୍ରମର ଉଚ୍ଚତର ଉତ୍ପାଦନ ଶକ୍ତି ଦେଖାଦିଏ । ପୁଞ୍ଜିବାଦୀ ଅର୍ଥନୀତି-ଠାରୁ ଗୁଣଗତଭାବେ ପୃଥକ ସମାଜବାଦୀ ଅର୍ଥନୀତି ଅଧିକ ବେଗରେ ବିକାଶ ଲାଭ କରେ ।

ପରିମାଣଗତ ପରିବର୍ତ୍ତନରୁ ମୌଳିକ ଗୁଣଗତ ପରିବର୍ତ୍ତନକୁ ଗତି ଏବଂ ଗୁଣଗତ ପରିବର୍ତ୍ତନରୁ ପରିମାଣଗତ ପରିବର୍ତ୍ତନକୁ ଗତି—ଏହାହିଁ ହେଉଛି ବିଶ୍ୱଜନୀନ ବିକାଶର ଦ୍ୱନ୍ଦ୍ୱମୂଳକ ନିୟମ । ତାହା ପ୍ରକୃତି, ସମାଜ ଏବଂ ଚିନ୍ତାର ସମସ୍ତ ପ୍ରକ୍ରିୟାରେ—ସମସ୍ତ କ୍ଷେତ୍ରରେ ଯେଉଁଠି ନୂତନ ପୁରାତନର ସ୍ଥାନ ଗ୍ରହଣ କରୁଛି, ସେଠାରେ—କାର୍ଯ୍ୟ କରୁଥାଏ ।

ଉଲ୍ଲମ୍ଫନ କ'ଣ ?

ପରିମାଣଗତ କ୍ଷୁଦ୍ର ପରିବର୍ତ୍ତନମାନ ପୁଞ୍ଜୀଭୂତ ହେବାଦ୍ୱାରା ଗୋଟିଏ ଗୁଣଗତ ଅବସ୍ଥାରୁ ଅନ୍ୟ ଏକ ନୂତନ ଅବସ୍ଥାକୁ କୌଣସି ପଦାର୍ଥର ଯେଉଁ ପରିଗମନ ହୁଏ ତାହାକୁ ବିକାଶର ଉଲ୍ଲମ୍ଫନ କୁହାଯାଏ । ପଦାର୍ଥର ପରିମାଣଗତ ପରିବର୍ତ୍ତନର ମନ୍ଥରତାରେ ଉଲ୍ଲମ୍ଫନ ଏକ ବିରାମ । ଏକ ନୂତନ ଗୁଣକୁ ଏହା ଏକ ପରିଗମନ ; ବିକାଶ ପ୍ରକ୍ରିୟାରେ ଏକ ପ୍ରଖର ଆବର୍ତ୍ତନର, ଏକ ମୌଳିକ ପରିବର୍ତ୍ତନର ଏହା ସଙ୍କେତ ଦିଏ ।

ଦୃଷ୍ଟାନ୍ତସ୍ୱରୂପ, ମନୁଷ୍ୟର ଉଦ୍‌ଭବ ଗୋଟାଏ ଉଲ୍ଲମ୍ଫନ—ଜୀବଜଗତର ବିକାଶ କ୍ଷେତ୍ରରେ ଏକ ମୌଳିକ ଆବର୍ତ୍ତନର କେନ୍ଦ୍ରବିନ୍ଦୁ ।

ଉଲ୍ଲମ୍ଫନ, ଏକ ଗୁଣରୁ ଅନ୍ୟ ଏକ ଗୁଣକୁ ପରିଗମନ ଆପେକ୍ଷିକଭାବେ ପ୍ରଖର । ତେବେ ପରିମାଣଗତ କ୍ଷୁଦ୍ର ପରିବର୍ତ୍ତନର ମନ୍ଥରତା ଏବଂ ଗୁଣଗତ ପରିବର୍ତ୍ତନର ପ୍ରଖରତା, ଏସବୁ ଆପେକ୍ଷିକ । ପୂର୍ବବର୍ତ୍ତୀକାଳର ପରିମାଣଗତ କ୍ଷୁଦ୍ର ପରିବର୍ତ୍ତନମାନଙ୍କର ଶ୍ରେଣୀକରଣ ତୁଳନାରେ ଏ ଉଲ୍ଲମ୍ଫନର ବେଗ ପ୍ରଖର । ଏ ପ୍ରଖରତା କମ୍ ବା ବେଶି ହୋଇପାରେ । ତାହା ବସ୍ତୁର ପ୍ରକୃତି ତଥା ଯେଉଁ ଅବସ୍ଥାରେ ଉଲ୍ଲମ୍ଫନ ସାଧିତ ହେଉଛି ତାହା ଉପରେ ନିର୍ଭର କରେ ।

କେତେକ ପଦାର୍ଥ ଏକ ନିର୍ଦ୍ଦିଷ୍ଟ ସଙ୍କଟ-ଉତ୍ତାପ ବିନ୍ଦୁରେ ପହଞ୍ଚିଲେ ସଙ୍ଗେ ସଙ୍ଗେ ଘନ ଅବସ୍ଥାରୁ ତରଳ ଅବସ୍ଥାକୁ ଚାଲିଯାଆନ୍ତି । ଲୁହା ୧୫୩୯°, ତମ୍ବା ୧୦୮୩° ଏବଂ ସୀସା ୩୨୭.୪° ସେଣ୍ଟିଗ୍ରେଡ୍ ଉତ୍ତାପରେ ତରଳିଯାଏ । ପ୍ଲାଷ୍ଟିକ, ଜଉ ଏବଂ କାଚର କୌଣସି ନିର୍ଦ୍ଦିଷ୍ଟ ତରଳ-ବିନ୍ଦୁ ନାହିଁ । ଗରମ ହେଲେ ସେମାନେ ପ୍ରଥମେ ନରମିଯାଆନ୍ତି, ପରେ ତରଳ ଅବସ୍ଥାକୁ ଗତି କରନ୍ତି । ସେମାନଙ୍କ କ୍ଷେତ୍ରରେ ଗୁଣଗତ ପରିବର୍ତ୍ତନ ଅର୍ଥାତ୍ ଉଲ୍ଲମ୍ଫନ ଯେ ମନ୍ଥରଭାବେ ଘଟେ, ଆମେ ସେ କଥା କହିପାରୁ । ତଥାପି ତାହା ଆପେକ୍ଷିକଭାବେ ପ୍ରଖର । ଏକ ଗୁଣଗତ କ୍ରମ-ପରିବର୍ତ୍ତନ, ଯାହା ମଧ୍ୟ ଦେଇ ଏକ ପଦାର୍ଥର ଗଠନ ମୌଳିକଭାବେ ପରିବର୍ତ୍ତିତ ହୋଇଯାଏ, ଆଉ ତା ସଙ୍ଗେ ଯାହା ଏକ ଉଲ୍ଲମ୍ଫନ, ତାହାଠାରୁ ଧୀର, କ୍ରମାଗତ

ପରିମାଣଗତ ପରିବର୍ତ୍ତନ, ଯାହା ଏକ ଗୁଣଗତ ପରିବର୍ତ୍ତନକୁ ପ୍ରସ୍ତୁତ କରେ, ତାକୁ ପୃଥକଭାବେ ଦେଖିବାକୁ ହେବ ।

ସାମାଜିକ ବିକାଶରେ ପରିମାଣଗତ ଏବଂ ଉଲ୍ଲମ୍ଫନ ଭଳି ଗୁଣଗତ ପରିବର୍ତ୍ତନ ଉଭୟ ଘଟିଥାଏ । ପ୍ରକୃତି ଓ ସମାଜ ଉଭୟ କ୍ଷେତ୍ରରେ ପରିମାଣଗତ ପରିବର୍ତ୍ତନକୁ ପ୍ରକାଶ କରିବା ପାଇଁ ବିବର୍ତ୍ତନ ଶବ୍ଦ ବ୍ୟବହୃତ ହୋଇଥାଏ । ବେଳେବେଳେ ତାହା କେବଳ କ୍ରମମନ୍ଥର ପରିମାଣଗତ ପରିବର୍ତ୍ତନର ପ୍ରକାଶ ପାଇଁ ବ୍ୟବହୃତ ହୁଏ ନାହିଁ ; ବ୍ୟାପକ ଅର୍ଥରେ, ସାଧାରଣ ବିକାଶ କ୍ଷେତ୍ରରେ ଯାହା ଉଭୟ ପରିମାଣଗତ ଓ ଗୁଣଗତ ପରିବର୍ତ୍ତନକୁ ନେଇଥାଏ, ତାକୁ ପ୍ରକାଶ କରେ । ଅନେକ ସମୟରେ ଆମେ ଆଧୁନିକ ଡାରୁଇନ୍‌ବାଦର ବିବର୍ତ୍ତନ ତତ୍ତ୍ୱକୁ ଜୈବ ଜଗତର ବିବର୍ତ୍ତନର ତତ୍ତ୍ୱ ବୋଲି ବର୍ଣ୍ଣନା କରିଥାଉଁ । ତାହା ପରିମାଣଗତ ଓ ଗୁଣଗତ ପରିବର୍ତ୍ତନ ଉଭୟକୁ ବୁଝାଇଥାଏ । ସାମାଜିକ ଜୀବନରେ ଲମ୍ଫନ ସଦୃଶ ଗୁଣଗତ ପରିବର୍ତ୍ତନକୁ ବିପ୍ଳବ ଆଖ୍ୟା ଦିଆଯାଏ । ସାମାଜିକ ବିକାଶରେ ବିପ୍ଳବ ବୋଇଲେ ସର୍ବୋପରି ସାମାଜିକ ବ୍ୟବସ୍ଥାର ଗୁଣଗତ ପରିବର୍ତ୍ତନକୁ ବୁଝାଏ । କିନ୍ତୁ ସାମାଜିକ ଜୀବନର ଅନ୍ୟାନ୍ୟ କ୍ଷେତ୍ରରେ, ଯଥା : ପ୍ରଯୋଗବିଦ୍ୟା, ଉତ୍ପାଦନ, ବିଜ୍ଞାନ ଓ ସଂସ୍କୃତିରେ ମଧ୍ୟ ବିପ୍ଳବ ସଂସାଧିତ ହୁଏ ।

ବିବର୍ତ୍ତନ ଓ ବିପ୍ଳବ, ଏ ଦୁହିଁଙ୍କ ମଧ୍ୟରେ ଏକ ଆଭ୍ୟନ୍ତରୀଣ ଅପରିହାର୍ଯ୍ୟ ସମ୍ବନ୍ଧ ରହିଛି । ସମାଜର ବିବର୍ତ୍ତନମୂଳକ ବିକାଶ ଅପରିହାର୍ଯ୍ୟଭାବେ ଉଲ୍ଲମ୍ଫନ ଭଳି ଗୁଣଗତ ରୂପାନ୍ତର ଦ୍ୱାରା, ବିପ୍ଳବ ଦ୍ୱାରା ପୂର୍ଣ୍ଣତା ଲାଭ କରେ । ଗୁଣର ବୈପ୍ଳବିକ ପରିବର୍ତ୍ତନ ହେଉଛି ବିବର୍ତ୍ତନମୂଳକ ପରିବର୍ତ୍ତନର ଏକ ନୂତନ ଯୁଗର ପ୍ରାରମ୍ଭ ।

ପରିମାଣଗତରୁ ଗୁଣଗତ ପରିବର୍ତ୍ତନକୁ ଗତି ଉପରେ ପ୍ରତିଷ୍ଠିତ ବସ୍ତୁବାଦୀ ଦ୍ୱନ୍ଦର ନୀତି ମାର୍କସ୍‌ବାଦର ଦକ୍ଷିଣପନ୍ଥୀ ତଥା ବାମପନ୍ଥୀ ଶତ୍ରୁମାନଙ୍କ ବିରୁଦ୍ଧରେ ସଂଗ୍ରାମରେ ଏକ ଗୁରୁତ୍ୱପୂର୍ଣ୍ଣ ହତିଆର । ତାହା ସଂସ୍କାରବାଦ ବିରୁଦ୍ଧରେ ଉଦ୍ଦିଷ୍ଟ, କାରଣ ସଂସ୍କାରବାଦ ସମାଜବାଦୀ ବିପ୍ଳବର ଅପରିହାର୍ଯ୍ୟତାକୁ ଅସ୍ୱୀକାର କରେ ଏବଂ ସଂସ୍କାର ଜରିଆରେ ସମାଜବାଦକୁ ଯାଇହେବ,—ଅର୍ଥାତ୍ ଧୀରେମନ୍ଥରଭାବେ ପୁଞ୍ଜିବାଦ ସମାଜବାଦକୁ "ବୃଦ୍ଧି ପାଇବ" ବୋଲି ଦାବୀ କରିଥାଏ । ଅନ୍ୟ ଦିଗରେ ଦ୍ୱନ୍ଦ୍ୱ ସମସ୍ତ ଉଗ୍ର ବାମପନ୍ଥୀ ଚିନ୍ତାଧାରାର ସଂପୂର୍ଣ୍ଣ ତାତ୍ତ୍ୱିକ ଅସାରତାକୁ ପ୍ରକାଶ କରିଦିଏ, ଯେଉଁ ତତ୍ତ୍ୱ କି ଘଟଣାବଳୀର ପ୍ରାକୃତିକ ବିକାଶକୁ ଆଡ଼େଇଦିଏ, ଲୋକଙ୍କ ମଧ୍ୟରେ ଦୈନନ୍ଦିନ କାମ ଜାରି ରଖିବା, ବିପ୍ଳବଲାଗି ସେମାନଙ୍କୁ ପ୍ରସ୍ତୁତ କରିବା ଏବଂ ବୈପ୍ଳବିକ ଶକ୍ତିକୁ ସଂଗଠିତ କରିବା କାର୍ଯ୍ୟର ଗୁରୁତ୍ୱକୁ ନ୍ୟୂନ କରେ ।

## ବିକାଶର ଅଧିବିଦ୍ୟାବାଦୀ ଧାରଣା ବିରୁଦ୍ଧରେ

ପ୍ରକୃତି ସମ୍ପର୍କରେ ଅଧିବିଦ୍ୟାବାଦୀ ଦୃଷ୍ଟିକୋଣ, ଯାହା ବିକାଶକୁ ଅସ୍ୱୀକାର କରେ, ତାକୁ ପ୍ରତିହତ କରିବା କାର୍ଯ୍ୟ କରିଆରେ ମାର୍କ୍ସ୍ ଓ ଏଙ୍ଗେଲ୍ସ ବସ୍ତୁବାଦୀ ଦ୍ୱନ୍ଦ୍ୱ ସୃଷ୍ଟି କରିଥିଲେ । ତା ପରଠାରୁ ଅବସ୍ଥାର ପରିବର୍ତ୍ତନ ଘଟିଛି । ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ବିକାଶର ଭାବନା ( ବିଶେଷତଃ ଡାରୁଇନଙ୍କ ତତ୍ତ୍ୱ ଯୋଗୁଁ ) ଯଥେଷ୍ଟ ପ୍ରସାର ଲାଭ କରିଥିଲା । ତେବେ ବି ଅଧିବିଦ୍ୟାବାଦୀ ଦୃଷ୍ଟିକୋଣର ବିଲୋପ ଘଟି ନ ଥିଲା । ତାହା ସେଇ ବିକାଶ ସମ୍ପର୍କରେ ଏକ ବିକୃତ, ଏକଦେଶଦର୍ଶୀ ଧାରଣାର ରୂପ ଗ୍ରହଣ କଲା । ବିକାଶକୁ କିଭଳି ବୁଝିବାକୁ ହେବ, ସେଇଥିପାଇଁ ଅଧିବିଦ୍ୟା ବିରୋଧରେ ଦ୍ୱନ୍ଦ୍ୱର ବର୍ତ୍ତମାନ ସଂଗ୍ରାମ ; ବିକାଶ ଘଟୁଛି କି ନାହିଁ ସେଥିପାଇଁ ନୁହେଁ ।

ବିକାଶର ବିଭିନ୍ନ ଅଧିବିଦ୍ୟାବାଦୀ ଧାରଣାରୁ ଗୋଟିଏ ହେଲା ଏହି ଯେ ପ୍ରକୃତି ପୁରାପୁରି ଛେଦ, କ୍ରମମନ୍ଥର, ଧାରାବାହିକ ପରିମାଣଗତ ପରିବର୍ତ୍ତନ ଦ୍ୱାରା ବିବର୍ତ୍ତିତ କରିଆରେ ବିକାଶ ଲଭୁଛି । ତାହା ତୀକ୍ଷ୍ଣ ଗୁଣଗତ ପରିବର୍ତ୍ତନ, ଲମ୍ଫକୁ ସ୍ୱୀକାର କରେ ନାହିଁ । ଉକ୍ତ ମତର ସମର୍ଥକମାନେ କହିଥାନ୍ତି, "ପ୍ରକୃତି ଲମ୍ଫ ଦେଇ ଗତି କରେନାହିଁ ।" ଯେହେତୁ ସେମାନେ ବିକାଶ ମଧ୍ୟରେ ବିବର୍ତ୍ତନ ବ୍ୟତୀତ ଅନ୍ୟ କିଛି ଦେଖନ୍ତି ନାହିଁ, ସେମାନଙ୍କୁ "ଜୀର୍ଣ୍ଣ ବିବର୍ତ୍ତନବାଦୀ" କୁହାଯାଏ । ଊନବିଂଶ ଶତାବ୍ଦୀର ଶେଷଭାଗର ଇଂରେଜ ଦାର୍ଶନିକ ଓ ସମାଜବିଜ୍ଞାନୀ ହର୍ବର୍ଟ ସ୍ପେନସର ଏଇ "ଜୀର୍ଣ୍ଣ ବିବର୍ତ୍ତନବାଦୀ" ଗୋଷ୍ଠୀ ପ୍ରତିଷ୍ଠା କରିଥିଲେ ।

ସ୍ପେନସରଙ୍କ ମତ ଅନୁସାରେ ବିକାଶ ସରଳ ସ୍ୱଚ୍ଛନ୍ଦଭାବେ, ତା'ର କ୍ରମ-ମନ୍ଥରତାରେ ସାମାନ୍ୟ ବ୍ୟତିକ୍ରମ ବିନା, କେବଳ ମାତ୍ର ଉପାଦାନମାନଙ୍କର ପରିମାଣ-ଗତ ସଂଯୋଗ ଦ୍ୱାରା ଘଟିଥାଏ । ବିବର୍ତ୍ତନ ପ୍ରକ୍ରିୟାର ସ୍ତରରେ କୌଣସି ଗୁଣଗତ ପରିବର୍ତ୍ତନ ଘଟେ ନାହିଁ ; କେବଳ ପରିମାଣଗତ ପାର୍ଥକ୍ୟ ଘଟିଥାଏ ।

ସ୍ପେନ୍ସରଙ୍କ "ଜୀର୍ଣ୍ଣ ବିବର୍ତ୍ତନବାଦ" ତତ୍ତ୍ୱ ଦର୍ଶନ ଓ ପ୍ରକୃତିବିଜ୍ଞାନରେ ବହୁ ଦୃଷ୍ଟିବାଦୀ ଚିନ୍ତାଧାରାକୁ ବିଶେଷଭାବେ ପ୍ରଭାବିତ କରିଥିଲା । ଅନେକ ବୁର୍ଜୁଆ ଓ ସଂଶୋଧନବାଦୀ ତାତ୍ତ୍ୱିକ ଏହାକୁ ଗ୍ରହଣ କରି ତାକୁ ମାର୍କସ୍‌ବାଦୀ ବସ୍ତୁବାଦୀ ଦ୍ୱନ୍ଦ୍ୱ ବିରୁଦ୍ଧରେ, ସର୍ବହରା ବିପ୍ଳବ ସମ୍ପର୍କରେ ମାର୍କ୍ସ୍ ଓ ଏଙ୍ଗେଲ୍ସଙ୍କ ଶିକ୍ଷା ବିରୁଦ୍ଧରେ ବ୍ୟବହାର କରିଥିଲେ ।

"ଜୀର୍ଣ୍ଣ ବିବର୍ତ୍ତନବାଦ"ର ସୁସ୍ପଷ୍ଟ ପ୍ରତାରଣା ଏବଂ ଘଟଣାବଳୀ ସହିତ ତା'ର ଅସଙ୍ଗତି ଯୋଗୁଁ ବିକାଶର ଆଉ ଏକ ଧାରଣା ଉଦ୍ଭବ ହେବା ସମ୍ଭବ ହେଲା । ବାହ୍ୟତଃ

ଏଇ ଧାରଣା "ଜୀର୍ଣ୍ଣ ବିବର୍ତ୍ତନବାଦର" ଠିକ୍ ଓଲଟା, ହେଲେ ତା'ର ଭଳି ଏକଦେଶଦର୍ଶୀ ଓ ଅଧିବିଦ୍ୟାବାଦୀ । ତାହା ହେଉଛି ତଥାକଥିତ "ସୃଜନଶୀଳ ବିବର୍ତ୍ତନ" ତତ୍ତ୍ୱ, ଯାହାକି ବିଂଶ ଶତାବ୍ଦୀରେ ଗୋଟାଏ ଫେସନ ହୋଇଥିଲା ।

"ଜୀର୍ଣ୍ଣ ବିବର୍ତ୍ତନବାଦ"ର ସମର୍ଥକମାନେ ବିକାଶ ମଧ୍ୟରେ କେବଳ ପରିମାଣଗତ ପରିବର୍ତ୍ତନ ଦେଖୁଥିଲେ; ଆଉ "ସୃଜନଶୀଳ ବିବର୍ତ୍ତନ"ର ସମର୍ଥକମାନେ ଗୁଣଗତ ପରିବର୍ତ୍ତନ ବ୍ୟତୀତ ଅନ୍ୟ କିଛି ଦେଖୁ ନ ଥିଲେ । ସେମାନେ ଜୋର ଦେଇ କହୁଥିଲେ ଯେ ବିକାଶ ହେଲା "ସୃଜନଶୀଳ" ଏବଂ ତାହା ନୂତନ ରୂପର ଉଦ୍ଭବ ନେଇ ଗଠିତ । କିନ୍ତୁ ସେମାନେ ଏଇସବୁ ଗୁଣଗତ ପରିବର୍ତ୍ତନ ଏବଂ ପୂର୍ବର ପରିମାଣଗତ କ୍ରମିକ ପରିବର୍ତ୍ତନ ମଧ୍ୟରେ ଥିବା ବାଧ୍ୟତାମୂଳକ ସମ୍ବନ୍ଧକୁ ଦେଖୁ ନ ଥିଲେ । ସେମାନେ ଦାବୀ କରୁଥିଲେ ଯେ ବିକାଶର ପ୍ରକ୍ରିୟା ମଧ୍ୟରେ ନୂତନତାର ଉଦ୍ଭବକୁ ପ୍ରାକୃତିକ କାରଣରେ କାର୍ଯ୍ୟ ଦ୍ୱାରା ବ୍ୟାଖ୍ୟା କରାଯାଇ ନ ପାରେ । ତା'ର ଏକମାତ୍ର ସମ୍ଭବପର ବ୍ୟାଖ୍ୟା ହେଉଛି ଏକ ଆଧ୍ୟାତ୍ମିକ କିସମର କୌଣସି ରହସ୍ୟମୟ "ସୃଜନଶୀଳ ଶକ୍ତି" । ତାହାହିଁ ବିକାଶକୁ ନିୟନ୍ତ୍ରିତ କରେ ଏବଂ ନୂତନ ରୂପକୁ ଜନ୍ମ ଦିଏ ।

ଅତଏବ "ସୃଜନଶୀଳ ବିବର୍ତ୍ତନ"ର ଏଇ ନୂତନ ତତ୍ତ୍ୱ ସେଇ ପୁରୁଣା "ଈଶ୍ୱର" ଧାରଣା ଆଡ଼କୁ ଘେନିଯାଏ ଏବଂ ତଦ୍ଦ୍ୱାରା ଆପଣାର ବିଜ୍ଞାନବିରୋଧୀ ଚରିତ୍ର ପରିଷ୍କାରଭାବେ ପଦାରେ ପକାଇଦିଏ ।

ପ୍ରକୃତ ବୈଜ୍ଞାନିକ ଦ୍ୱନ୍ଦ୍ୱମୂଳକ ଧାରଣା, ଯାହା କ୍ରମମନ୍ଥର ପରିମାଣଗତ ପରିବର୍ତ୍ତନ ଏବଂ ଲମ୍ଫନ ଭଳି ଗୁଣଗତ ପରିବର୍ତ୍ତନ ଉଭୟକୁ ସ୍ୱୀକାର କରେ, ତାହା ବିକାଶର ଏଇ ଅଧିବିଦ୍ୟାବାଦୀ ଧାରଣାର ବିରୋଧୀ ।

## (ଗ) ବୈପରୀତ୍ୟମାନଙ୍କରେ ବିଗ୍ରହହିଁ ବିକାଶର ପ୍ରଧାନ ଉତ୍ସ

ପରିମାଣଗତ କ୍ରମିକ ପରିବର୍ତ୍ତନର ଏକ ନିର୍ଦ୍ଦିଷ୍ଟ ଅବସ୍ଥାରେ ପୁରାତନ ଗୁଣରୁ ନୂତନ ଗୁଣକୁ ଗମନ ଯେ ବିକାଶର ପ୍ରକ୍ରିୟା, ତାହା ଆମେ ଦେଖିଲୁଁ ।

କିନ୍ତୁ ଏ ସମସ୍ତ ବିକାଶର ମୂଳ କେଉଁଠି ? ତା'ର କ୍ରିୟାଶକ୍ତିର ଉତ୍ସ କ'ଣ ? ଏଇ ପ୍ରଶ୍ନର ମୀମାଂସା କରିବା ବସ୍ତୁବାଦୀ ଦ୍ୱନ୍ଦ୍ୱର ସର୍ବପ୍ରଧାନ କର୍ତ୍ତବ୍ୟ । ସମସ୍ତ ବାସ୍ତବତାର ପ୍ରକୃତ ପରିସ୍ପରବିରୋଧୀ—ଏହାହିଁ ଏ ପ୍ରଶ୍ନର ମୀମାଂସାର ମୂଳ ଉତ୍ସ ।

ଦ୍ୱନ୍ଦବାଦର ଇତିହାସର ଦୃଷ୍ଟାନ୍ତ

ଅତି ପ୍ରାଚୀନ କାଳରେ ସୁଦ୍ଧା ଲୋକେ ଦେଖିଥିଲେ ଯେ, ଏହି ବାହ୍ୟ ବସ୍ତୁ-ଜଗତର ଅପରସୀମ ବୈଚିତ୍ର୍ୟ ମଧ୍ୟରେ ବିରୋଧୀ ଶକ୍ତି, ପ୍ରକୃତି, ଧାରଣା ଏବଂ ବୈଶିଷ୍ଟ୍ୟ-ମାନ ଅତି ପରିଷ୍କାରଭାବେ ପରିସ୍ଫୁଟ, ଏବଂ ସେମାନେ ଅତି ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରନ୍ତି । ସେମାନେ ପୁଣି ଦେଖିଥିଲେ ଯେ ଏଇସବୁ ବିରୋଧ କେବଳ ପାଖା-ପାଖିଭାବେ ସହଅବସ୍ଥାନ କରୁଥିଲେ । ସେତିକି ନୁହଁ, ସେମାନେ ମଧ୍ୟ ପରସ୍ପର ସହିତ ସଂଯୁକ୍ତ । ଗୋଟିଏ ମାତ୍ର ପଦାର୍ଥ ବା ପ୍ରପଞ୍ଚ ମଧ୍ୟରୁ ସେମାନଙ୍କର ଉଦ୍‌ଭବ, ଏବଂ ସେମାନେ ଗୋଟିଏ ମାତ୍ର ପଦାର୍ଥ ବା ପ୍ରକ୍ରିୟାର ବିଭିନ୍ନ ଦିଗ ।

ପଦାର୍ଥମାନଙ୍କ ଗଠନରେ କେଉଁ ବୈପରୀତ୍ୟମାନ ନିୟୋଜିତ ହୁଏ ତାକୁ ବୁଝିବା ଦ୍ୱାରା ହିଁ ପଦାର୍ଥମାନଙ୍କର ସୃଷ୍ଟି ଓ ଅବସ୍ଥିତିର ଯେ ବ୍ୟାଖ୍ୟା କରାଯାଇପାରେ ଏହି ମତ, ପ୍ରାଚୀନ ଚୀନ, ଭାରତ, ଗ୍ରୀସ୍ ଓ ଅନ୍ୟାନ୍ୟ ବହୁ ଦେଶର ଦାର୍ଶନିକମାନେ ପୋଷଣ କରୁଥିଲେ । ସେ ସମୟରେ ଉଷ୍ମ ଆଉ ଶୀତଳ, ଶୁଷ୍କ ଆଉ ଆର୍ଦ୍ର, ଶୂନ୍ୟ ଓ ପୂର୍ଣ୍ଣ, ସତ୍ତା ଓ ନିସତ୍ତା ଇତ୍ୟାଦିକୁ ଏଇପରି ସବୁ ବୈପରୀତ୍ୟ ବୋଲି ଜ୍ଞାନ କରାଯାଉଥିଲା ।

ବିପରୀତମାନଙ୍କର ସଂଘର୍ଷ ହେଉଛି ପରିବର୍ତ୍ତନରେ କିମ୍ବା ଶକ୍ତିର ଉତ୍ସ ଏହି ଧାରଣା ଅତି ପ୍ରାଚୀନ କାଳରେ ମଧ୍ୟ ପ୍ରକାଶ ପାଇଥିଲା । ତେଣୁ ପ୍ରାଚୀନ ଗ୍ରୀସର ଦାର୍ଶନିକ ହେରାକ୍ଲିଟସ ଶିକ୍ଷା ଦେଉଥିଲେ ଯେ "ସଂଗ୍ରାମ ମଧ୍ୟରୁ ପ୍ରତ୍ୟେକ ଜିନିଷର ଉତ୍ପତ୍ତି," ସଂଗ୍ରାମ ହେଉଛି ସମସ୍ତ ପଦାର୍ଥର ମୂଳ ଉତ୍ସ ବା "ଜନକ" । ପ୍ରାଚୀନ ଦ୍ୱନ୍ଦବାଦୀମାନେ ଆଉ ମଧ୍ୟ ଲକ୍ଷ୍ୟ କରିଥିଲେ ଯେ ବିପରୀତମାନ ଅଚଳ ଅପରିବର୍ତ୍ତନୀୟ ନୁହନ୍ତି ; ସେମାନେ ଆପେକ୍ଷିକ, ସେମାନେ ପରସ୍ପରଠାରୁ କେବଳ କେତେକ ଅର୍ଥରେ ପୃଥକ୍ ; କୌଣସି ଅବସ୍ଥାରେ ଏକ ଅନ୍ୟ ଏକରେ ପରିଣତ ହୁଏ ଏବଂ ଅନ୍ୟ ଏକ ଏକରେ ରୂପାନ୍ତରିତ ହୋଇଥାଏ । ଏଗୁଡ଼ିକ ମୁଖ୍ୟତଃ ଚମତ୍କାର ଅନୁମାନ ମାତ୍ର, ଯଦିଓ ବହୁସମୟରେ ଅତି ସରଳ ଭାବରେ ତାହା ପ୍ରକାଶ ପାଇଥାଏ ।

ସାମନ୍ତବାଦୀ ସମାଜରେ ଯେତେବେଳେ ପ୍ରକୃତିର ସମସ୍ତ ସ୍ୱାଧୀନ ଅଧ୍ୟୟନ ଓ ଗବେଷଣା ଗୀର୍ଜା ଓ ଧର୍ମ ଦ୍ୱାରା ଦଣ୍ଡିତ ଓ ନିର୍ଯ୍ୟାତିତ ହେଲା, ସେତେବେଳେ ବିପରୀତମାନଙ୍କର ଏକତା ଏବଂ ସଂଘର୍ଷର ଧାରଣା ବିସ୍ମୃତି ଗର୍ଭରେ ଲୀନ ହୋଇଗଲା । ପୁଞ୍ଜିବାଦୀ ସମାଜର ଆବିର୍ଭାବ ପରେ ବିପରୀତମାନଙ୍କ ପ୍ରଶ୍ନ ପୁଣି ଦୃଷ୍ଟି ଆକର୍ଷଣ କଲା । ଏନ୍. କୁଜାନସ୍ (ପଞ୍ଚଦଶ ଶତାବ୍ଦୀ) ଏବଂ ଗିଓର୍ଡାନୋ ବ୍ରୁନୋଙ୍କ (ଷୋଡ଼ଶ ଶତାବ୍ଦୀ) ଭଳି ସୁପ୍ରସିଦ୍ଧ ଚିନ୍ତାଶୀଳ ମନୀଷୀମାନେ ଶିକ୍ଷା ଦେଲେ ଯେ, ଯେଉଁଠି ସାଧାରଣ ଚେତନା କେବଳ ସାମଞ୍ଜସ୍ୟହୀନ ବୈପରୀତ୍ୟକୁ ଦେଖେ (ଅସୀମ-ସସୀମ, ସିଧା-ବଙ୍କା

ଇତ୍ୟାଦି) ସେଠାରେ ଅଧିକ ଗଭୀର ଚେତନା "ବିପରୀତମାନଙ୍କର ମିଳନ" **ଅଥବା** ଐକ୍ୟ ଦେଖିପାରେ ।

ଯନ୍ତ୍ରବିଦ୍ୟାବାଦୀ ପ୍ରକୃତିବିଜ୍ଞାନ, ଯାହା ସପ୍ତଦଶ ଓ ଅଷ୍ଟାଦଶ ଶତାବ୍ଦୀରେ ପ୍ରଚଳିତ ଥିଲା, ତାହା ଦ୍ୱନ୍ଦ୍ୱର ବିକାଶକୁ, ବିଶେଷଭାବେ, ବୈପରୀତ୍ୟ ମତବାଦକୁ ପସନ୍ଦ କରୁ ନ ଥିଲା । ତେବେ ସେ ସମୟରେ ସୁଦ୍ଧା ଗଭୀର ଅନ୍ତର୍ଦୃଷ୍ଟିସମ୍ପନ୍ନ ଚିନ୍ତାଶୀଳ ମନୀଷୀଗଣ, ଯେଉଁମାନେ ତୀବ୍ର ସଙ୍ଘର୍ଷ ଓ ବିରୋଧିତାରେ ପରିପୂର୍ଣ୍ଣ ପ୍ରାକ୍‌ବିପ୍ଳବ ଯୁଗର ସମ୍ବନ୍ଧ ଓ ଘଟଣାବଳୀକୁ ଲକ୍ଷ୍ୟ କରୁଥିଲେ, ସେମାନେ ଇତିହାସ ଓ ସାମାଜିକ ଜୀବନରେ, ବୈପରୀତ୍ୟର ତାତ୍ପର୍ଯ୍ୟ ସମ୍ପର୍କରେ ସୁଦୂରପ୍ରସାରୀ ବିଚାର ପ୍ରକାଶ କରିଥିଲେ । (ଉଦାହରଣ ପାଇଁ ଦିଦେରତଙ୍କ "ରାମିଉ ନେଫିଉ" ଅଥବା ରୁସୋଙ୍କ କୃତ "ଦି ଅରିଜନ ଏଣ୍ଡ ଦି ଗ୍ରାଉଣ୍ଡସ୍ ଅଫ ଇନଇକୁଆଲିଟି" ଦେଖନ୍ତୁ)

ଅଷ୍ଟାଦଶ ଶତାବ୍ଦୀର ଶେଷ ଏବଂ ଊନବିଂଶ ଶତାବ୍ଦୀର ପ୍ରାରମ୍ଭରେ ବିପରୀତ-ମାନଙ୍କର ତାତ୍ପର୍ଯ୍ୟ ବହୁ ଜର୍ମାନ ଦାର୍ଶନିକଙ୍କ ଦୃଷ୍ଟି ଆକର୍ଷଣ କରିଥିଲା ଏବଂ ହେଗେଲ୍‌ଙ୍କ ପକ୍ଷରେ ତାଙ୍କ ଦର୍ଶନର ତାହା ଏକ ମୌଳିକ ନୀତି ହୋଇଥିଲା । ବିକାଶର ପ୍ରକ୍ରିୟାକୁ ହେଗେଲ, ବିପରୀତମାନଙ୍କ ଆତ୍ମପ୍ରକାଶ ମାଧ୍ୟମରେ ଗୋଟିଏ ଏକତ୍ୱରୁ ଅନ୍ୟ ଗୋଟିଏ ନୂତନ ଏକତ୍ୱକୁ ଗତି ଭାବରେ, କୌଣସି ପଦାର୍ଥ ବା ପ୍ରପଞ୍ଚରୁ ତାହାର ବିପରୀତକୁ ଗତିଭାବେ ଚିନ୍ତା କରିଥିଲେ । ଏକ ପ୍ରପଞ୍ଚ ଭିତରେ ଥିବା ବିପରୀତ ଦିଗଗୁଡ଼ିକର ମିଳନକୁ ତାହାର "ବିରୋଧୀ" ବୋଲି ସେ କହୁଥିଲେ । କିନ୍ତୁ ସେ ଭାବବାଦୀ ହୋଇଥିବା ହେତୁ, ବାସ୍ତବତାର ବିରୋଧିତାକୁ ପରମ ଭାବରେ ଯୁକ୍ତିସଙ୍ଗତ ବିକାଶ ମାର୍ଗରେ ବିରୋଧିତା ବୋଲି ସେ ବିଚାର କରୁଥିଲେ ।

ମାର୍କ୍‌ସ୍‌ବାଦର ପ୍ରତିଷ୍ଠାତାମାନେ, ଯେଉଁମାନେ କି ହେଗେଲୀୟ ଦ୍ୱନ୍ଦ୍ୱକୁ ବସ୍ତୁ-ମୂଳକଭାବେ ପୁନର୍ଗଠିତ କରିଥିଲେ, ସେମାନେ "ବିରୋଧିତା" ଶବ୍ଦକୁ କାଏମ ରଖିଲେ ; କିନ୍ତୁ ତାହାକୁ ଏକ ସ୍ୱତନ୍ତ୍ର ବସ୍ତୁଗତ ଅର୍ଥ ପ୍ରଦାନ କରିଥିଲେ ।

## ଦ୍ୱନ୍ଦ୍ୱମୂଳକ ବିରୋଧିତା ଓ ତାହାର ବିଶ୍ୱଜନୀନ ଚରିତ୍ର

ଦ୍ୱନ୍ଦ୍ୱମୂଳକ ବିରୋଧିତା ବୋଇଲେ, ମାର୍କ୍‌ସ୍‌ବାଦ, ଏକ ପ୍ରପଞ୍ଚ ବା ପ୍ରକ୍ରିୟା ମଧ୍ୟରେ ପରସ୍ପରବିରୋଧୀ ପରସ୍ପର ପରିବର୍ତ୍ତନଶୀଳ ଦିଗଗୁଡ଼ିକର ଉପସ୍ଥିତିକୁ ବୁଝିଥାଏ ; ପୁଣି ସେମାନେ ( ସେଇ ଦିଗଗୁଡ଼ିକ ) ପରସ୍ପର ବହିଃସ୍ଥ ପୂର୍ବରୁ ଅନୁମାନ କରିନେଇଥାନ୍ତି ଏବଂ ନିର୍ଦ୍ଦିଷ୍ଟ ପ୍ରପଞ୍ଚର ପରିଧି ମଧ୍ୟରେ ହିଁ ପରସ୍ପର ସମ୍ବନ୍ଧଶୀଳ ଭାବରେ ରହନ୍ତି ।

ପ୍ରାଚୀନ ଦ୍ୱନ୍ଦବାଦୀମାନଙ୍କ ପକ୍ଷରେ ବୈପରୀତ୍ୟର ମାତ୍ର ଓ ସେମାନଙ୍କ 'ମିଳନ', ବାସ୍ତବତାର ଆଶୁ ପ୍ରତ୍ୟକ୍ଷ ଉପରେ ପ୍ରତିଷ୍ଠିତ ଏକ ଅନୁମାନ ଏବଂ ସେ ସମ୍ପର୍କୀୟ ଭାବନା ବ୍ୟତୀତ ଅନ୍ୟ କିଛି ନ ଥିଲା । କିନ୍ତୁ ମାର୍କସ୍‌ବାଦୀମାନଙ୍କ ପାଇଁ ଦ୍ୱନ୍ଦ ହେଉଛି ବାସ୍ତବତାର ସମସ୍ତ କ୍ଷେତ୍ରର ଅନୁସନ୍ଧାନ ଫଳରେ ବିଜ୍ଞାନ ଦ୍ୱାରା ପୁଞ୍ଜୀଭୂତ ତଥ୍ୟାବଳୀରୁ ନିଃସୃତ ଏକ ସିଦ୍ଧାନ୍ତ ।

ବାସ୍ତବିକ, ପ୍ରକୃତିର ପ୍ରପଞ୍ଚ, ସାମାଜିକ ସମ୍ପର୍କ କିମ୍ବା ମନୁଷ୍ୟର ମାନସିକ କ୍ରିୟାର ଅଧ୍ୟୟନ ବିରୋଧିତା ପ୍ରକାଶ କରେ, ଅର୍ଥାତ୍ ପରସ୍ପରବିରୋଧୀ ଦିଗ ଓ ପ୍ରବୃତ୍ତିମାନଙ୍କୁ ପ୍ରକଟିତ କରିଥାଏ ।

ଯେତେବେଳଯାଏ ଆମେ କୌଣସି ପଦାର୍ଥକୁ ଏକ ସ୍ଥିର ଓ ଅଚଳ ଅବସ୍ଥାରେ ରଖି ପରୀକ୍ଷା କରୁଁ, ଆମେ ତା ଭିତରେ ତା'ର ବିଭିନ୍ନ ରୂପ ଓ ବୈଶିଷ୍ଟ୍ୟ ହିଁ କେବଳ ଦେଖିଥାଉଁ ଏବଂ ବିପରୀତମାନଙ୍କ "ସଂଘର୍ଷ"କୁ ଆମେ ଗ୍ରହଣ କରିପାରୁଁ, ଯା' ଫଳରେ କୌଣସି ପ୍ରକାର ବିରୋଧିତା ଦେଖିବାରେ ଆମେ ଅସମର୍ଥ ହେଉଁ । କିନ୍ତୁ ଯେଉଁ ମୁହୂର୍ତ୍ତରେ ଆମେ କୌଣସି ପଦାର୍ଥର ଗତି, ଇଷତ୍ ପରିବର୍ତ୍ତନ ଓ ବିକାଶକୁ ଅନୁଧ୍ୟାନ କରିବାକୁ ଚେଷ୍ଟା କରୁଁ, ଆମେ ସେଇ ମୁହୂର୍ତ୍ତରେ ତା ଭିତରେ ଥିବା ପରସ୍ପର-ବିରୋଧୀ ଦିଗ ଓ ପ୍ରକ୍ରିୟାମାନଙ୍କୁ ଜାଣିପାରୁଁ ।

ଦୃଷ୍ଟାନ୍ତସ୍ୱରୂପ, ଯେତେବେଳେ ଆମେ କୌଣସି ଉଦ୍ଭିଦ ବା ପଶୁ ଜୀବକୋଷର ସ୍ଲାଇଡ୍‌କୁ ଅଣୁବୀକ୍ଷଣ ଯନ୍ତ୍ର ସାହାଯ୍ୟରେ ପରୀକ୍ଷା କରୁଁ ସେତେବେଳେ ଆମେ ସେମାନଙ୍କ ଗଠନ—କୋଷ ପ୍ରାଚୀର, କେନ୍ଦ୍ରୀୟ ଅଂଶ, ପ୍ରାଣକେନ୍ଦ୍ର ଉପାଦାନ ଇତ୍ୟାଦି—ଛଡ଼ା ଅନ୍ୟ କିଛି ଦେଖୁ ନାହିଁ । କିନ୍ତୁ ଆମେ ଯଦି ଏକ ଜୀବନ୍ତ ଜୀବକୋଷକୁ ଲକ୍ଷ୍ୟ କରୁଁ, ତେବେ ଆମେ ତା ଭିତରେ ସମ୍ମିଶ୍ରଣ ଓ ବିମିଶ୍ରଣର ପରସ୍ପର ବିପରୀତ ପ୍ରକ୍ରିୟାମାନଙ୍କୁ ଦେଖିପାରିବା, ତା'ର ଗଠନକାରୀ ଅଂଶମାନଙ୍କର ବୃଦ୍ଧି ଓ କ୍ଷୟ ଲକ୍ଷ୍ୟ କରିବା ।

ବୈପରୀତ୍ୟ ଏବଂ ବିରୋଧିତା ବିଜ୍ଞାନର ପ୍ରତ୍ୟେକ କ୍ଷେତ୍ରରେ ଦେଖାଯାଏ । ଗଣିତବିଦ୍ୟା ଯୋଗ ଓ ବିଯୋଗ, ପୃଥକୀକରଣ ଓ ଅଖଣ୍ଡୀକରଣ ଆଦି ପରସ୍ପର ବିପରୀତ କ୍ରିୟାର ଚର୍ଚ୍ଚା କରେ । ଯନ୍ତ୍ରବିଦ୍ୟାରେ କ୍ରିୟା ଓ ପ୍ରତିକ୍ରିୟା, ଆକର୍ଷଣ ଓ ବିକର୍ଷଣ ଏବଂ ପଦାର୍ଥ ବିଦ୍ୟାରେ ପଜିଟିଭ୍ ଓ ନେଗେଟିଭ୍ ବିଦ୍ୟୁତ ସଞ୍ଚାର ଭଳି ପରସ୍ପର ବିପରୀତ କ୍ରିୟାର ଚର୍ଚ୍ଚା ହୁଏ । ସେଇଭଳି ରସାୟନବିଦ୍ୟାରେ ଅଣୁମାନଙ୍କର ମିଳନ ଓ ବିଚ୍ଛେଦ, ଶରୀରବିଦ୍ୟାର ସ୍ନାୟୁପ୍ରଣାଳୀ ମଧ୍ୟରେ ମସ୍ତିଷ୍କର ଉଦ୍‌ବିଗ୍ନତା ଓ ନିରୁଦ୍‌ବେଗତା, ସମାଜ ବିଜ୍ଞାନରେ ଶ୍ରେଣୀସଂଘର୍ଷ ତଥା ଅନ୍ୟ ଅନେକ ପରସ୍ପର ବୈପରୀତ୍ୟ ଦେଖାଯାଏ । ଫଳରେ ବିରୁଦ୍ଧାତ୍ମକତା ପ୍ରକାଶ ପାଏ ।

ମନୁଷ୍ୟର ଚିନ୍ତା ଓ ଅବଧାରଣ ମଧ୍ୟ ଏଇ ଦ୍ୱନ୍ଦ୍ୱମୂଳକ ବିରୁଦ୍ଧାତ୍ମକତା ଦ୍ୱାରା ନିୟନ୍ତ୍ରିତ । ଦୃଷ୍ଟାନ୍ତସ୍ୱରୂପ, ଆମେ ଅବଧାରଣ ପ୍ରକ୍ରିୟା ମଧ୍ୟରେ ପରସ୍ପରବିରୋଧୀ ଦୃଷ୍ଟିକୋଣର କ୍ରମାଗତ ସଂଘର୍ଷ ଦେଖୁଁ, ପୁରାତନ ତତ୍ତ୍ୱ ଏବଂ ନୂତନ ଘଟଣାବଳୀ ଆଦି ମଧ୍ୟରେ ବିରୁଦ୍ଧାତ୍ମକତା ଲକ୍ଷ୍ୟ କରିଥାଉଁ ।

## ବୈପରୀତ୍ୟମାନଙ୍କର ସଂଗ୍ରାମ ହିଁ ବିକାଶ

ବିକାଶର ପ୍ରକ୍ରିୟା ବିଶ୍ଳେଷଣ କରିବାରେ, ବିରୋଧିତାର ଧାରଣା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ପ୍ରକୃତି, ସାମାଜିକ ଜୀବନ ଏବଂ ମାନବିକ ଚିନ୍ତାରେ ବିକାଶର ପ୍ରକ୍ରିୟା ଏପରିଭାବେ ଘଟିଥାଏ ଯଦ୍ଦ୍ୱାରା କୌଣସି ବିଷୟ ମଧ୍ୟରେ ପରସ୍ପର ବୈପରୀତ୍ୟ, ପରସ୍ପର ବର୍ଜନଶୀଳ ଦିଗ ବା ପ୍ରବୃତ୍ତିଗୁଡ଼ିକ ଆପଣାଛାଏଁ ପ୍ରକଟିତ ହୁଅନ୍ତି । ସେମାନେ ଏକ "ସଂଗ୍ରାମରେ" ପ୍ରବେଶ କରନ୍ତି, ପୁରାତନ ରୂପର ଧ୍ୱଂସ ଏବଂ ନୂତନ ରୂପର ଉଦ୍ଭବରେ ତା'ର ପରିସମାପ୍ତି ଘଟିଥାଏ । ଏଇ ହେଉଛି ବିକାଶର ନିୟମ । ଲେନିନ୍ ଲେଖିଥିଲେ, "ବିକାଶ ହେଉଛି ବୈପରୀତ୍ୟମାନଙ୍କର 'ସଂଗ୍ରାମ' ।"

ଏଇ ସିଦ୍ଧାନ୍ତକୁ ଅତି ସରଳ ବୋଲି ବୁଝିବା ଯୁକ୍ତିସଂଗତ ହେବ ନାହିଁ । ବିପରୀତମାନଙ୍କର ସଂଗ୍ରାମ ପ୍ରତ୍ୟକ୍ଷ ଓ ଆକ୍ଷରିକ ଅର୍ଥରେ ମୁଖ୍ୟତଃ ମନୁଷ୍ୟସମାଜ ମଧ୍ୟରେ ଘଟିଥାଏ । ସେଇ ଆକ୍ଷରିକ ଅର୍ଥରେ, ଜୈବ ଜଗତରେ ସଂଗ୍ରାମ କଥା କହିବା ସବୁବେଳେ କଦାପି ସମ୍ଭବ ନୁହେଁ । ଅଜୈବ ପ୍ରକୃତି ସଂପର୍କରେ ଏଇ ଆକ୍ଷରିକ ଅର୍ଥ ଆହୁରି କମ୍ ପ୍ରଯୋଜ୍ୟ । ସେହି କାରଣରୁ ଲେନିନ୍ ସେ ଶବ୍ଦକୁ ଉଦ୍ଧୃତି ଭିତରେ ରଖିଥିଲେ । ବିପରୀତମାନଙ୍କ ସଂଗ୍ରାମ ବିଷୟରେ ଏକ ନିର୍ଭୁଲ ଧାରଣା ନିମନ୍ତେ ପ୍ରୟୋଗର ଏ ସୀମାବଦ୍ଧତା ଆବଶ୍ୟକ ।

କୌଣସି ଏକତ୍ୱକୁ ବିପରୀତମାନଙ୍କରେ ଭାଗ-ଭାଗ କରିବା ଏବଂ ସେଇ ବିପରୀତଗୁଡ଼ିକର ପାରସ୍ପରିକ ପ୍ରତିକୂଳ କ୍ରିୟା ବା "ସଂଗ୍ରାମ" ହେଉଛି ଦ୍ୱନ୍ଦ୍ୱବାଦର ଅତି ମୌଳିକ ଓ ବିଶ୍ୱଜନୀନ ନିୟମ । ଲେନିନ୍ ଦୃଢ଼ଭାବେ କହିଥିଲେ ଯେ ଏକତ୍ୱର ଏଇ ବିଭାଗ ଏବଂ ତା'ର ବିରୁଦ୍ଧାତ୍ମକ ଅଂଶମାନଙ୍କର ଅବଧାରଣ ହେଉଛି ଦ୍ୱନ୍ଦ୍ୱବାଦର ଅତି ମୌଳିକ ରୂପମାନଙ୍କ ମଧ୍ୟରେ ଅନ୍ୟତମ । ବାସ୍ତବରେ ଏହା ହିଁ "ଦ୍ୱନ୍ଦ୍ୱବାଦର ନିର୍ଯ୍ୟାସ" ।

ନକ୍ଷତ୍ରମାନଙ୍କ ବିବର୍ତ୍ତନ ବା ବୃକ୍ଷଲତାମାନଙ୍କ ବୃଦ୍ଧି, ମନୁଷ୍ୟର ଜୀବନ କିମ୍ବା ସମାଜର ଇତିହାସ, ଏ ସମସ୍ତ ବିକାଶ ମୂଳତଃ ପରସ୍ପରବିରୋଧୀ । ଅତି ସାଧାରଣ ଅର୍ଥରେ ବିକାଶର ତାତ୍ପର୍ଯ୍ୟ ହେଲା ଯେ, କୌଣସି ଏକ ନିର୍ଦ୍ଦିଷ୍ଟ ମୁହୂର୍ତ୍ତରେ ପଦାର୍ଥ-ବିଶେଷ ଆପଣାର ଅଭିନ୍ନତା କାଏମ୍ ରଖେ ଏବଂ ରଖେ ନା । ତାହାର ନିର୍ଦ୍ଦିଷ୍ଟତା

ରହିଥାଏ, ହେଲେ ସଙ୍ଗେ ସଙ୍ଗେ ତା'ର ପରିବର୍ତ୍ତନ ହୁଏ ଏବଂ ତାହା ଭିନ୍ନ ହୋଇଯାଏ ।

ଏଙ୍ଗେଲ୍‌ସ ଲେଖିଥିଲେ, 'ସହଜାତ ନିଷ୍କ୍ରିୟତା' ଏବଂ 'ପରିବର୍ତ୍ତନ'ର, ପ୍ରତ୍ୟନ୍ୱୟ ଦ୍ୱାରା ଆବଦ୍ଧ ହୋଇ ଏକ ପଦାର୍ଥ ସେଇପରି ଅପରିବର୍ତ୍ତନୀୟ ରହୁଛି, ତଥାପି ନିରବଚ୍ଛିନ୍ନଭାବେ ପରିବର୍ତ୍ତିତ ହେଉଛି, ତା ମଧ୍ୟରେ ଏଇ ବିରୋଧିତା ବିଦ୍ୟମାନ" । ଏକ ବିକାଶଶୀଳ ପଦାର୍ଥ ମଧ୍ୟରେ ଅନ୍ୟ ଏକ ପଦାର୍ଥର ଭ୍ରୂଣ ରହିଛି । ସେ, ତାହା ନିଜ ମଧ୍ୟରେ ନିଜର ପ୍ରତ୍ୟନ୍ୱୟକୁ ଧାରଣ କରେ, ଏକ "ବିଲୁପ୍ତି"ର ଉପାଦାନ ଯାହାକି ତାକୁ ସହଜାତଭାବେ ନିଷ୍କ୍ରିୟ ଓ ଅପରିବର୍ତ୍ତନୀୟ 'ରହିବାରେ ବାଧା ଦେଇଥାଏ, ତାହା ଏକ ବସ୍ତୁଗତ ବିରୋଧିତାକୁ ଧାରଣ କରେ । ତା ମଧ୍ୟରେ ପରସ୍ପରବିରୋଧୀ ପ୍ରବୃତ୍ତି କାର୍ଯ୍ୟ କରୁଥାଆନ୍ତି । ପରସ୍ପରବିରୋଧୀ ଶକ୍ତି ବା ଦିଗମାନଙ୍କର ଏକ ପାରସ୍ପରିକ ପ୍ରତିକୂଳ କ୍ରିୟା ବା 'ସଂଗ୍ରାମ' ବା ସଂଘର୍ଷ ଘଟିଥାଏ, ତାହା ଶେଷରେ ବିରୋଧିତାର ସମାଧାନ—ପଦାର୍ଥର ଏକ ମୌଳିକ ଗୁଣଗତ ପରିବର୍ତ୍ତନକୁ ନେଇଯାଏ ।

ପୃଥିବୀର ଭୂତାତ୍ତ୍ୱିକ ଇତିହାସର ତଥାକଥିତ ତୃତୀୟ ଯୁଗରେ ଯେଉଁ ଜୈବିକ ପ୍ରଜାତିସବୁ ହଜାର ହଜାର ବର୍ଷକାଳ ବିଦ୍ୟମାନ ଥିଲେ ସେମାନେ ଅପରିବର୍ତ୍ତନୀୟ ହୋଇ ରହିଥିଲେ ଏବଂ ସେମାନଙ୍କର ରୂପ ସେଇପରି ସମାନ ରହିଥିଲା । ତାଙ୍କର ସେ ଅପରିବର୍ତ୍ତନୀୟତା ଆପେକ୍ଷିକ । ପରିବର୍ତ୍ତନମାନ ପରିଗମନ ସହିତ ମିଥକ୍ରିୟାର ମଧ୍ୟ ଦେଇ ଜୈବଅଙ୍ଗରେ ପରିବର୍ତ୍ତନସବୁ ପୁଞ୍ଜୀଭୂତ ହେଲା । ଏଇସବୁ ପରିବର୍ତ୍ତନ ବଂଶାନୁକ୍ରମିକ ଭାବରେ ଗଢ଼ି ଗଢ଼ି ଚାଲିଲା ଏବଂ ଶେଷରେ ବୃକ୍ଷଲତା ଓ ପଶୁପକ୍ଷୀଙ୍କର ପୁରାପୂରି ନୂତନ ପ୍ରଜାତିର ସୃଷ୍ଟି ଦିଗକୁ ନେଇଗଲା । ପ୍ରତ୍ୟେକ ପ୍ରଜାତି ଭିତରେ ବଂଶଗତ ପ୍ରତ୍ୟନ୍ୱୟାତ୍ମକ ପ୍ରବୃତ୍ତି ଏବଂ ବିଭିନ୍ନ ପରିବର୍ତ୍ତନଶୀଳ ରୂପ ମଧ୍ୟରେ ନିରବଚ୍ଛିନ୍ନ ମିଥକ୍ରିୟା ବା 'ସଂଗ୍ରାମ' ହେଲା ଜୈବ ଜଗତର ବିବର୍ତ୍ତନର ଅନ୍ତର୍ନିହିତ ଭିତ୍ତି ।

ଏଥିରୁ ଜଣାଯାଏ ଯେ ଏକ ପଦାର୍ଥର ସ୍ଥିରତା ଯାହାକୁ କି ଏକ ନିର୍ଦ୍ଦିଷ୍ଟ ଭାରସାମ୍ୟ ବା ପରସ୍ପର ବିରୋଧିତାର ଭାରସାମ୍ୟ ବୋଲି ଧରିନିଆଯାଇଥାଏ, ତାହା କେବଳ ସାମୟିକ ଓ ଆପେକ୍ଷିକ ହୋଇପାରେ । କେବଳ ବସ୍ତୁର ଗତି, ଯାହାକି କ୍ରମାଗତଭାବେ ପୁରାତନ ରୂପକୁ ବର୍ଜ୍ଜନ କରୁଥାଏ ଏବଂ ନୂତନ ରୂପକୁ ସୃଷ୍ଟି କରୁଥାଏ, ତାହାହିଁ କେବଳ ପରମ ଓ ଚିରନ୍ତନ । ଦ୍ୱନ୍ଦ୍ୱବାଦର ଏଇ ସାରକେନ୍ଦ୍ରଗତ ସିଦ୍ଧାନ୍ତକୁ ନିର୍ଦ୍ଧାରଣ କରିବାକୁ ଯାଇ ଲେନିନ୍ ଲେଖିଛନ୍ତି—

"ପରସ୍ପର ବିରୋଧିତାର ଏକତ୍ୱ ହେଉଛି ସର୍ତ୍ତଯୁକ୍ତ, ସାମୟିକ, ଅସ୍ଥାୟୀ ଏବଂ ଆପେକ୍ଷିକ । ଗତି ଓ ବିକାଶ ଯେପରି ପରମ, ପାରସ୍ପରିକ ପରିବର୍ଜ୍ଜନଶୀଳ ବିରୋଧିତାର ସଂଗ୍ରାମ ମଧ୍ୟ ଠିକ୍ ସେଇଭଳି ପରମ ।"

ଏକତ୍ୱ ଏବଂ ପରସ୍ପର ବିରୋଧିତାର ସଂଗ୍ରାମ ସ୍ୱରୂପରେ ବିକାଶର ଦ୍ୱନ୍ଦ୍ୱମୂଳକ ଧାରଣା ଅଧିବିଦ୍ୟା ଧାରଣାର ବିରୋଧୀ । ଲେନିନ୍ ଜୋର ଦେଇ କହିଥିଲେ ଯେ,—ବିକାଶର ଅଧିବିଦ୍ୟାବାଦୀ ଧାରଣାର ଏକ ପ୍ରଧାନ ତ୍ରୁଟି ହେଲା ଯେ ତାହା ବସ୍ତୁର ବିକାଶର ଆଭ୍ୟନ୍ତରୀଣ କ୍ରିୟାଶକ୍ତିକୁ ଉପେକ୍ଷା କରେ, ତାହା ସ୍ୱଗତିଶୀଳତାକୁ ଏଡ଼ାଇ ଏବଂ ବିକାଶର ଉତ୍ସକୁ ବାହ୍ୟ ବୋଲି ବିଚାର କରେ । ବିଶ୍ଳେଷଣର ପରିଶେଷରେ ଭଗବାନ ହେଉଛନ୍ତି ଏଇ ବାହ୍ୟ ଉତ୍ସ, ଯିଏକି ବସ୍ତୁକୁ ଗତି ପ୍ରଦାନ କରନ୍ତି, କିନ୍ତୁ ସେ ନିଜେ ବସ୍ତୁବହିର୍ଭୂତ । ଅଧିବିଦ୍ୟାବାଦୀ ଧାରଣା କେବଳ ଏକଦେଶଦର୍ଶୀଭାବେ ଅଗ୍ରସର ହୋଇଛି ଏବଂ ସେଥିଲାଗି ତାହା ଯେ ବିକାଶର ଏକ ବିକୃତ ଧାରଣା ଦିଏ ତା ନୁହେଁ, ତାହା ଏକ ବିଶ୍ୱସ୍ତ ଉପସଂହାର—ଏକ ଐଶ୍ୱରିକ ମୀତର ସ୍ୱୀକୃତି, ତେଣୁ ବିଜ୍ଞାନ ପ୍ରତି ବିଶ୍ୱାସଘାତକତା—ଏଇ ସିଦ୍ଧାନ୍ତକୁ ଘେନିଯାଏ ।

ବିକାଶର ଦ୍ୱନ୍ଦ୍ୱମୂଳକ ଧାରଣା ଅତି ମହାନ ଏବଂ ଗମ୍ଭୀର ଅର୍ଥପୂର୍ଣ୍ଣ । "ଏହାହିଁ କେବଳ 'ଉଲ୍ଲମ୍ଫନକୁ', 'ନିରବଚ୍ଛିନ୍ନତାରେ ବିରାମକୁ', 'ପାରସ୍ପରିକ ବିରୋଧିତାରେ ପରିବର୍ତ୍ତନକୁ', 'ପୁରାତନର ଧ୍ୱଂସ ଓ ନୂତନର ଆବିର୍ଭାବକୁ' ବୁଝିବା ଦିଗରେ ଉପାୟ ନିର୍ଦ୍ଦେଶ କରେ ।" ଲେନିନ୍ ଲେଖିଥିଲେ ଯେ ଏଇ ଧାରଣା ଅନୁସାରେ "ସ୍ୱ-ଗତିଶୀଳତାର ଉତ୍ସ ସମ୍ପର୍କୀୟ ଜ୍ଞାନ ପ୍ରତି ସେହି ଦୃଷ୍ଟି ମୁଖ୍ୟତଃ ଉଦ୍ଦିଷ୍ଟ" ଯେହେତୁ ତାହା, ସମସ୍ତ ପଦାର୍ଥ ଓ ପ୍ରପଞ୍ଚର ଅନ୍ତର୍ନିହିତ ବିରୋଧିତା ମଧ୍ୟରେ ବିକାଶ ଓ ସ୍ୱ-ଗତିଶୀଳତାର ଉପଲବ୍ଧିକୁ ମୂଳକେନ୍ଦ୍ରଭାବେ ଦେଖେ । ସେତେବେଳେ ବିକାଶର ଦ୍ୱନ୍ଦ୍ୱମୂଳକ ଧାରଣା ଲାଗି ଗତିର କୌଣସି ଅପ୍ରାକୃତ ଶକ୍ତିର ପ୍ରୟୋଜନ ପଡ଼େ ନାହିଁ । ତାହା ପ୍ରକୃତିର ଜୀବନରେ "ଇନ୍ଦ୍ରିୟାତୀତ" ଶକ୍ତିମାନଙ୍କର ହସ୍ତକ୍ଷେପକୁ ପ୍ରତ୍ୟାଖ୍ୟାନ କରେ ଏବଂ ତେଣୁ ତାହା ବିଜ୍ଞାନ ପ୍ରତି ବିଶ୍ୱସ୍ତ ଓ ଅନୁରକ୍ତ ରହେ ।

## ବିରୋଧିତା ସର୍ବଦା ମୂର୍ତ୍ତ

ବିରୋଧିତାର ସଂଗ୍ରାମ ହିସାବରେ ବିକାଶର ଉପରୋକ୍ତ ବର୍ଣ୍ଣନା ଅବଶ୍ୟ ଅତି ସାଧାରଣ ପ୍ରକୃତିର । ତାହା ବିକାଶର ପ୍ରତ୍ୟେକ ପ୍ରକ୍ରିୟା ପ୍ରତି ପ୍ରଯୋଜ୍ୟ । ତେଣୁ ତାହା ନିଜେ କୌଣସି ଏକ ନିର୍ଦ୍ଦିଷ୍ଟ ବିକାଶକୁ ବୁଝାଇବା ଦିଗରେ ଯଥେଷ୍ଟ ନୁହେଁ । କାରଣ 'ସାଧାରଣ ଭାବେ' ପରସ୍ପର ବିରୋଧିତା ବୋଲି କୌଣସି ଜିନିଷ ନାହିଁ । ବିରୋଧିତାଗୁଡ଼ିକ ସଦାସର୍ବଦା ମୂର୍ତ୍ତ ଓ ନିର୍ଦ୍ଦିଷ୍ଟ ।

ପ୍ରତ୍ୟେକ ପଦାର୍ଥ ବା ପ୍ରପଞ୍ଚ ମଧ୍ୟରେ ଅସଂଖ୍ୟ ମିଥସ୍କ୍ରିୟାଶୀଳ ଦିଗମାନ ନିହିତ । ଆହୁ ମଧ୍ୟ ପ୍ରତ୍ୟେକ ପ୍ରପଞ୍ଚ ତାକୁ ପରିବେଷ୍ଟନ କରି ରହିଥିବା ପଦାର୍ଥ ଓ

ପ୍ରକ୍ରିୟାମାନଙ୍କ ସହିତ ସଂଯୁକ୍ତ । ସେଇଥିଯୋଗୁଁ ସମସ୍ତ ପ୍ରପଞ୍ଚ ମଧ୍ୟରେ ବୈଚିତ୍ର୍ୟମୟ ବାହ୍ୟ ଓ ଆଭ୍ୟନ୍ତରୀଣ ବିରୋଧିତା ଦେଖାଯାଏ । ଏକ ପ୍ରପଞ୍ଚର ବିକାଶ ବୁଝିବାକୁ ହେଲେ ଦେଖିବାକୁ ପଡ଼ିବ ଯେ ନିର୍ଦ୍ଦିଷ୍ଟ ପ୍ରକ୍ରିୟା ମଧ୍ୟରେ କେଉଁଟି ପ୍ରଧାନ ନିୟନ୍ତ୍ରଣକାରୀ ବିରୋଧିତା, କେଉଁ ମୂର୍ତ୍ତ ପାରସ୍ପରିକ ବିରୋଧିତା ତା ମଧ୍ୟରେ ମିଥସ୍କ୍ରିୟାରେ ଲିପ୍ତ ଅଛନ୍ତି, ସେମାନଙ୍କର "ସଂଗ୍ରାମ" କେଉଁ ରୂପ ପରିଗ୍ରହ କରେ, ଏବଂ ଉକ୍ତ ବିରୋଧିତାର ଏକ ବା ଅନ୍ୟ ଦିଗଟି ସେ "ସଂଗ୍ରାମ" ମଧ୍ୟରେ କି ଭୂମିକା ଗ୍ରହଣ କରିଥାଏ ।

ଏକ ପ୍ରପଞ୍ଚ ମଧ୍ୟରେ ଥିବା ସହଜାତ ବିରୋଧିତା ଅପରିବର୍ତ୍ତନୀୟ ଓ ଚିରନ୍ତନ ନୁହେଁ । ଜଗତର ଅନ୍ୟାନ୍ୟ ଜିନିଷ ଭଳି ସେମାନଙ୍କର ଉତ୍ପତ୍ତି ଓ ବିକାଶ ହୁଏ ଏବଂ ଶେଷରେ ପୁରାତନ ଗୁଣଗତ ଅବସ୍ଥାରୁ ଏକ ନୂତନ ଅବସ୍ଥାକୁ ପରିଗମନ କରି ସେମାନେ ସମାହିତ ହୁଅନ୍ତି ।

ବିକାଶର ପ୍ରକ୍ରିୟା ଅଧ୍ୟୟନ କଲାବେଳେ, ସମସ୍ତ କ୍ଷେତ୍ରରେ, ସଂଗ୍ରାମଗତ ପରସ୍ପର ବିରୋଧିତାମାନେ ଧାରଣ କରୁଥିବା ରୂପ ଏବଂ ବିକାଶରତ ବିରୋଧିତା ଦ୍ୱାରା ଅତିକ୍ରାନ୍ତ ହେଉଥିବା ପର୍ଯ୍ୟାୟସବୁର ଏକ ବିଶଦ ବିଶ୍ଳେଷଣ ନିହାତି ଆବଶ୍ୟକ ।

ଅଜୈବିକ ପ୍ରକୃତିରୁ ଜୈବିକ ଜଗତର ମଧ୍ୟଦେଇ ମାନବସମାଜରେ ପ୍ରବେଶ— ଏଇ ବିକାଶ କାର୍ଯ୍ୟରେ ବସ୍ତୁ ତା'ର ଯେତେ ଉଚ୍ଚତର ପର୍ଯ୍ୟାୟରେ ପହଞ୍ଚେ, ବିକାଶର ପ୍ରକ୍ରିୟା ସେତିକି ଅଧିକ ଜଟିଳ ଓ ଶାଖାମୟ ହୋଇଉଠେ । ଏଇ ପ୍ରକ୍ରିୟା ମଧ୍ୟରେ ନୂତନ ଓ ପୁରାତନ ଭାବରେ ସେଇସବୁ ବିରୋଧିତାମାନଙ୍କର ସଂଗ୍ରାମ ଅଧିକରୁ ଅଧିକ ଗୁରୁତ୍ୱପୂର୍ଣ୍ଣ ହୋଇଉଠନ୍ତି, ବିକାଶର ପ୍ରପଞ୍ଚ ମଧ୍ୟରେ 'ବିପ୍ଳବୀ' ଏବଂ 'ରକ୍ଷଣଶୀଳ' ଦିଗଗୁଡ଼ିକର ପୃଥକୀକରଣ ଏବଂ ପ୍ରତ୍ୟନ୍ୱୟ ଅଧିକରୁ ଅଧିକ ତୀକ୍ଷ୍ଣ ହୋଇପଡ଼େ । ଅବଶ୍ୟ ଏଠାରେ ବିରୋଧିତା ପୁରାତନ ଓ ନୂତନ ମଧ୍ୟରେ କେବଳ ସଂଗ୍ରାମରେ ଆବଦ୍ଧ ରହେ ନାହିଁ । କିନ୍ତୁ ପରିଶେଷରେ ସେଇ ସଂଗ୍ରାମ କାଳରେ ନୂତନ ପୁରାତନର ପ୍ରତିବନ୍ଧକକୁ ପରାସ୍ତ କରେ ଏବଂ ଜୀବନରେ ନିଜକୁ ସାବ୍ୟସ୍ତ କରେ । ଆଉ ପୁରାତନ, ଯିଏ ନିଜର ସମସ୍ତ ପୁଞ୍ଜି ସରିଗଲା ପରେ ବଞ୍ଚିଥାଏ, ତା'ର ବିଲୋପ ଘଟେ—ଏହାହିଁ ବିକାଶର ଚରିତ୍ରକୁ ନିରୂପିତ କରେ ।

ବିକାଶର ଦ୍ୱନ୍ଦମୂଳକ ଶିକ୍ଷା, ଗବେଷକର ଦୃଷ୍ଟିକୁ, ପ୍ରତ୍ୟେକ ପ୍ରପଞ୍ଚ ମଧ୍ୟରେ ଉଦ୍‌ଘାଟିତ ପରସ୍ପରବିରୋଧୀ ପ୍ରବୃତ୍ତିମାନଙ୍କର ଏକ ପୁଙ୍ଖାନୁପୁଙ୍ଖ ବିଶ୍ଳେଷଣ ଉପରେ ନିବଦ୍ଧ ବା କେନ୍ଦ୍ରୀଭୂତ କରିଥାଏ ଏବଂ ଯାହା ନୂତନ, ବର୍ଦ୍ଧିଷ୍ଣୁ, ଏବଂ ପ୍ରଗତିଶୀଳ ତା ଲାଗି ସକ୍ରିୟ ସମର୍ଥନ ଦାବୀ କରେ ।

## ବୈର ଏବଂ ଅବୈର ବିରୋଧିତା

ସାମାଜିକ ଜୀବନ ସନ୍ଦର୍ଭରେ ବୈର ଓ ଅବୈର ବିରୋଧିତାର ପାର୍ଥକ୍ୟ ଚିହ୍ନିବା ଏକ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ ।

ଯେଉଁସବୁ ସାମାଜିକ ଗୋଷ୍ଠୀ ବା ଶ୍ରେଣୀମାନଙ୍କର ମୌଳିକ ସ୍ୱାର୍ଥ ମଧ୍ୟରେ ମିଳନ ଅସମ୍ଭବ ସେମାନଙ୍କର ବିରୋଧିତାକୁ ବୈର ବିରୋଧିତା କହନ୍ତି । ଅତ୍ୟାଚାରୀ ଓ ଅତ୍ୟାଚାରିତ, ଶୋଷକ ଓ ଶୋଷିତ ମଧ୍ୟରେ ବିରୋଧିତା ହେଲା ଏହି ପ୍ରକାରର ବିରୋଧିତା । ଆମ ସମୟରେ ତାହା ସର୍ବୋପରି ଶ୍ରମିକଶ୍ରେଣୀ ଓ ପୁଞ୍ଜିପତିଙ୍କ ମଧ୍ୟରେ ଥିବା ବିରୋଧିତା ପ୍ରତି ପ୍ରଯୋଜ୍ୟ । ଶାନ୍ତିପୂର୍ଣ୍ଣ ବା ଅଶାନ୍ତିପୂର୍ଣ୍ଣ, ଯେକୌଣସି ମାର୍ଗରେ ହେଉ ଏକ ଶ୍ରେଣୀ ହିସାବରେ ପୁଞ୍ଜିପତିଶ୍ରେଣୀର ବିଲୋପ ନ ହେଲା ପର୍ଯ୍ୟନ୍ତ, ଅର୍ଥାତ୍ ରାଜନୈତିକ କ୍ଷମତା ଓ ଉତ୍ପାଦନର ଉପକରଣରୁ ସେମାନେ ବଞ୍ଚିତ ନ ହେଲାଯାଏ ଏବଂ ତଦ୍ୱାରା ଶ୍ରମକାରୀ ଜନସାଧାରଣଙ୍କୁ ସେମାନେ ଶୋଷଣ କରିବାର ସମ୍ଭାବନା ଲୋପ ନ ପାଇବା ପର୍ଯ୍ୟନ୍ତ—ଏ ବିରୋଧିତା ଦୂର ହେବ ନାହିଁ । କେବଳ ଏକ ସମାଜବାଦୀ ବିପ୍ଳବ ଜରିଆରେ ଏହା ସଙ୍ଘଟିତ ହୋଇପାରେ ।

ରାଜନୀତିରେ, ଦୈନନ୍ଦିନ ବ୍ୟାବହାରିକ କାର୍ଯ୍ୟରେ, ଏକ ଶୋଷଣ-ସମାଜରେ ରହିଥିବା ଶ୍ରେଣୀବିରୋଧିତାର ବୈର ପ୍ରକୃତିକୁ ମନେ ରଖିବା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ଏହାକୁ ଅସ୍ୱୀକାର କରିବାଦ୍ୱାରା ସୁଧାରବାଦୀ ଦୃଷ୍ଟିକୁ ଚାଲିଯିବା ଅନିବାର୍ଯ୍ୟ ହୋଇଉଠେ । ସୁବିଧାବାଦୀ ଓ ସଂଶୋଧନବାଦୀମାନେ, ଉଦାହରଣସ୍ୱରୂପ, ବୁର୍ଜୁଆ ଓ ଶ୍ରମିକଶ୍ରେଣୀ ଭିତରେ ବିରୋଧିତାର ବୈର ପ୍ରକୃତିକୁ ସ୍ୱୀକାର କରନ୍ତି ନାହିଁ, ଏବଂ ସେଇ କାରଣରୁ ସେମାନେ ଶ୍ରେଣୀମାନଙ୍କର ମିଳନ ବା ସମନ୍ୱୟ ପାଇଁ ପ୍ରଚାର କରିଥାନ୍ତି । କିନ୍ତୁ ଏପରି ନୀତି ଭ୍ରମପୂର୍ଣ୍ଣ ଓ କ୍ଷତିକାରକ । ତାହା ଶ୍ରମିକଶ୍ରେଣୀର ଅବସ୍ଥାକୁ ଦୁର୍ବଳ କରେ ଏବଂ ଶ୍ରମଜୀବୀ ଜନତାର ସଂଗ୍ରାମର ଚେର କାଟିଦିଏ ।

ବୈର ବିରୋଧିତା ଏକ ଐତିହାସିକ ପ୍ରପଞ୍ଚ । ତାହା ଏକ ଶୋଷଣ-ସମାଜ ମଧ୍ୟରୁ ଜାତ ; ଉକ୍ତ ସମାଜର ଅସ୍ତିତ୍ୱ ଥିଲାଯାଏ ତା'ର ଅସ୍ତିତ୍ୱ ରହିଥିବ ।

ଯେତେବେଳେ ମନୁଷ୍ୟ ଦ୍ୱାରା ମନୁଷ୍ୟର ଶୋଷଣର ବିଲୋପ ଘଟେ, ସେତେବେଳେ ବୈର ବିରୋଧିତା ଲୋପ ପାଇଯାଏ । କିନ୍ତୁ ଏହାର ଅର୍ଥ ନୁହେ ଯେ ସମାଜବାଦୀ ସମାଜରେ କୌଣସି ପ୍ରକାରର ବିରୋଧିତା ରହେ ନାହିଁ । ଲେନିନ୍ ଲେଖିଥିଲେ, "ବୈରତା ଏବଂ ବିରୋଧିତା କୌଣସିମତେ ଏକା ଜିନିଷ ନୁହନ୍ତି । ସମାଜବାଦ ଅମଳରେ ପ୍ରଥମଟି ଲୋପ ପାଇଯିବ, ଦ୍ୱିତୀୟଟି ରହିବ ।"

ସମାଜବାଦୀ ସମାଜରେ ଯେଉଁ ଅବୈର ବିରୋଧିତା ରହିଛି ତାହା ହେଉଛି ଏପରି ଏକ ସମାଜର ବିରୋଧିତା ଯାହା ମଧ୍ୟରେ କି ସବୁ ଗୋଷ୍ଠୀ ଓ ଶ୍ରେଣୀମାନଙ୍କର

ମୌଳିକ ସ୍ୱାର୍ଥର ମେଳ ରହିଥାଏ । ସେଥିଯୋଗୁଁ ତାହାର ସମାଧାନ ଶ୍ରେଣୀସଂଗ୍ରାମ ଜରିଆରେ ହୁଏ ନାହିଁ । ମାର୍କସ୍‌ବାଦୀ-ଲେନିନ୍‌ବାଦୀ ପାର୍ଟିର ନେତୃତ୍ୱରେ, ସମସ୍ତ ବନ୍ଧୁଭାବାପନ୍ନ ଶ୍ରେଣୀ, ସମସ୍ତ ସାମାଜିକ ସ୍ତରର ଲୋକମାନଙ୍କ ମିଳିତ ଉଦ୍ୟମ ଜରିଆରେହିଁ ତାହିର ସମାଧାନ ହୋଇଥାଏ ।

ଶ୍ରେଣୀଭେଦର ଅବଶେଷ ଲୋପ ପାଇବା ପରେ ସୁଦ୍ଧା ଅବୈର ବିରୋଧିତା ରହିଥିବ । ତା'ର କାରଣ, ସମାଜରେ କେବଳ ଶ୍ରେଣୀମାନଙ୍କ ଭିତରେ ବିରୋଧିତାର ଉଦ୍‌ଭବ ହୁଏ ନାହିଁ ; ସାମାଜିକ ଜୀବନର ବିଭିନ୍ନ ଦିଗ ମଧ୍ୟରେ ମଧ୍ୟ ତା'ର ଉଦ୍‌ଭବ ଘଟିଥାଏ, ଯଥା : ଉତ୍ପାଦନ ଓ ଉପଭୋଗ ମଧ୍ୟରେ, ଅର୍ଥନୀତିର ବିଭିନ୍ନ କ୍ଷେତ୍ର ମଧ୍ୟରେ, ଉତ୍ପାଦନକାରୀ ଶକ୍ତିର ବିକାଶ ଲାଗି ପ୍ରୟୋଜନୀୟତା ଏବଂ ଅର୍ଥନୈତିକ ପରିଚାଳନାର ଅବସ୍ଥିତ ରୂପମାନଙ୍କ ମଧ୍ୟରେ—ଇତ୍ୟାଦି । ସେଥିଯୋଗୁଁ ଜୀବନରେ ଯେଉଁ ଦ୍ୱନ୍ଦ୍ୱମୂଳକ ବିରୋଧିତାର ଉଦ୍‌ଭବ ଘଟେ, ସେଥିରେ କୌଣସି ଅସାଧାରଣତ୍ୱ ନାହିଁ ।

ଏହା ଅବଶ୍ୟ ସତ ଯେ, ଜୀବନରେ, କର୍ମକ୍ଷେତ୍ର ଓ ସଂଗ୍ରାମ ମଧ୍ୟରେ ଅନେକ ସମୟରେ ଏହି ବିରୋଧିତା ଯୋଗୁଁ ଉଦ୍‌ବେଗ ଓ ଅସୁବିଧା ହୁଏ । ସେମାନଙ୍କୁ ଅତିକ୍ରମ କରିବା ଲାଗି ବହୁ ଶକ୍ତି ନିୟୋଗ କରିବାକୁ ପଡ଼େ । କିନ୍ତୁ ବିରୋଧିତା ବିନା, ଏବଂ ସେମାନଙ୍କ ସମାଧାନ ଲାଗି ସଂଗ୍ରାମ ବିନା, ଅଗ୍ରଗତି ନାହିଁ ।

ଯେଉଁ ଶକ୍ତିମାନେ ନୂତନର ପ୍ରତିଷ୍ଠା ଲାଗି ସଂଗ୍ରାମ କରନ୍ତି ଏବଂ ଯେଉଁମାନେ ପୁରାତନର ସୁରକ୍ଷା ଲାଗି ବଦ୍ଧପରିକର, ସେହି ବିରୋଧିତାମାନ ସାମାଜିକ ବିରୋଧିତା-ମାନଙ୍କ ମଧ୍ୟରେ ମୁଖ୍ୟ ସ୍ଥାନ ଗ୍ରହଣ କରନ୍ତି । ଏହା ଅତ୍ୟନ୍ତ ପରିଷ୍କାର ଯେ, ନୂତନର ଜନ୍ମ ବିନା, ଜୀବନରେ ତା'ର ଅଧିକାର ସାବ୍ୟସ୍ତ ହେବା ବିନା ଏବଂ ନୂତନ ଲାଗି ସଂଗ୍ରାମ ବିନା, କୌଣସି ବିକାଶ ସମ୍ଭବ ନୁହେଁ । କେତେକ ପ୍ରପଞ୍ଚର ଉଦ୍‌ଭବ ଆଉ କେତେକଙ୍କର ଚଳନଶୂନ୍ୟତା, ସେମାନଙ୍କ ମଧ୍ୟରେ ବିରୋଧ ତଥା ସଂଘର୍ଷ, ଏବଂ ପୁରାତନ ଉପରେ ନୂତନର ବିଜୟ,—ଏସବୁ ହେଉଛି ସାମାଜିକ ବିକାଶର ବସ୍ତୁଗତ, ନିୟମିତ ଲକ୍ଷଣ ।

ବିରୋଧିତାମାନଙ୍କୁ ସମାଧାନ କରିବାର ସଂଗ୍ରାମ ଭିତରେ ଲୋକମାନେ ପୁରୁଣା ଅପ୍ରଚଳିତ ଅନୁଷ୍ଠାନ ଏବଂ ସମ୍ପର୍କମାନଙ୍କୁ ଛିନ୍ନ କରି ନିଷ୍କ୍ରିୟତା ଓ ଗତାନୁଗତିକତାକୁ ପରାଜିତ କରନ୍ତି, ନୂତନ ଅଧିକ ଜଟିଳ ସମସ୍ୟାମାନଙ୍କର ସମ୍ମୁଖୀନ ହେବା ଲାଗି ଜାଗ୍ରତ ହୁଅନ୍ତି ଏବଂ ଅଧିକ ଉତ୍କୃଷ୍ଟ ସାମାଜିକ ଜୀବନ ଲାଭ କରନ୍ତି ।

ତାହା ହେଲେ ସମାଜବାଦୀ ସମାଜରେ ଘଟୁଥିବା ମୂର୍ତ୍ତ ବିରୋଧିତାଗୁଡ଼ିକ କ'ଣ ? ଏ ସମ୍ବନ୍ଧରେ ଏନ୍. ଏସ୍. କ୍ରୁଷ୍ଚୋଭ ଦର୍ଶାଇଛନ୍ତି, "ସେ (ବିରୋଧିତା) ଗୁଡ଼ିକ ହେଉଛି,

ମୁଖ୍ୟତଃ ସମାଜବାଦୀ ଅର୍ଥନୀତିର କ୍ଷିପ୍ର ଅଗ୍ରଗତି ସହିତ ଏବଂ ଜନସାଧାରଣଙ୍କ ଭୌତିକ ଓ ସାଂସ୍କୃତିକ ପ୍ରୟୋଜନୀୟତାର ବୃଦ୍ଧି ସହିତ ସଂଶ୍ଳିଷ୍ଟ ବାଧାବିଘ୍ନ ଓ ବିରୋଧିତା, ନୂତନ ଓ ପୁରାତନ ମଧ୍ୟରେ ବିରୋଧିତା, ଅଗ୍ରଗତି ଓ ପଶ୍ଚାଦ୍‌ପଦତା ମଧ୍ୟରେ ବିରୋଧିତା ; ସେଗୁଡ଼ିକ ହେଉଛି ସମାଜବାଦୀ ସମାଜର ନାଗରିକର ବର୍ଦ୍ଧିଷ୍ଣୁ ପ୍ରୟୋଜନୀୟତା ଏବଂ ତଥାପି ସୀମାବଦ୍ଧ ଭୌତିକ ଓ ବୈଷୟିକ ସୁବିଧାସୁଯୋଗ ମଧ୍ୟରେ ବିରୋଧିତା ।''

ସମାଜବାଦୀ ସମାଜର ବିରୋଧିତା, ମାର୍କ୍‌ସବାଦୀ-ଲେନିନବାଦୀ ପାର୍ଟିର ନେତୃତ୍ୱରେ, ଶ୍ରମଜୀବୀ ଜନସାଧାରଣଙ୍କ ଦ୍ୱାରା, ସମାଜବାଦୀ ସମାଜର ଭୌତିକ ଓ କାରିଗରୀ ସମ୍ପଦର କ୍ଷିପ୍ର ଓ କ୍ରମାଗତ ବିକାଶ କରିପାରେ, ତା'ର ଅର୍ଥନୈତିକ ସମ୍ପର୍କର ଉତ୍ତରୋତ୍ତର ବୃଦ୍ଧି ଏବଂ ପ୍ରଶାସନିକ ରୂପର ଉନ୍ନତି କରିପାରେ ତଥା ଶ୍ରମଜୀବୀ ଜନସାଧାରଣଙ୍କ ସମାଜବାଦୀ ଚେତନାକୁ ଜାଗ୍ରତ ଓ ଉନ୍ନତ କରିବା କରିପାରେ ଅତିକ୍ରମ କରାଯାଇପାରେ । ଏଇସବୁ ବିରୋଧିତାର ସମାଧାନ ସମାଜବାଦୀ ବ୍ୟବସ୍ଥାକୁ ଆହୁରି ସୁଦୃଢ଼ କରେ ଏବଂ ସମାଜକୁ କମ୍ୟୁନିଜମ୍ (ସାମ୍ୟବାଦ) ଆଡ଼କୁ ଅଗ୍ରସର କରାଏ ।

## ବୁର୍ଜୁଆ ମତାଦର୍ଶବାଦୀମାନେ ଦ୍ୱନ୍ଦ୍ୱବାଦକୁ ବିକୃତ କରନ୍ତି

ମାର୍କ୍‌ସବାଦର ବିରୋଧୀମାନେ ବସ୍ତୁବାଦୀ ଦ୍ୱନ୍ଦ୍ୱକୁ ଖଣ୍ଡନ କରିବା ଲାଗି ତାଙ୍କର ଉଦ୍ୟମରେ ଅଗ୍ରସର ହୋଇ ଦ୍ୱନ୍ଦ୍ୱବାଦର ମୂଳପିଣ୍ଡ—ବିରୋଧିତାର ସିଦ୍ଧାନ୍ତକୁ ପ୍ରଧାନତଃ ଆକ୍ରମଣ କରିଥାନ୍ତି । ବିରୋଧିତା କେବଳ ଚିନ୍ତାରାଜ୍ୟରେ ଉଦ୍‌ଭବ ହୁଏ, ବସ୍ତୁଗତ ଜଗତରେ କିନ୍ତୁ ତାହା ଘଟେ ନାହିଁ, ସେମାନେ ଅଧିକାଂଶ କ୍ଷେତ୍ରରେ ଏହା ଦାବୀ କରିଥାନ୍ତି । ଚିନ୍ତାରାଜ୍ୟର ବିରୋଧିତାକୁ ଅନ୍ତର୍ବିରୋଧିତାର ତାର୍କିକ ବିଧାନ ଦ୍ୱାରା କାଟି ଦିଆଯାଏ । ଯଦି ସେପରି ବିରୋଧିତାର ଉଦ୍‌ଭବ ହୁଏ, ତେବେ ଏହାହିଁ ଜଣାଯିବ ଯେ ଚିନ୍ତାପ୍ରକ୍ରିୟା ଭ୍ରମଯୁକ୍ତ । ଅତଏବ ନିର୍ଣ୍ଣୟ କରାଯାଏ ଯେ ବିରୋଧିତା ସମ୍ପୂର୍ଣ୍ଣ ଅଗ୍ରହଣୀୟ ଏବଂ କୌଣସି କ୍ଷେତ୍ରରେ ତା'ର ଅସ୍ତିତ୍ୱ ରହିବା କଥା ନୁହେଁ ।

ପରସ୍ପର ବିରୋଧିତାର ସଂଗ୍ରାମ ଏବଂ ଏକତ୍ୱ, ଏ ଦ୍ୱନ୍ଦ୍ୱବାଦୀ ବିଧାନର "ସମାଲୋଚନା" ଏକଦମ ଭିତ୍ତିହୀନ । ବିରୋଧିତା କଥା କହିଲାବେଳେ ବସ୍ତୁବାଦୀ ଦ୍ୱନ୍ଦ୍ୱବାଦ ମୁଖ୍ୟତଃ ବସ୍ତୁଗତ ବାସ୍ତବତାରେ ଅବସ୍ଥିତ "ବିରୋଧିତା" କଥାହିଁ ବିଚାର କରେ । ଅବଶ୍ୟ ଏସବୁକୁ ଅସଂଗତ ଅବାନ୍ତର ଚିନ୍ତା ଏବଂ ବିଭ୍ରାନ୍ତିକର ଭାବ ମଧ୍ୟରୁ ଜାତ ବିରୋଧିତାମାନଙ୍କଠାରୁ ପୃଥକ୍ କରି ଦେଖିବାକୁ ହେବ । ଯୁକ୍ତି କରିବାର ପ୍ରକ୍ରିୟା ମଧ୍ୟରେ ଯେତେବେଳେ ଜଣେ କିଛି ଗୋଟାଏ ଜୋରରେ ଉପସ୍ଥାପିତ କରେ ଏବଂ ପରେ ତାକୁ ଅସ୍ୱୀକାର କରିବାକୁ ଯାଏ, ତେବେ ସେ ବ୍ୟକ୍ତିଙ୍କ

ତାକର ବିରୋଧିତା ଦୋଷରେ ଯଥାର୍ଥରେ ଅଭିଯୁକ୍ତ କରାଯାଇପାରେ ; ଏ ତାକିକ ବିରୋଧିତା ତର୍କଶାସ୍ତ୍ରର ବିଧାନ ଦ୍ୱାରା ଅନୁମୋଦିତ ନୁହେ ।

ବିଭ୍ରାନ୍ତ ଚିନ୍ତାଯୋଗୁଁ ଉପୁଜୁଥିବା ବିରୋଧିତା ସହିତ ବସ୍ତୁଗତ ପଦାର୍ଥ ମଧ୍ୟରେ ଅବସ୍ଥିତ ବସ୍ତୁଗତ ଅନ୍ତର୍ବିରୋଧିତାମାନଙ୍କୁ ଏକାଠି ମିଶାଇଦେବା ଉଚିତ ନୁହେ । ଯଦିଓ "ବିରୋଧିତା" ଶବ୍ଦ ଉଭୟ କ୍ଷେତ୍ରରେ ସମାନ, ତାହା କିନ୍ତୁ ବିଭିନ୍ନ ଜିନିଷକୁ ବୁଝାଏ ।

ମାର୍କ୍ସବାଦର ବିରୋଧୀମାନେ ବସ୍ତୁବାଦୀ ଦ୍ୱନ୍ଦ୍ୱବାଦର ପ୍ରତିରୋଧ ଲାଗି ଆହୁରି ଏକ ଉପାୟ ବି ଧରନ୍ତି ।

ଭାବବାଦୀ ଦର୍ଶନର ସବୁଠାରୁ ପ୍ରତିକ୍ରିୟାଶୀଳ ଧାରାମାନଙ୍କ ଭିତରୁ ଗୋଟିଏ ହେଲା ନବ୍ୟ-ହେଗେଲବାଦ । ପ୍ରଥମ ମହାସମର ପରେ ତାହା ପୁଞ୍ଜିବାଦୀ ଦେଶମାନଙ୍କରେ ବ୍ୟାପିଯାଇଥିଲା ଏବଂ ଆଜିଯାଏ ସେ ପ୍ରଭାବର ସମାପ୍ତି ହୋଇନାହିଁ । ଏହାର ସମର୍ଥକମାନେ ହେଗେଲଙ୍କ ଭାବବାଦୀ ଦ୍ୱନ୍ଦ୍ୱବାଦକୁ କଦର୍ଥ କରିଥିଲେ ଏବଂ ତା ଭିତରେ ଯାହା ସବୁ ପ୍ରକୃତରେ ମୂଲ୍ୟବାନ ତାକୁ ଫିଙ୍ଗିଦେଇଥିଲେ ; ବିଜ୍ଞାନ-ବିରୋଧୀ ଏବଂ ରାଜନୀତି କ୍ଷେତ୍ରରେ ପ୍ରତିକ୍ରିୟାଶୀଳ ଭାବଧାରାର ଏକ ପ୍ରତାରଣାମୂଳକ ଯଥାର୍ଥତା ପ୍ରତିପାଦନ ଉଦ୍ଦେଶ୍ୟରେ, ମାର୍କସ୍‌ବାଦୀ ଦର୍ଶନକୁ ଖଣ୍ଡନ କରିବାପାଇଁ, ତାହା ପ୍ରୟୋଗର ଚେଷ୍ଟା କରିଥିଲେ ।

ବିଶେଷରୂପେ କେତେକ ନବ୍ୟ-ହେଗେଲବାଦୀ ଦାବୀ କରିବାକୁ ଆରମ୍ଭ କଲେ ଯେ, ଜୀବନର ପ୍ରକୃତିହିଁ ଏପରି ଯେ ଅନ୍ତର୍ବିରୋଧ, ତୀବ୍ର ସଂଘର୍ଷ ଏବଂ ଭୟଙ୍କର ସଂଘାତ-ପ୍ରତିଘାତ ତହିଁରେ ଅନିବାର୍ଯ୍ୟ ହୁଏ, ମାନବଜୀବନର "ଦୁଃଖଦାୟକ ଦ୍ୱନ୍ଦ୍ୱ" ଯୋଗୁଁ ସମାଜକୁ ଉତ୍ପୀଡ଼ିତ କରୁଥିବା ଚିରନ୍ତନ ବିରୋଧିତାକୁ ଲୋକମାନେ କେବେ ହେଲେ ଅତିକ୍ରମ କରିବାକୁ ସମର୍ଥ ହେବେ ନାହିଁ ଏବଂ ସେମାନେ କେବେହେଲେ ବିଜ୍ଞ ଓ ନ୍ୟାୟସଙ୍ଗତ ଭିତ୍ତି ଉପରେ ସେମାନଙ୍କର ଜୀବନ ଗଠନ କରିବାଲାଗି ମଧ୍ୟ ସମର୍ଥ ହେବେ ନାହିଁ ।

ଏହି ଦାର୍ଶନିକମାନେ ଘୋଷଣା କରିଥାନ୍ତି ଯେ ବିରୋଧିତାଯୁକ୍ତ ବ୍ୟବସ୍ଥା ଜାଗାରେ ସମାଜବାଦୀ ବ୍ୟବସ୍ଥାକୁ ଅଧିଷ୍ଠିତ କରିବାଲାଗି ଶ୍ରମିକମାନଙ୍କର ଉଦ୍ୟମ ଏକ କାଳ୍ପନିକ "ଚୂଡ଼ାନ୍ତବାଦ" । ସମାଜର ଦ୍ୱନ୍ଦ୍ୱମୂଳକ ବିକାଶକୁ ଲୋପ କରିବାଲାଗି ତାହା ଏକ ପ୍ରଚେଷ୍ଟା ।

ବିରୋଧିତାର ଏ ପ୍ରକାର ବ୍ୟାଖ୍ୟା ମାଧ୍ୟମରେ ଏସବୁ ବୁର୍ଜୁଆ ଅଧ୍ୟାପକ ପୁଞ୍ଜିବାଦକୁ ଚିରସ୍ଥାୟୀ କରିବା ଚେଷ୍ଟା କରନ୍ତି ; ସେଥି ସଙ୍ଗେ ସଙ୍ଗେ ସାମ୍ୟବାଦ ପାଇଁ ଶ୍ରମିକଶ୍ରେଣୀର ସଂଗ୍ରାମକୁ ବଦନାମ କରିବାକୁ ଉଦ୍ୟମ କରନ୍ତି ।

ସାମାଜିକ ବିରୋଧିତାସମେତ ବିରୋଧିତାର ମୂର୍ତ୍ତି ରୂପର ସମାଧାନ ପରିଶେଷରେ ହୋଇଥାଏ । ସୋଭିଏଟ୍ ରୁଷ ଓ ଅନ୍ୟାନ୍ୟ ଦେଶରେ ସମାଜବାଦର ବିଜୟ୍ ନିଷ୍ପତ୍ତି-ମୂଳକ ଭାବେ ପ୍ରମାଣ କରେ ଯେ, ପୁଞ୍ଜିବାଦ ନିଜେ ଯେପରି ଚିରନ୍ତନ ନୁହେ, ସେହିପରି ପୁଞ୍ଜିବାଦର ସହଜାତ ବିରୋଧମାନ ମଧ୍ୟ ଚିରନ୍ତନ ନୁହନ୍ତି ; ଆଉ ସକଳ ବିରୋଧିତାକୁ ଅତିକ୍ରମ କରିବା ସମ୍ଭବପର ।

## (୪) ନିମ୍ନରୁ ଉଚ୍ଚକୁ ଦ୍ୱନ୍ଦ୍ୱାତ୍ମକ ବିକାଶ

ଭୌତିକ ବିଶ୍ୱଜଗତ ଚିରନ୍ତନ । କିନ୍ତୁ ବସ୍ତୁର ଏଇ ଚିରନ୍ତର ଜୀବନ ତା'ର ବିଭିନ୍ନ ରୂପମାନଙ୍କର ଏକ ନିରବଚ୍ଛିନ୍ନ ପରିବର୍ତ୍ତନ ଦ୍ୱାରା ଗଠିତ । ସେମାନେ ରୂପ ଲାଭ କରନ୍ତି, ଅବସ୍ଥାନ କରନ୍ତି ଏବଂ ଅନ୍ୟାନ୍ୟ ରୂପମାନଙ୍କ ଦ୍ୱାରା ପ୍ରତିସ୍ଥାପିତ ହୋଇ ବିଲୁପ୍ତ ହୁଅନ୍ତି ।

ବିଶ୍ୱବ୍ରହ୍ମାଣ୍ଡର ଅପରିସୀମ ବିସ୍ତୃତି ମଧ୍ୟରେ ନକ୍ଷତ୍ରମାନେ ରୂପ ନିଅନ୍ତି ଏବଂ ବିଲୁପ୍ତ ହୁଅନ୍ତି । ପୃଥିବୀର ଇତିହାସରେ ଗୋଟିକ ପରେ ଗୋଟିଏ ଭୌଗୋଳିକ ଯୁଗ ଆସିଛି । ବୃକ୍ଷଲତା ଏବଂ ପଶୁପକ୍ଷୀର ପ୍ରଜାତିମାନେ ରୂପ ନେଇଛନ୍ତି ଏବଂ ନବ-ଜାତ ଓ ମୃତ୍ୟୁମୁଖୀ ବଂଶପରଂପରାର ଏକ ଅଗଣିତ ଉତ୍ତର ପୁରୁଷର ପ୍ରବାହ ମଧ୍ୟରେ ବିଲୁପ୍ତ ହୋଇଛନ୍ତି । ଆଉ ମଧ୍ୟ ସାମାଜିକ ଜୀବନର ରୂପ ଚିରନ୍ତନ ନୁହେ । ସେମାନେ ଜାତ ହୁଅନ୍ତି, ବିକାଶ ଲଭନ୍ତି, ବଳିଷ୍ଠ ହୁଅନ୍ତି ଓ ପରେ ବାର୍ଦ୍ଧକ୍ୟରେ ପହଞ୍ଚନ୍ତି ଏବଂ ଶେଷରେ ଅନ୍ୟମାନଙ୍କ ଦ୍ୱାରା ପ୍ରତିସ୍ଥାପିତ ହୁଅନ୍ତି । ଅତଏବ ଆମ ଆଖି ଆଗରେ ସମାଜର ସମାଜବାଦୀ ବ୍ୟବସ୍ଥା ଦ୍ୱାରା ପୁଞ୍ଜିବାଦ ପ୍ରତିସ୍ଥାପିତ ହେବାରେ ଲାଗିଛି ।

ନୂତନ ରୂପମାନଙ୍କର ଅବିରାମ ଜନ୍ମ, ନୂତନ ରୂପ ଦ୍ୱାରା ପୁରାତନ ଅପ୍ରଚଳିତ ରୂପମାନଙ୍କର ପ୍ରତିସ୍ଥାପନ ଭିତରେ ବସ୍ତୁର ଚିରନ୍ତନ ଗତି ଓ ବିକାଶର ପରିପ୍ରକାଶ ହୋଇଥାଏ ।

### ଦ୍ୱନ୍ଦ୍ୱମୂଳକ ବିଲୁପ୍ତି

ହେଗେଲ୍ ତାଙ୍କର ଭାବବାଦୀ ଦ୍ୱନ୍ଦ୍ୱବାଦରେ, ଏକ ସତ୍ତ୍ୱର ରୂପ ଦ୍ୱାରା ଅନ୍ୟ ଏକ ରୂପର ପ୍ରତିସ୍ଥାପନକୁ "ବିଲୁପ୍ତି" ବୋଲି ବର୍ଣ୍ଣନା କରିଥିଲେ । ସେ ଏଇ ଶବ୍ଦ ବ୍ୟବହାର କରିଥିଲେ, କାରଣ ସେ ବିଶ୍ୱାସ କରୁଥିଲେ ଯେ ସତ୍ତ୍ୱା ହେଉଛି ଏକ ଚିନ୍ତା ("ଭାବ") ଯାହାର ବିକାଶ ମଧ୍ୟରେ ପ୍ରତ୍ୟେକ ସ୍ୱତନ୍ତ୍ର ବିନ୍ଦୁଗର ଅସତ୍ୟତା ପ୍ରତୀୟମାନ ହୁଏ ଏବଂ ଆଉ ଏକ ବିରୋଧୀ ବିଷୟ ଦ୍ୱାରା ତାହା "ବିଲୁପ୍ତ" ହୁଏ ।

ବିକାଶର ଯୁକ୍ତିଯୁକ୍ତ ପ୍ରକୃତି ସମ୍ବନ୍ଧରେ, ମାର୍କ୍ସ୍ ଏବଂ ଏଙ୍ଗେଲ୍ସ, ହେଗେଲଙ୍କ ତତ୍ତ୍ୱକୁ ପ୍ରତ୍ୟାଖ୍ୟାନ କରିଥିଲେ, କିନ୍ତୁ "ବିଲୁପ୍ତି" ଶବ୍ଦଟିକୁ ରଖିଥିଲେ ଏବଂ ତାହାକୁ ଏକ ଭୌତିକ ଅର୍ଥରେ ମଣ୍ଡିତ କରିଥିଲେ । ବିଲୁପ୍ତି ବୋଇଲେ ମାର୍କ୍ସବାଦୀ ଦ୍ୱନ୍ଦ୍ୱବାଦ ଏକ ପୁରାତନ ଗୁଣର ବିକାଶପ୍ରକ୍ରିୟା ମଧ୍ୟରେ ଏକ ନୂତନ ଗୁଣ, ଯାହାକି ସେଇ ପୁରାତନ ଭିତରେ ଜନ୍ମଲାଭ କରେ, ତାର ଦ୍ୱାରା ନିୟମ-ପରିଚାଳିତ ପ୍ରତିସ୍ଥାପନକୁ ବୁଝିଥାଏ । ଏହି ବିକାଶର ପ୍ରକ୍ରିୟା ମଧ୍ୟରେ ନୂତନ ଦ୍ୱାରା ପୁରାତନ ଗୁଣର ପ୍ରତିସ୍ଥାପନ, ବସ୍ତୁ ସମସ୍ତରେ, ଏକ ପଦାର୍ଥର ରୂପାନ୍ତର, ତା'ର ବିରୋଧିତାରେ ରୂପାନ୍ତରଭାବେ ଘଟିଥାଏ ।

ମାର୍କ୍ସ୍ ଲେଖିଥିଲେ, "କୌଣସି ବିକାଶ ତା'ର ପୂର୍ବର ଅସ୍ତିତ୍ୱର ରୂପକୁ ବିଲୁପ୍ତ ନ କରି କୌଣସି କ୍ଷେତ୍ରରେ ସଂଘଟିତ ହୋଇପାରିବ ନାହିଁ ।" ବିକାଶର ପ୍ରକ୍ରିୟା ମଧ୍ୟରେ ଏକ ନୂତନ ଦ୍ୱାରା ଏକ ପୁରାତନ ଗୁଣର ବିଲୁପ୍ତି ହେଉଛି ବିପରୀତ-ମାନଙ୍କ ଏକତ୍ୱ ଓ ସଂଗ୍ରାମର ନିୟମ ପ୍ରକ୍ରିୟାର ପ୍ରାକୃତିକ ଫଳ । କାରଣ ପ୍ରତ୍ୟେକ ପଦାର୍ଥ ପ୍ରପଞ୍ଚ ଏବଂ ପ୍ରକ୍ରିୟା ମଧ୍ୟରେ ପରସ୍ପର ବର୍ଜନଶୀଳ ଦିଗ ଓ ପ୍ରବୃତ୍ତିମାନଙ୍କର ଏକ ସଂଗ୍ରାମ ଘଟିଥାଏ ଏବଂ ସେଇ ସଂଗ୍ରାମ ପରିଶେଷରେ ପୁରାତନର 'ବିଲୁପ୍ତ' ଏବଂ ନୂତନର ଆବିର୍ଭାବ ଆଡ଼କୁ ନେଇଯାଏ । କିନ୍ତୁ ଏକ ପ୍ରପଞ୍ଚ, ତା'ର ସ୍ଥାନ ପୂରଣ କରୁଥିବା ଅନ୍ୟ ଏକ ପ୍ରପଞ୍ଚ ଦ୍ୱାରା ବିଲୁପ୍ତ ହେଲେ ମଧ୍ୟ, ବିକାଶର ପ୍ରକ୍ରିୟାର ନିବୃତ୍ତି ବା ସମାପ୍ତି ନାହିଁ । ଯେଉଁ ନୂତନ ପ୍ରପଞ୍ଚର ଆବିର୍ଭାବ ଘଟେ ତାହା ନୂତନ ଅନ୍ତର୍ବିରୋଧ ଧାରଣ କରିଥାଏ । ପ୍ରଥମେ ତାହା ଦୃଷ୍ଟିଗୋଚର ହୋଇ ନ ପାରେ, କିନ୍ତୁ କାଳକ୍ରମେ ସେମାନେ ଆତ୍ମପ୍ରକାଶ କରିବାକୁ ବାଧ୍ୟ । ସେତେବେଳେ "ବିପରୀତମାନଙ୍କ ସଂଗ୍ରାମ" ନୂତନ ଭିତ୍ତିରେ ଦେଖାଦିଏ ଏବଂ ଶେଷରେ ଅନିବାର୍ଯ୍ୟଭାବେ ଏକ ନୂତନ "ବିଲୁପ୍ତି" ଦିଗକୁ ନେଇଯାଏ । ସାମଗ୍ରିକଭାବେ ବସ୍ତୁଗତ ବିଶ୍ୱଜଗତ ଅନନ୍ତ ଓ ଅପରିସୀମ, କିନ୍ତୁ ତାକୁ ଗଠନ କରୁଥିବା ସମସ୍ତ ପଦାର୍ଥ ଶୂନ୍ୟ ଓ ସମୟ ମଧ୍ୟରେ ସୀମାବଦ୍ଧ, ଅସ୍ଥାୟୀ ଏବଂ "ବିଲୁପ୍ତି"ର ପ୍ରଭାବାଧୀନ । କୌଣସି "ବିଲୁପ୍ତି" ଶେଷ ନୁହେଁ । ବିକାଶର ଗତି ଅବିଶ୍ରାନ୍ତ, ଅବିରାମ । ପ୍ରତ୍ୟେକ ପରବର୍ତ୍ତୀ 'ବିଲୁପ୍ତି' ନିଜେ ମଧ୍ୟ ପରେ ପରେ ବିଲୁପ୍ତ ହେଉଥାଏ ।

ବସ୍ତୁବାଦୀ ଦ୍ୱନ୍ଦ୍ୱବାଦ ପ୍ରତ୍ୟେକ ପ୍ରକାରର ବିଲୁପ୍ତି ସହିତ ନିଜକୁ ଜଡ଼ିତ କରେ ନାହିଁ ; କେବଳ ମାତ୍ର ଦ୍ୱନ୍ଦ୍ୱମୂଳକ "ବିଲୁପ୍ତିକୁ" ବିଚାର କରିଥାଏ,—ସେ ବିଲୁପ୍ତି ଯାହା କି ଏକ ପଦାର୍ଥ ବିଷୟ ବା ପ୍ରପଞ୍ଚର ଅଧିକତର ବିକାଶ ସହିତ ବିଜଡ଼ିତ ।

ସେ ପ୍ରକାର ବିଲୁପ୍ତିକୁ "ଯାନ୍ତ୍ରିକ ବିଲୁପ୍ତି"ରୁ ପୃଥକ୍‌ଭାବେ ଚିହ୍ନିତ କରିବାକୁ ପଡ଼ିବ । ବାହାର ହସ୍ତକ୍ଷେପ ଫଳରେ ଯେଉଁଠି "ବିଲୁପ୍ତ" ବିଷୟର ଧ୍ୱଂସ ଘଟେ;

ତାହା ହେଉଛୁ ଯାନ୍ତ୍ରିକ ବିଲୁପ୍ତି । ଆମେ ଯଦି ଏକ ପତଙ୍ଗକୁ ଦଳିଦେଉଁ ବା ଏକ ଶସ୍ୟକଣାକୁ ଚୂର୍ଣ୍ଣଦେଉଁ ତେବେ ତାହା ହେଲା ଯାନ୍ତ୍ରିକ "ବିଲୁପ୍ତି" । ତାହା ଉଦ୍ଦେଶ୍ୟହୀନ ହୋଇ ନ ପାରେ ( ଏ କ୍ଷେତ୍ରରେ ଷଡକାରକ ପତଙ୍ଗ ମାରିବା ବା ଗହମକୁ ଅଟାରେ ପରିଣତ କରିବା ), କିନ୍ତୁ ତାହା ବିପର୍ଯ୍ୟର ବିକାଶକୁ ପରିସମାପ୍ତ କରେ ।

ଏଙ୍ଗେଲ୍ସ କହନ୍ତି, "ଦ୍ୱନ୍ଦ୍ୱବାଦରେ ବିଲୁପ୍ତିର ଅର୍ଥ କେବଳ ନାହିଁ ନାହିଁ କରିବା ନୁହେ, କୌଣସି ଜିନିଷର ଅସ୍ତିତ୍ୱ ନାହିଁ ବୋଲି ଘୋଷଣା କରିବା ନୁହେ, କିମ୍ବା ଯେମିତି ଇଚ୍ଛା ସେମିତି ତାକୁ ଧ୍ୱଂସ କରିଦେବା ନୁହେଁ ।"

## ବିକାଶରେ ନିରବଚ୍ଛିନ୍ନତା

ଦ୍ୱନ୍ଦ୍ୱମୂଳକ "ବିଲୁପ୍ତି" କେବଳ ପୁରାତନର ଧ୍ୱଂସ ସାଧନ କରେ ନାହିଁ, ବିକାଶର ପୂର୍ବବର୍ତ୍ତୀ ସ୍ତରମାନଙ୍କ ଜୀବାଣୁକୁ ସଂରକ୍ଷିତ କରିବା କାର୍ଯ୍ୟ ବି କରେ । ପ୍ରସ୍ଥାନରତ ପୁରାତନ ଏବଂ ତା'ର ସ୍ଥାନ ପୂରଣ ପାଇଁ ଉଦ୍ୟତ ନୂତନ ମଧ୍ୟରେ ଏକ ନିର୍ଦ୍ଦିଷ୍ଟ ସମ୍ବନ୍ଧକୁ ମଧ୍ୟ ତାହା ପୂର୍ବରୁ ଧାରଣା କରିଥାଏ ।

ପୁଞ୍ଜିବାଦୀ ସମାଜର ଧ୍ୱଂସସ୍ତୂପ ଉପରେ ଯେତେବେଳେ ସମାଜବାଦୀ ବ୍ୟବସ୍ଥା ନିର୍ମିତ ହୁଏ, ସେତେବେଳେ ପୁଞ୍ଜିବାଦର 'ବିଲୁପ୍ତି'ର ଅର୍ଥ ନୁହେ ଯେ ମନୁଷ୍ୟ-ସମାଜ ପୁଞ୍ଜିବାଦ କାଳରେ ଯାହା କିଛି ସୃଷ୍ଟି କରିଛି ତାକୁ ସମ୍ପୂର୍ଣ୍ଣ ଧ୍ୱଂସ କରି-ଦିଆଯିବ । ଉତ୍ପାଦନକାରୀ ଶକ୍ତି ଏବଂ ବିଜ୍ଞାନ ଓ ସଂସ୍କୃତିର ମୂଲ୍ୟବାନ ସାଧନା ଓ ସମ୍ପଦଗୁଡ଼ିକ ସୁରକ୍ଷିତ ହୁଏ ଏବଂ କ୍ରମଶଃ ତାହା ବିକାଶ ଲାଭ କରେ । ଯେତେସବୁ ମୂଲ୍ୟବାନ ସମ୍ପଦ ପୁଞ୍ଜିବାଦ ସୃଷ୍ଟି କରିଥାଏ, ସର୍ବହରାର ବିପ୍ଳବ ତାହାକୁ ଧ୍ୱଂସ କରିବା ପରିବର୍ତ୍ତେ ଅଧିକତର ପ୍ରଗତି ତଥା ସମାଜବାଦର ନିର୍ମାଣ ଲାଗି ଭିତ୍ତି ହିସାବରେ ନିୟୋଜିତ କରେ ।

ବୁର୍ଜୁଆ ବ୍ୟବସ୍ଥା ମଧ୍ୟରେ ସୃଷ୍ଟ ପୁରାତନ ସଂସ୍କୃତିର ଗୁରୁତ୍ୱକୁ ସମାଜବାଦ ନିର୍ମାଣ ଲାଗି ଯେଉଁମାନେ ଅସ୍ୱୀକାର କରନ୍ତି, ସେମାନଙ୍କ ବିରୁଦ୍ଧରେ ଲେନିନ୍ କହିଛନ୍ତି ଯେ ମହାଶୂନ୍ୟରୁ ଗୋଟିଏ ନୂତନ ସମାଜବାଦୀ ସଂସ୍କୃତି ସୃଷ୍ଟି ହେବ ନାହିଁ ; ଏହା "ଏପରି କୌଣସି ଜିନିଷ ନୁହେ ଯେ ହଠାତ୍ କେଉଁଠୁ ତା'ର ଉଦ୍ଭବ ହେଲା କେହି ଜାଣିଲେ ନାହିଁ ।" ତାହା "ସୁନିଶ୍ଚିତଭାବେ ଜ୍ଞାନଭଣ୍ଡାରର ଏଭଳି ଏକ ପ୍ରାକୃତିକ ବିକାଶର ଫଳ ଯାହାକୁ ମନୁଷ୍ୟସମାଜ ପୁଞ୍ଜିବାଦୀ ସମାଜର ବନ୍ଧନ ମଧ୍ୟରେ ଆହରଣ ଓ ସୁସଜ୍ଜିତ କରିଛି ।"

ଖଣ୍ଡନବାଦ, ଶୂନ୍ୟ ବିଲୁପ୍ତି, ପୁରାତନ ଓ ନୂତନ ମଧ୍ୟରେ ଅବସ୍ଥିତ କ୍ରମାଗତ ସମ୍ବନ୍ଧ ଲକ୍ଷ୍ୟ କରିବାରେ ଅସାମର୍ଥ୍ୟ ଏବଂ ବିକାଶର ପୂର୍ବ ପର୍ଯ୍ୟାୟମାନଙ୍କରେ ଆହରଣ କରାହୋଇଥିବା ଯଥାର୍ଥ ସାରତତ୍ତ୍ୱକୁ ନୂତନ ସହିତ ସୁରକ୍ଷିତ କରିବାର ପ୍ରୟୋଜନୀୟତା ଦେଖିବାରେ ଅକ୍ଷମତା—ଏ ସମସ୍ତ ତାତ୍ତ୍ୱିକ ଦୃଷ୍ଟିରୁ କେବଳ ପ୍ରମାଦପୂର୍ଣ୍ଣ ନୁହେଁ, ବ୍ୟାବହାରିକ କ୍ଷେତ୍ରରେ ବି ଏମାନେ ଘୋର ବିଭ୍ରାନ୍ତ ଦିଗକୁ ନେଇଯାଆନ୍ତି ।

ଲେନିନ୍ ଲେଖିଥିଲେ, "ଦ୍ୱନ୍ଦ୍ୱବାଦ, ଯାହାକି ନିଃସନ୍ଦେହଭାବେ ବିଲୁପ୍ତିକୁ ଏକ ଉପାଦାନ, ଅଧିକନ୍ତୁ ତା'ର ସବୁଠାରୁ ବଳି ଏକ ଗୁରୁତ୍ୱପୂର୍ଣ୍ଣ ଉପାଦାନଭାବେ ଧାରଣ କରେ, ଯାହା ଦ୍ୱନ୍ଦ୍ୱବାଦର ସାର ଓ ବୈଶିଷ୍ଟ୍ୟ, ତାହା ବିଲୁପ୍ତି ପାଇଁ ବିଲୁପ୍ତି ନୁହେଁ, ଫାଙ୍କା ବିଲୁପ୍ତି ନୁହେଁ, ସଂଶୟାତ୍ମକ ବିଲୁପ୍ତି ନୁହେଁ । ନା, ସେ ବିଲୁପ୍ତି ହେଉଛି ଯଥାର୍ଥତାକୁ ସୁରକ୍ଷିତ କରିବା ସହିତ ବିଲୁପ୍ତି, ଏକ ସମ୍ବନ୍ଧର ହେତୁ ଭାବରେ, ବିକାଶର ଏକ ହେତୁ ଭାବରେ ବିଲୁପ୍ତି ।"

ନୂତନ ଗୁଣ ଦ୍ୱାରା ପୁରାତନ ଗୁଣର "ବିଲୁପ୍ତି" ବାସ୍ତବତାର ଏକ ବିଶ୍ୱଜନୀନ ନିୟମ । ତେବେ ମୂର୍ତ୍ତିଭାବରେ 'ବିଲୁପ୍ତି' କିପରି ସଙ୍ଘଟିତ ହୁଏ, ତାହା କି ରୂପ ଗ୍ରହଣ କରେ, ତା'ର ପ୍ରକୃତି କଣ, ଏସବୁ ଅତିମାତ୍ରାରେ ବୈଚିତ୍ର୍ୟମୟ । ବିଲୁପ୍ତିପ୍ରାପ୍ତ ବିଷୟର ପ୍ରକୃତି, ତାର ଅନ୍ତର୍ବିରୋଧମାନଙ୍କର ଚରିତ୍ର ତଥା ବିଷୟ ଯେଉଁ ଅବସ୍ଥା ମଧ୍ୟରେ ବିକାଶ ଲାଭ କରେ, ସେସବୁ ଉପରେ ତାହା ନିର୍ଭରଶୀଳ । ଅତଏବ, ଦୃଷ୍ଟାନ୍ତସ୍ୱରୂପ, ଏକକୋଷୀ ଜୀବ ବା ଅଣୁଜୀବ, ଯାହା ଦୁଇଟି ଅଣୁଜୀବରେ ବିଭକ୍ତ ହୋଇ ନିଜକୁ ବୃଦ୍ଧି କରେ, ଏଠାରେ ଘଟୁଥିବା ଏହି 'ବିଲୁପ୍ତି' ଅନ୍ୟ ଦିଗରେ ବହୁ-କୋଷୀ ଅଣୁଜୀବ, ଯାହା ନୂତନ ଅଣୁଜୀବକୁ ଜନ୍ମ ଦେଇ ମରିଯାଏ, ତା'ର ସେଇ ବିକାଶ ମଧ୍ୟରେ ଘଟୁଥିବା 'ବିଲୁପ୍ତି'ଠାରୁ ପୃଥକ ଭାବରେ ଗତି କରିଥାଏ । ଅଜୈବିକ ଜଗତ, ଆଉ ମଧ୍ୟ ମାନବସମାଜର ଇତିହାସ ତା'ର ବିକାଶର ବିଭିନ୍ନ ସ୍ତରରେ "ବିଲୁପ୍ତି"ର ସ୍ପଷ୍ଟ ଓ ନିର୍ଦ୍ଦିଷ୍ଟ ରୂପମାନଙ୍କୁ ପ୍ରକାଶ କରିଥାଏ ।

## ବିକାଶର ପ୍ରଗତିଶୀଳ ପ୍ରକୃତି

ଯେତେବେଳେ ବିକାଶର ପ୍ରକ୍ରିୟା ମଧ୍ୟରେ ଯାହା କେବଳ ପୁରୁଣା ଓ ଅଚଳନ୍ତି ତା'ର "ବିଲୁପ୍ତି" ଘଟୁଛି, ଆଉ ଯାହାସବୁ ସୁସ୍ଥ ଓ ବର୍ଦ୍ଧିଷ୍ଣୁ ତାହା ସୁରକ୍ଷିତ ହେଉଛି, ସେତେବେଳେ ବିକାଶ ଏକ ପ୍ରଗତିଶୀଳ ଗତି, ନିମ୍ନତର ଅବସ୍ଥାରୁ ଉଚ୍ଚତର ଅବସ୍ଥାକୁ, ସରଳରୁ କଠିନ ଅବସ୍ଥାକୁ ଆରୋହଣ । ଅନ୍ୟ ଭାଷାରେ ବିକାଶ ହେଉଛି ପ୍ରଗତି ।

ନୂତନ ରୂପ ଭଳି ଯେତେବେଳେ କେତେକ ମୃତ ସମସ୍ତାଗତ ଓ ସ୍ଥାନଚ୍ୟୁତ ରୂପମାନଙ୍କର କୌଣସି କୌଣସି ଆକୃତି ପୁଣି ଆସେ, ସେତେବେଳେ ଉକ୍ତ ବିକାଶ-କାଳରେ ପୂର୍ବରୁ ଅତିକ୍ରାନ୍ତ ହୋଇଥିବା ଅବସ୍ଥାକୁ ଫେରିଆସିଲା ଭଳି ବାହ୍ୟ ସମସ୍ତରେ ଲାଗେ, ଏଙ୍ଗେଲସ୍ ତାଙ୍କର ସୁପରିଚିତ ଦୃଷ୍ଟାନ୍ତ ଦ୍ୱାରା ଏହି ସିଦ୍ଧାନ୍ତକୁ ବର୍ଣ୍ଣନା କରିଛନ୍ତି ।

“ଆଣ୍ଟି ଡିଉରିଙ୍ଗ”ରେ ସେ ଲେଖିଛନ୍ତି, “ଏକ ଗହମକଣାକୁ ନିଆଯାଉ । ସେହିପରି କୋଟି କୋଟି ଗହମକଣା ପେଷାଯାଉଛି, ସିଝାଯାଉଛି ଏବଂ ତା’ପରେ ତାକୁ ଖିଆଯାଉଛି । କିନ୍ତୁ ଯଦି ସେହି ଶସ୍ୟକଣା ସାଧାରଣ ଅବସ୍ଥାର ସମ୍ମୁଖୀନ ହୁଏ, ଯଦି ତାହା ଉପଯୁକ୍ତ ଭୂମିରେ ପଡ଼େ, ତେବେ ତାହା ଉତ୍ତାପ ଓ ଆର୍ଦ୍ରତାର ପ୍ରଭାବ ଦ୍ୱାରା ଏକ ନିର୍ଦ୍ଦିଷ୍ଟ ପରିବର୍ତ୍ତନ ଭିତରେ ଗତି କରେ । ତାହା ମଧ୍ୟରୁ ଗଜା ବାହାରେ । ଶସ୍ୟକଣା ଆଉ କଣା ହୋଇ ରହେ ନାହିଁ; ତା’ର ବିଲୁପ୍ତି ଘଟେ । ତା ପରିବର୍ତ୍ତେ, ତା’ର ଭିତରୁ ଉତ୍ପନ୍ନ ବୃକ୍ଷ ଦେଖାଦିଏ । ଅର୍ଥାତ୍ କଣାର ବିଲୁପ୍ତି ଘଟେ । କିନ୍ତୁ ଏହି ବୃକ୍ଷର ସାଧାରଣ ଜୀବନ ପ୍ରକ୍ରିୟା କଣ ? ଏ ଗଛ ବଢ଼େ, ଫୁଲ ଧରେ, ଫୁଲରେ ଫଳ ହୁଏ, ଶେଷରେ ପୁଣି ଥରେ ଗହମ ଫଳାଏ ଏବଂ ତାହା ପାଚିଲା ସଙ୍ଗେ ସଙ୍ଗେ ଗଛ ମରିଯାଏ । ତା ଫଳବେଳକୁ ତାର ବିଲୁପ୍ତି ଘଟେ । ଏହି ବିଲୁପ୍ତିର ବିଲୁପ୍ତି ଫଳରେ ଆମେ ପୁଣି ମୂଳ ଗହମକଣା ପାଇଥାଉଁ, କିନ୍ତୁ ଗୋଟିଏ ଶସ୍ୟକଣା ନୁହେଁ, ତା ବଦଳରେ ୨୦।୩୦ ଗୁଣ ଗହମ ପାଇଥାଉଁ ।”

ଅବଶ୍ୟ ଶସ୍ୟର ଆକୃତି ପ୍ରକୃତି ଧୀରେ ଧୀରେ ପରିବର୍ତ୍ତିତ ହୁଏ । ନୂତନ ଅମଳ ଫସଲ ଶସ୍ୟକଣା ବୁଣା ହୋଇଥିବା ବୀଜଶସ୍ୟଠାରୁ କେବେ ଫରକ ହୁଏ ନାହିଁ । ତେବେ ଯେଉଁ ଅବସ୍ଥାରେ ଅଧିକ କ୍ଷିପ୍ର ପରିବର୍ତ୍ତନ ଆସିପାରେ ସେପରି ଅବସ୍ଥା ସୃଷ୍ଟି କରିବା ସମ୍ଭବପର ; “ବିଲୁପ୍ତିର ବିଲୁପ୍ତି” ମୂଳ ଆରମ୍ଭସ୍ଥଳୀ-ଠାରୁ ଗୁଣଗତଭାବେ ଭିନ୍ନ ହେବ ଏବଂ ଦୃଷ୍ଟାନ୍ତସ୍ୱରୂପ, ନୂଆ କିସମର ଗଛ ସୃଷ୍ଟି କରିବ ।

ଯେଉଁ ପ୍ରକ୍ରିୟାମାନଙ୍କ ମଧ୍ୟରେ ପୁରାତନ ଫେରିଆସିଲା ପରି ଜଣାପଡ଼େ, ତାହା ସମାଜର ଇତିହାସରେ, ଆଉ ମଧ୍ୟ ଅବଧାରଣ କ୍ଷେତ୍ରରେ ଘଟିପାରେ ।

ଦୃଷ୍ଟାନ୍ତସ୍ୱରୂପ, ଶୋଷଣହୀନ ଆଦିମ ସାମ୍ୟଗୋଷ୍ଠୀ-କେନ୍ଦ୍ରିକ ସାମାଜିକ ବ୍ୟବସ୍ଥା, ଇତିହାସର ମଧ୍ୟ ଦେଇ ଶୋଷଣଯୁକ୍ତ ସାମାଜିକ ବ୍ୟବସ୍ଥା (ଦାସ, ସାମନ୍ତ-ବାଦୀ ଓ ପୁଞ୍ଜିବାଦୀ ବ୍ୟବସ୍ଥା) ଦ୍ୱାରା ପ୍ରତିସ୍ଥାପିତ ହେଲା । ଯାହାହେଉ ସମାଜବାଦକୁ ଗଠ କରିବା ଦ୍ୱାରା ମଣିଷ ଦ୍ୱାରା ମଣିଷର ଶୋଷଣର ଅବସାନ ଘଟିବ, ଏହିଠାରୁ ସମାଜବାଦୀ ସମାଜର, ଆଦିମ ସାମ୍ୟଗୋଷ୍ଠୀ-କେନ୍ଦ୍ରିକ ସମାଜ ସହିତ ସାଦୃଶ୍ୟ

ରହିବ । କିନ୍ତୁ ହଜାର ହଜାର ବର୍ଷ ଧରି ସମାଜର ଯେଉଁ ପ୍ରଗତିଶୀଳ ବିକାଶ ହୋଇ-ଆସିଛି ତା'ର ଏକ ବିଶିଷ୍ଟ, ମୌଳିକ ଅସାଦୃଶ୍ୟ ଏଇ ସାଦୃଶ୍ୟ ପଛରେ ରହିଛି । ଆଦିମ ସାମ୍ୟ ବ୍ୟବସ୍ଥାରେ ଲୋକଙ୍କର ସମତା, ଜୀବନଧାରଣ ଲାଗି ପ୍ରୟୋଜନୀୟ ସାମଗ୍ରୀର ଅଭାବ ଏବଂ ଆଦିମ ହାତହତିଆର ଉପରେ ପ୍ରତିଷ୍ଠିତ ଥିଲା । ସମାଜବାଦ ଓ କମ୍ୟୁନିଜମ୍ ଅମଳରେ ଲୋକମାନଙ୍କର ସମତା, ଉତ୍ପାଦନର ଉଚ୍ଚ ବିକାଶ ଏବଂ ଭୌତିକ ଓ ସାଂସ୍କୃତିକ ମୂଲ୍ୟର ପ୍ରାଚୁର୍ଯ୍ୟ ଉପରେ ପ୍ରତିଷ୍ଠିତ ।

ତେଣୁ ସାମାଜିକ ବିକାଶ ବୃତ୍ତାକାରରେ ଗତି କରି ନ ଥିଲା, କି ସିଧା ଭାବରେ ଗତି କରି ନାହିଁ; ତାହାର ଗତି ବଳୟିତ । ତାହା ଅତୀତର କେତେକ ଆକୃତିକୁ (ରୂପକୁ) ପୁନରୁତ୍ପାଦନ ବା ପୁନର୍ଗଠନ କରେ ; କିନ୍ତୁ ତାକୁ ଅପରିମେୟଭାବେ ଉଚ୍ଚତର ସ୍ତରରେ ପୁନରୁତ୍ପାଦନ କରେ । ଲେନିନ ଉକ୍ତ ବିକାଶର ଦ୍ୱନ୍ଦ୍ୱମୂଳକ ଚିନ୍ତାଧାରାର ମୁଖ୍ୟ ଆକୃତିକୁ ନିମ୍ନଲିଖିତଭାବେ ବର୍ଣ୍ଣନା କରିଛନ୍ତି : "ଏକ ବିକାଶ, ଯାହା ଅତିକ୍ରମ କରି-ଆସିଥିବା ଅବସ୍ଥାର ପୁନରାବୃତ୍ତି କଲାଭଳି ଦେଖାଯାଏ ; ତାହା କିନ୍ତୁ ଅନ୍ୟପ୍ରକାରରେ ଉଚ୍ଚତର ଭିତ୍ତି ଉପରେ ପୁନରାବୃତ୍ତି କରିଥାଏ । ସେ ବିକାଶ, କହିବାକୁ ଗଲେ, ସିଧା ଭାବରେ ନୁହେଁ, ବଳୟିତ ଭାବେ ଘଟେ ।"

ବିକାଶ ପ୍ରକ୍ରିୟାରେ, ପ୍ରଗତିଶୀଳ ଧାରାରୁ ବ୍ୟତିକ୍ରମ ଘଟିପାରେ ଏବଂ ଘଟେ । ମାର୍ଗ ଭୁଲବଙ୍କା ହୋଇପାରେ, ପଶ୍ଚାଦ୍‌ଗତି ଆସିପାରେ ଏବଂ ସାମୟିକ ସ୍ଥିର ଓ ସ୍ଥାଣୁର ଯୁଗ ଘୋଟିପାରେ ; କିନ୍ତୁ ତଥାପି ଇତିହାସ ଦର୍ଶାଇଛି ଯେ ପରିଶେଷରେ ପ୍ରଗତିଶୀଳ ଆନ୍ଦୋଳନ ଏଇସବୁ ସାମୟିକ ବ୍ୟତିକ୍ରମ ଓ ପ୍ରତିବନ୍ଧକମାନଙ୍କୁ ପରାହତ କରେ ଏବଂ ଅଗ୍ରସର ହୁଏ । ବର୍ତ୍ତମାନ ଅବସ୍ଥିତ ଯେକୌଣସି ପ୍ରାକୃତିକ ବା ସାମାଜିକ ରୂପର, ସୁଦୂର ଅତୀତ କାଳରୁ ଦୀର୍ଘ ଇତିହାସ ରହିଛି । ତାହା ସରଳରୁ ଜଟିଳକୁ ଏବଂ ନିମ୍ନତରରୁ ଉଚ୍ଚତରକୁ ଆରୋହଣ କରିବାରେ ବିକାଶର ସୁଦୀର୍ଘ ପ୍ରକ୍ରିୟାର ଫଳକୁ ପ୍ରକାଶ କରିଥାଏ ।

ଅଗ୍ନିସାକ୍ଷୀୟ ଧୂଳିପଟଳ ମଧ୍ୟରୁ ସୌର ଜଗତର ଉଦ୍‌ଭବ । ଆଧୁନିକ ଉଦ୍ଭିଦ, ବୃକ୍ଷଲତା ଏବଂ ପଶୁପକ୍ଷୀଙ୍କ ଅବୟବ ଅତି ପ୍ରାଥମିକ ସରଳ ଅବୟବ ମଧ୍ୟରୁ ବିକାଶ ଲାଭ କଲା । ସମାଜ ଆଦିମ ଅବସ୍ଥାରୁ ବର୍ତ୍ତମାନର ସମସାମୟିକ ସାମାଜିକ ଜୀବନ ଯାଏ ବହୁ ପଥ ଅତିକ୍ରମ କରିଆସିଛି । ପ୍ରୟୋଗବିଦ୍ୟା ମଧ୍ୟ ଆଦିମ ଅବସ୍ଥାର ହାତହତିଆରଠାରୁ ଆମ ସମୟର ଅତି ଜଟିଳ ଯନ୍ତ୍ରପାତି ମେସିନ ଯାଏ ଅବିରାମ ଉନ୍ନତି ଲାଭ କରୁଛି । ପ୍ରାଚୀନ ଦାର୍ଶନିକମାନଙ୍କର କପୋଳକଳ୍ପନାମିଶ୍ରିତ ଅନୁମାନାଶ୍ରିତ ଜ୍ଞାନରୁ, ମନୁଷ୍ୟର ଜ୍ଞାନ, ବର୍ତ୍ତମାନ ଅବସ୍ଥାରେ ବାସ୍ତବତାର ସମସ୍ତ କ୍ଷେତ୍ରରେ ପରିବ୍ୟାପ୍ତ ବିଜ୍ଞାନର ଜଟିଳ ଓ ଶାଖାବହୁଳ ସ୍ତରରେ ଉପନୀତ ହୋଇଛି ।

ବସ୍ତୁବାଦୀ ଦ୍ୱନ୍ଦ ପ୍ରକୃତି, ସମାଜ ଓ ମାନବଚନ୍ତାର ଏହି ପ୍ରଗତିଶୀଳ ବିକାଶର ପଥକୁ ଦର୍ଶାଇଦେବା ଦ୍ୱାରା ଲୋକମାନଙ୍କୁ ବୈଜ୍ଞାନିକ ଭିତ୍ତିଉପରେ ପ୍ରତିଷ୍ଠିତ ଏକ ଐତିହାସିକ ଆଶାବାଦ ପ୍ରଦାନ କରିଥାଏ ; ସେମାନଙ୍କୁ ଜୀବନ ଓ ସାମାଜିକ ସଂଗଠନ ଦିଗରେ ଏକ ନୂତନ ଉଚ୍ଚତର ରୂପର ସଂଗ୍ରାମରେ ସାହାଯ୍ୟ କରେ ।

## (୪) ଦ୍ୱନ୍ଦବାଦ—ବିଶ୍ୱଜଗତର ରୂପାନ୍ତର ଓ ଅବଧାରଣର ଏକ ପଦ୍ଧତି

ପ୍ରକୃତି, ସମାଜ ଓ ମାନବିକ ଚନ୍ତାର ବିକାଶର ଅତି ସାଧାରଣ ନିୟମମାନଙ୍କୁ ପ୍ରକାଶିତ ବା ଉଦ୍‌ଘାଟିତ କରିବା ଦ୍ୱାରା ବସ୍ତୁବାଦୀ ଦ୍ୱନ୍ଦ ଆମକୁ ଅବଧାରଣର ଏକ ବୈଜ୍ଞାନିକ ପଦ୍ଧତି ଯୋଗାଇଥାଏ ; ଆଉ ସେଇ ଅବଧାରଣର ଭିତ୍ତିରେ ବାସ୍ତବ ଜଗତର ବ୍ୟାବହାରିକ ରୂପାନ୍ତର ଲାଗି ମଧ୍ୟ ପଦ୍ଧତି ଯୋଗାଏ ।

### ବିଜ୍ଞାନ ଓ ବ୍ୟାବହାରିକ କର୍ମରେ ଦ୍ୱନ୍ଦବାଦର ଗୁରୁତ୍ୱ

ନିଜର ବିଶ୍ୱଜନୀନ ପ୍ରକୃତି ହେତୁ ଦ୍ୱନ୍ଦବାଦର ନିୟମଗୁଡିକ ବୈଜ୍ଞାନିକ ପଦ୍ଧତିର ବିଜ୍ଞାନଭାବେ ଗୁରୁତ୍ୱପୂର୍ଣ୍ଣ ଏବଂ ତାହା ଗବେଷଣା ଦିଗରେ ଏକ ନିର୍ଦ୍ଦେଶକ—ଅବଧାରଣ ମାର୍ଗରେ ଏକ ପରିଚାଳକଭାବେ କାର୍ଯ୍ୟ କରିଥାଏ ।

ବାସ୍ତବିକ, ଯଦି ପୃଥିବୀରେ ସମସ୍ତ ଜିନିଷ ଦ୍ୱନ୍ଦବାଦର ନିୟମ ଅନୁସାରେ ଆତଯାତ ହେଉଛି, ତେବେ ପ୍ରତ୍ୟେକ ପ୍ରପଞ୍ଚକୁ ବୁଝିବାକୁ ହେଲେ ତାକୁ ଦ୍ୱନ୍ଦମୂଳକ ଦୃଷ୍ଟିକୋଣରୁ ନିଶ୍ଚୟ ଦେଖିବା ଉଚିତ । ବିକାଶ କିପରି ଘଟୁଛି ତାହା ଜାଣିପାରିଲେ, ବିକାଶ ଲଭୁଥିବା ବାସ୍ତବତାକୁ କିପରି ଅଧ୍ୟୟନ କରିବାକୁ ପଡିବ ଏବଂ ତାକୁ ପରିବର୍ତ୍ତିତ କରିବା ଲାଗି କ'ଣ କରିବା ଉଚିତ, ତାହା ଜାଣିବାକୁ ଆମେ ସମର୍ଥ ହେବୁ । ଏହାରି ମଧ୍ୟରେ ହିଁ ବିଜ୍ଞାନ ଲାଗି ଏବଂ ଜଗତକୁ ବ୍ୟାବହାରିକ କ୍ଷେତ୍ରରେ ପୁନର୍ଗଠିତ କରିବା ସକାଶେ ଦ୍ୱନ୍ଦବାଦର ମହାନ ଗୁରୁତ୍ୱ ରହିଛି ।

ଅବଶ୍ୟ ମାର୍କ୍ସବାଦୀ ଦ୍ୱନ୍ଦବାଦ, ସ୍ୱତନ୍ତ୍ର ବିଜ୍ଞାନମାନଙ୍କର ସ୍ଥାନ ଗ୍ରହଣ କରି-ପାରେ ନାହିଁ ; ସେମାନଙ୍କ ନିର୍ଦ୍ଦିଷ୍ଟ ପ୍ରଶ୍ନ ଓ କାର୍ଯ୍ୟମାନଙ୍କୁ ସମାଧାନ କରିପାରେ ନାହିଁ । କିନ୍ତୁ ପ୍ରତ୍ୟେକଟି ବୈଜ୍ଞାନିକ ତତ୍ତ୍ୱ ହେଉଛି ବସ୍ତୁଗତ ବିଶ୍ୱଜଗତର ଏକ ପ୍ରତିଫଳନ, ଅନୁଭୂତିଗତ ତଥ୍ୟାବଳୀକୁ ଏହା ବ୍ୟାଖ୍ୟା କରେ ଓ ସାଧାରଣ ନିୟମରେ ପରିଣତ କରେ । ଏହା ସାଧାରଣ ଭାବର ବ୍ୟବହାରକୁ ପୂର୍ବରୁ କଳ୍ପନା କରେ ଏବଂ ଏହି ବ୍ୟବହାରର କଳାକୁ ଦ୍ୱନ୍ଦବାଦ ଶିକ୍ଷା ଦିଏ । ଜଣେ ବୈଜ୍ଞାନିକ, ଦ୍ୱନ୍ଦବାଦ

ସମ୍ପର୍କରେ ଯିଏ ଏକବାରେକେ ଅଜ୍ଞ, ସେ ଅଧ୍ୟୟନ କରୁଥିବା ତଥ୍ୟମୂଳକ ବିଷୟବସ୍ତୁର ଯୁକ୍ତି ଅନୁସରଣ କରି ସଠିକ ସିଦ୍ଧାନ୍ତରେ ପହଞ୍ଚିପାରି ପାରନ୍ତି, ଏହା ଠିକ୍ । ତେବେ ଦ୍ୱନ୍ଦମୂଳକ ପଦ୍ଧତିର ସଚେତନ ପ୍ରୟୋଗ ବୈଜ୍ଞାନିକଙ୍କୁ ମୂଲ୍ୟବାନ ସାହାଯ୍ୟ ଦିଏ ଏବଂ ତାଙ୍କ କାମକୁ ସହଜ କରେ ।

ବସ୍ତୁବାଦୀ ଦ୍ୱନ୍ଦବାଦର ନିୟମ ଓ ସିଦ୍ଧାନ୍ତଗୁଡ଼ିକ କୌଣସି ଏକ ବିଜ୍ଞାନର ତଥ୍ୟରୁ ଆହୃତ ନୁହେଁ; ତାହା ବିଶ୍ୱଜଗତର ଅବଧାରଣର ସମଗ୍ର ଇତିହାସର ସାମାନ୍ୟୀକରଣ ମାତ୍ର । ବୈଜ୍ଞାନିକ ଯେତେବେଳେ ନିଜ ବିଜ୍ଞାନଗତ ସମସ୍ୟାମାନଙ୍କୁ ବିଚାର କରନ୍ତି, ସେତେବେଳେ ଦ୍ୱନ୍ଦବାଦର ଜ୍ଞାନ ତାଙ୍କୁ ବୈଜ୍ଞାନିକ-ପଦ୍ଧତି-ବିଜ୍ଞାନ ଏବଂ ବୈଜ୍ଞାନିକ ବିଶ୍ୱଦୃଷ୍ଟିଭଙ୍ଗୀର ଶୀର୍ଷ ସ୍ଥାନରେ ଦଣ୍ଡାୟମାନ ହେବାରେ ସମର୍ଥ କରାଏ ; ସମସ୍ତ ବିଜ୍ଞାନ, ସମସ୍ତ ସାମାଜିକ ବ୍ୟାବହାରିକ କର୍ମର ସାଧାରଣ ଅନୁଭୂତିର ସାହାଯ୍ୟ ଦ୍ୱାରା ସେ ପୁଙ୍ଖାନୁପୁଙ୍ଖ ଗବେଷଣା କରିବାରେ ସମର୍ଥ ହୁଅନ୍ତି ।

ବାସ୍ତବତାର ନିୟମ ତଥା ତଥ୍ୟର ଅଧ୍ୟୟନକାଳରେ ଦ୍ୱନ୍ଦବାଦ ଆମ ଦୃଷ୍ଟିକୁ ତୀକ୍ଷ୍ଣ ଓ ଶାଣିତ କରେ । ତାହା ବିଜ୍ଞାନୀ, ରାଜନୀତିଜ୍ଞ, ଯନ୍ତ୍ରବିଦ୍ୟାବିତ୍, ଶିକ୍ଷାବିତ୍ ଏବଂ ଶିଳ୍ପୀମାନଙ୍କୁ ଅନ୍ତର୍ଦୃଷ୍ଟି ଦିଏ, ସେମାନଙ୍କର ନିଃଶ୍ୱାସ ବାୟୁ ଭଳି ପ୍ରୟୋଜନୀୟ ନୂତନ ପ୍ରପଞ୍ଚ ପ୍ରତି ଏକ ନମନୀୟ ଦୃଷ୍ଟିକୋଣ ଓ ଗ୍ରାହିକା ଶକ୍ତି ସେମାନଙ୍କୁ ଯୋଗାଏ ; ଅନ୍ଧବିଶ୍ୱାସ, ପକ୍ଷପାତ ବିଚାର, ପୂର୍ବକଳ୍ପିତ ଧାରଣା ଏବଂ ଭ୍ରାନ୍ତ "ଚିରନ୍ତନ ସତ୍ୟ" ଯାହାକି ଚିନ୍ତାକୁ ଶୃଙ୍ଖଳାବଦ୍ଧ କରେ ଏବଂ ବୈଜ୍ଞାନିକ ବିକାଶକୁ ପ୍ରତିହତ କରିଥାଏ, ସେସବୁକୁ ମନରୁ ଦୂର କରେ । ଅତୀତରେ ଆବଦ୍ଧ ନ ରହି ଜୀବନ ସହିତ ସମ୍ବନ୍ଧ ରଖିବାକୁ ତାହା ଶିକ୍ଷା ଦିଏ ; ଶିକ୍ଷା ଦିଏ, ନୂତନ ପ୍ରତି ଦୃଷ୍ଟି ଦିଅ ଏବଂ ସର୍ବଦା ଆଗକୁ ଅଗ୍ରସର ହୁଅ ।

ଲବ୍ଧ ଜ୍ଞାନରେ ସଦା ଅତୃପ୍ତି—ବୈଜ୍ଞାନିକ ଗବେଷଣାର ଏହି ପ୍ରାଣଶକ୍ତିକୁ, ତଥା ସତ୍ୟ ପାଇଁ ଓ ବାସ୍ତବତାର କ୍ରମବର୍ଦ୍ଧମାନ ଗଭୀର ଅବଧାରଣ ସକାଶେ ନିରନ୍ତର ଚିନ୍ତା ଏବଂ ଅନୁସନ୍ଧାନ ପିପାସାକୁ ଦ୍ୱନ୍ଦବାଦ ପ୍ରକାଶ କରେ ।

ଦ୍ୱନ୍ଦମୂଳକ ବସ୍ତୁବାଦ, ସମସ୍ତ ପ୍ରକାର ମନୋଗତ ଭାବ, ସଙ୍କୀର୍ଣ୍ଣତା ଏବଂ ଏକଦେଶଦର୍ଶିତାକୁ ବର୍ଜନ କରେ । ତାହା ବିଶ୍ୱଜଗତ ସମ୍ପର୍କରେ ଏକ ବ୍ୟାପକ ପ୍ରସାରିତ ଦୃଷ୍ଟିକୋଣ ସୃଷ୍ଟି କରେ ଏବଂ ଅଧ୍ୟୟନ ଗବେଷଣାଭୁକ୍ତ ପ୍ରପଞ୍ଚ ପ୍ରତି ଏକ ସର୍ବାଙ୍ଗବ୍ୟାପୀ ଦୃଷ୍ଟିକୋଣକୁ ଉତ୍ସାହିତ କରେ । ତାହା ପଦାର୍ଥମାନଙ୍କର, ସେମାନଙ୍କ ଗତି ଓ ବିକାଶରେ, ସେମାନଙ୍କ ସମ୍ପର୍କ ଏବଂ ମଧ୍ୟସ୍ଥିତାରେ ଏବଂ ସେମାନଙ୍କ ପାରସ୍ପରିକ ସଂକ୍ରମଣରେ ଏକ ବସ୍ତୁଗତ ଚତୁର୍ଦ୍ଦିଗପ୍ରସାରୀ ଦୃଷ୍ଟିକୋଣ ଆବଶ୍ୟକ କରେ । ବାହ୍ୟ ସହିତ ଅନ୍ତରକୁ ଦେଖିବା, କେବଳ ପ୍ରପଞ୍ଚର ଭିତରର ବିଷୟବସ୍ତୁ ନୁହେଁ,

ତା'ର ରୂପକୁ ବିସ୍ତୃତ କରିବା, କେବଳ ପ୍ରପଞ୍ଚର ଉପରଠାଉରିଆ ନିର୍ଣ୍ଣୟ ନୁହେଁ, ଆହୁରି ଗମ୍ଭୀରଭାବେ ତା'ର ମର୍ମ ଭିତରକୁ ପ୍ରବେଶ କରିବା ଏବଂ ତଥାପି ମନେ ରଖିବା ଯେ ବାହ୍ୟ ଦିଗ ମଧ୍ୟ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଓ ତାକୁ ଉପେକ୍ଷା କରିବା ଅନୁଚିତ—ଏସବୁ ବିଷୟ ତାହା ଛାତ୍ରମାନଙ୍କୁ ଶିକ୍ଷା ଦେଇଥାଏ । ପ୍ରତ୍ୟେକ ବିକାଶଶୀଳ ପ୍ରପଞ୍ଚ ମଧ୍ୟରେ ପରସ୍ପରବିରୋଧୀ ପ୍ରବୃତ୍ତି ପ୍ରତି ଦ୍ୱନ୍ଦବାଦ ଦୃଷ୍ଟି ଆକର୍ଷଣ କରେ । କ'ଣ ସ୍ଥିର ଓ କାହାର ପରିବର୍ତ୍ତନ ଘଟୁଛି ତାହାକୁ ଏହା ଦେଖିଥାଏ ଏବଂ ଯାହା ଦୃଢ଼ ଓ ପରିବର୍ତ୍ତନହୀନ ବୋଲି ଜଣାପଡ଼େ, ତା ମଧ୍ୟରେ ପରିବର୍ତ୍ତନର ବୀଜକୁ ଏହା ନିରୀକ୍ଷଣ କରିବାରେ ସକ୍ଷମ ହୁଏ ।

ଲେନିନ୍ ଲେଖିଛନ୍ତି, ଦ୍ୱନ୍ଦ ହେଉଛି, "ବାସ୍ତବତାର ନିକଟବର୍ତ୍ତୀ ଏବଂ ପ୍ରତ୍ୟେକ ପ୍ରକାର ଅଭିଗମନର ଅସଂଖ୍ୟ ବର୍ଣ୍ଣବୈଚିତ୍ର୍ୟଯୁକ୍ତ ( ଚିରନ୍ତନ ବର୍ଦ୍ଧମାନ ଉଦ୍ଦେଶ ସହିତ ) ବହୁଦେଶଦର୍ଶୀ ଜୀବନ୍ତ ଜ୍ଞାନ" ।

ଦ୍ୱନ୍ଦବାଦର ଅଧ୍ୟୟନ ଏବଂ ବ୍ୟାବହାରିକ କାର୍ଯ୍ୟରେ ତା'ର ପ୍ରୟୋଗ ଏକ ଶକ୍ତିଶାଳୀ ଶିକ୍ଷଣୀୟ ଉପାୟ । ଦ୍ୱନ୍ଦବାଦ ଏକ ନିର୍ଦ୍ଦିଷ୍ଟ ପ୍ରକାରର ବା ଧାରାର ଚିନ୍ତା ଏବଂ ବ୍ୟାବହାରିକ କ୍ରିୟାର ଏକ ସ୍ୱତନ୍ତ୍ର ରୀତିଭାବେ ବିକାଶ ଲାଭ କରେ ଯାହାକି ମନୋଗତବାଦ, ଗତିହୀନତା ଓ ହଠତାର ପରିପନ୍ଥୀ ଏବଂ ଯାହା ନୂତନ, ବର୍ଦ୍ଧିଷ୍ଣୁ ଓ ପ୍ରଗତିଶୀଳ ତା ପ୍ରତି ସମ୍ବେଦନଶୀଳ ।

ଦ୍ୱନ୍ଦ୍ୱବାଦ, ମାର୍କ୍ସବାଦର ପ୍ରକୃତ ଆତ୍ମା । ବସ୍ତୁବାଦୀ ଦ୍ୱନ୍ଦବାଦର ଅଧ୍ୟୟନ କେବଳ ବୈଜ୍ଞାନିକ ଓ ରାଜନୈତିକ ନେତା ନୁହେଁ, ନିଜର ଚତୁର୍ଦ୍ଦିଗରେ ଘଟୁଥିବା ବିକାଶକୁ ନିର୍ଭୁଲ ଓ ନିଖୁଣଭାବେ ଉପଲବ୍ଧି କରିବାକୁ ତଥା ସାମାଜିକ ଜୀବନରେ ସଚେତନ ଭାବେ ଭାଗ ନେବାକୁ ଇଚ୍ଛୁକ ପ୍ରତ୍ୟେକ ବ୍ୟକ୍ତି ପକ୍ଷରେ ଏହା ବିଶେଷ ସାହାଯ୍ୟକାରୀ ।

ପ୍ରଗତିଶୀଳ ବୈଜ୍ଞାନିକମାନେ ବିଜ୍ଞାନ ଓ ସମାଜଜୀବନର ଯଥାର୍ଥ ବିକାଶ ଦ୍ୱାରା ଅନୁପ୍ରାଣିତ ହୋଇ ଦ୍ୱନ୍ଦବାଦ ବିରୁଦ୍ଧରେ ସେମାନଙ୍କର ପକ୍ଷପାତ କୁସଂସ୍କାର ଅଧିକରୁ ଅଧିକ ପରିତ୍ୟାଗ କରୁଛନ୍ତି ଏବଂ ସାମାଜିକ ଜୀବନ ଲାଗି ତା'ର ମହାନ ଗୁରୁତ୍ୱ ବୁଝିବାକୁ ଆରମ୍ଭ କରିଛନ୍ତି ।

## ବସ୍ତୁବାଦର ସୃଜନଶୀଳ ପ୍ରୟୋଗ

ବିଜ୍ଞାନ ଓ ବ୍ୟାବହାରିକ କ୍ରିୟା ପ୍ରତି ଦ୍ୱନ୍ଦବାଦର ପ୍ରୟୋଗ କୌଣସିମତେ ସହଜ ନୁହେଁ । ଦ୍ୱନ୍ଦବାଦ, ବିଜ୍ଞାନ ଓ ବ୍ୟାବହାରିକ କ୍ରିୟାର ବିଭିନ୍ନ ପ୍ରଶ୍ନର ଏକ

ଧରାବନ୍ଧା ଉତ୍ତରମାଳା ନୁହେଁ । କାର୍ଯ୍ୟ ପାଇଁ, ଜୀବନର ସଂବେଦନ ଏବଂ ତା'ର ପ୍ରବୃତ୍ତି ଓ ଧାରା ପ୍ରତି ତାହା ଏକ ଜୀବନ୍ତ ନମନୀୟ ନିର୍ଦ୍ଦେଶକ ।

ଦ୍ୱନ୍ଦବାଦର ନିୟମ ଓ ସିଦ୍ଧାନ୍ତମାନଙ୍କୁ ଗୋଟାଏ ନମୁନାଭାବେ ଧରିନେବା ଉଚିତ ନୁହେଁ, ଯାହା ମଧ୍ୟରେ ବାସ୍ତବତାର ତଥ୍ୟାବଳୀକୁ ମନମୁଖୀଭାବେ ଫିଟ୍ କରି ଦିଆଯାଇପାରେ । ଏହା ଏକ ତର୍କହୀନ, ପଣ୍ଡିତମ୍ମନ୍ୟ, ହଠଧର୍ମୀ ଧାରଣା ।

ଦ୍ୱନ୍ଦବାଦର ନିୟମ ବିଶ୍ୱଜନୀନ । ତାହା ସମସ୍ତ ପଦାର୍ଥ ଓ ପ୍ରପଞ୍ଚର ବିକାଶ ପ୍ରତି ପ୍ରଯୋଜ୍ୟ । ତଥାପି ମନେ ରଖିବା ଉଚିତ ଯେ, ଗୁଣଗତଭାବେ ବିଭିନ୍ନ ପ୍ରକ୍ରିୟା ମଧ୍ୟରେ, ଭୌତିକ ଜଗତର ବିଭିନ୍ନ କ୍ଷେତ୍ରରେ ସେମାନେ ବିଭିନ୍ନ ଭାବରେ କାର୍ଯ୍ୟ କରନ୍ତି । ଜୈବିକ ଜଗତରେ ଗୋଟାଏ ରୂପରେ ଏବଂ ଅଜୈବିକ ଜଗତରେ ଅନ୍ୟ ଏକ ରୂପରେ ସେମାନେ ଆତ୍ମପ୍ରକାଶ କରନ୍ତି । ସମାଜର ବିକାଶରେ ସେମାନଙ୍କର ପ୍ରକୃତି, ପ୍ରକୃତିର ବିବର୍ତ୍ତନରେ ସେମାନଙ୍କ ପ୍ରକୃତିଠାରୁ ପୃଥକ । ସମାଜବାଦୀ ସମାଜର ଜୀବନରେ ସେମାନେ ଗୋଟାଏ ପ୍ରକାର କାର୍ଯ୍ୟ କରନ୍ତି ଏବଂ ପୁଞ୍ଜିବାଦୀ ସମାଜର ଜୀବନରେ ଅନ୍ୟଭାବେ କାର୍ଯ୍ୟ କରିଥାନ୍ତି ।

ଅବଧାରଣର ପ୍ରକ୍ରିୟା ଏବଂ ବ୍ୟାବହାରିକ କ୍ରିୟାରେ ଦ୍ୱନ୍ଦବାଦର ପ୍ରୟୋଗ କରିବାକୁ ହେଲେ ଦ୍ୱନ୍ଦବାଦର ନୀତିକୁ କେବଳ ଆୟତ୍ତ କରିବା ଯଥେଷ୍ଟ ନୁହେଁ, ସମସ୍ତ ନିର୍ଦ୍ଦିଷ୍ଟ ଘଟଣା ଓ ପରିସ୍ଥିତି ସମ୍ପର୍କରେ ଗଭୀର ଜ୍ଞାନ ପ୍ରୟୋଜନ । ପ୍ରତ୍ୟେକ ନିର୍ଦ୍ଦିଷ୍ଟ ଅବସ୍ଥାକୁ ଅତି ଯତ୍ନର ସହିତ ପୁଙ୍ଖାନୁପୁଙ୍ଖ ଅଧ୍ୟୟନ କଲାପରେ, ଏକ ସୁନିର୍ଦ୍ଦିଷ୍ଟ କ୍ଷେତ୍ରରେ କିପରି ଏବଂ କେଉଁ ରୂପରେ ଦ୍ୱନ୍ଦବାଦୀ ନିୟମ କାର୍ଯ୍ୟ କରୁଛି, ଅବସ୍ଥାର ମୂଲ୍ୟ ନିରୂପଣ କିପରି କରିବାକୁ ପଡ଼ିବ, ସଫଳତା ହାସଲ ଲାଗି କେଉଁ କାର୍ଯ୍ୟକ୍ରମ ଗ୍ରହଣୀୟ, ସେ ବିଷୟ ଜଣାଯାଇପାରିବ । ସେଇ କାରଣରୁ ହିଁ ଦ୍ୱନ୍ଦବାଦ ସଦାସର୍ବଦା ସୃଜନଶୀଳଭାବେ ବ୍ୟବହୃତ ହୋଇଥାଏ ।

ମାର୍କ୍ସବାଦ-ଲେନିନ୍‌ବାଦର ପ୍ରତିଷ୍ଠାତା ମାର୍କ୍ସ-ଏଙ୍ଗେଲ୍ସ-ଲେନିନଙ୍କର ରଚନାବଳୀ ଏବଂ ସୋଭିଏତ୍ ରୁଷ୍‌ର କମ୍ୟୁନିଷ୍ଟ ପାର୍ଟି ତଥା ଅନ୍ୟାନ୍ୟ କମ୍ୟୁନିଷ୍ଟ ଓ ଶ୍ରମିକ ପାର୍ଟିମାନଙ୍କର ନିଷ୍ପତ୍ତି ଓ କାର୍ଯ୍ୟ ମଧ୍ୟରେ ବସ୍ତୁବାଦୀ ଦ୍ୱନ୍ଦବାଦ ବ୍ୟବହାରର ମହାନ ଦୃଷ୍ଟାନ୍ତ ଜରିଆରେ ତାହା ସହଜ ସୁଗମ ହୋଇଛି ।

ସୋଭିଏତ୍ ରୁଷର କମ୍ୟୁନିଷ୍ଟ ପାର୍ଟି ଏବଂ ଅନ୍ୟାନ୍ୟ ମାର୍କ୍ସବାଦୀ ପାର୍ଟିମାନେ ଯେଉଁ ବିପୁଳ ବିଜୟ ହାସଲ କରିଛନ୍ତି ତା'ର ଏକ ପ୍ରଧାନ କାରଣ ହେଲା ଯେ ସେମାନଙ୍କର ନୀତି, ସେମାନଙ୍କର ସମସ୍ତ କାର୍ଯ୍ୟକ୍ରମ ବସ୍ତୁବାଦୀ ଦ୍ୱନ୍ଦବାଦର ପଦ୍ଧତି ଦ୍ୱାରା ପରିଚାଳିତ ଏବଂ ଉକ୍ତ ପଦ୍ଧତି ସେମାନେ ସୃଜନଶୀଳଭାବେ ବିକାଶ କରନ୍ତି । ଦ୍ୱନ୍ଦମୂଳକ ବସ୍ତୁବାଦରୁ ବିଚ୍ୟୁତ ହେଲେ ଏବଂ ତା'ର ନିୟମ ଓ ସିଦ୍ଧାନ୍ତମାନଙ୍କୁ ଉପେକ୍ଷା

କଲେ ତାହା ଅବଶେଷରେ ତାତ୍ତ୍ୱିକ ବିଶ୍ଳେଷଣ ଏବଂ ବ୍ୟାବହାରିକ କାର୍ଯ୍ୟକ୍ରମର ବିଫଳତା ଡକିଆଣେ । ସମାଜବାଦୀ ଦେଶମାନଙ୍କର କମ୍ୟୁନିଷ୍ଟ ଓ ଶ୍ରମିକ ପାର୍ଟିମାନଙ୍କ ପ୍ରତିନିଧିମାନଙ୍କର ୧୯୫୭ ନଭେମ୍ବର ୧୪—୧୬ ରେ ମସ୍କୋଠାରେ ହୋଇଥିବା ବୈଠକର ଘୋଷଣାରେ ଯଥାର୍ଥରୂପେ କୁହାଯାଇଛି :

ଯଦି ମାର୍କ୍ସବାଦୀ ପାର୍ଟିମାନେ, ସେମାନେ ସମ୍ମୁଖୀନ ହେଉଥିବା ପ୍ରଶ୍ନମାନଙ୍କ ପରୀକ୍ଷା କାଳରେ ନିଜକୁ ଦ୍ୱନ୍ଦ୍ୱବାଦ ଓ ବସ୍ତୁବାଦର ଭିତ୍ତି ଉପରେ ପ୍ରତିଷ୍ଠିତ ନ କରନ୍ତି, ତେବେ ଫଳ ହେବ—ଏକଦେଶଦର୍ଶିତା, ଆତ୍ମବାଦ, ମାନବଚିନ୍ତାର ଗତିହୀନତା, ଜୀବନଠାରୁ ବିଚ୍ଛେଦ ଏବଂ ପଦାର୍ଥ ଓ ପ୍ରପଞ୍ଚମାନଙ୍କର ଅପରିହାର୍ଯ୍ୟ ବିଶ୍ଳେଷଣ କରିବା କାର୍ଯ୍ୟରେ ଅସାମର୍ଥ୍ୟ । ସଂଶୋଧନବାଦୀ ଓ ଗୋଷ୍ଠିବାଦୀ ତ୍ରୁଟି ଏବଂ ମତଗତ ପ୍ରମାଦ ହେବ ଶେଷ ପରିଣାମ ।

ବାସ୍ତବତାର ଅଧ୍ୟୟନ ଲାଗି ଦ୍ୱନ୍ଦ୍ୱବାଦ କେବଳ ଏକ ପଦ୍ଧତି ନୁହେ ବାସ୍ତବର ବୈପ୍ଳବିକ ପରିବର୍ତ୍ତନର ମଧ୍ୟ ଏହା ପଦ୍ଧତି । ଆମକୁ ଘେରି ରହିଥିବା ବିଶ୍ୱଜଗତ ପ୍ରତି ତାହା ଏକ ସକ୍ରିୟ ଫଳପ୍ରଦ ଦୃଷ୍ଟିଭଙ୍ଗୀର ଗୁରୁତ୍ୱ ଉପରେ ବିଶେଷ ଜୋର ଦିଏ । କାର୍ଯ୍ୟକ୍ଷେତ୍ରରେ—କର୍ମ, ଶ୍ରମ, ଶ୍ରେଣୀସଂଗ୍ରାମ ଏବଂ ସାମ୍ୟବାଦର ନିର୍ମାଣରେହିଁ—ବସ୍ତୁବାଦୀ ଦ୍ୱନ୍ଦ୍ୱର ପ୍ରସ୍ଥାପନା ଓ ତା'ର ନିୟମ ପରୀକ୍ଷିତ ହୁଏ । ଦ୍ୱନ୍ଦ୍ୱବାଦର ଅଧିକତର ବିକାଶ ଲାଗି, ତା'ର ସିଦ୍ଧାନ୍ତଗୁଡ଼ିକୁ ଅଧିକ ସ୍ପଷ୍ଟ ଓ ପ୍ରାଞ୍ଜଳ କରିବାରେ ଏବଂ ତା'ର ନିୟମମାନଙ୍କର ଗଭୀର ଓ ପୂର୍ଣ୍ଣ ଅଧ୍ୟୟନ ସକାଶେ, ବ୍ୟାବହାରିକ କ୍ରିୟା ପ୍ରଚୁର ବାସ୍ତବ ସଂପଦ ପ୍ରଦାନ କରେ ।

ସେଇ କାରଣରୁ ମାର୍କ୍ସବାଦୀ ଦ୍ୱନ୍ଦ୍ୱବାଦର ସୃଜନଶୀଳ ପ୍ରୟୋଗ ସର୍ବାଗ୍ରେ ବ୍ୟାବହାରିକ କ୍ରିୟାର ଏକ ହତିଆର, ଜୀବନକୁ ରୂପାନ୍ତରିତ କରିବାର ଏକ ଉପାୟ ।

# ତୃତୀୟ ଅଧ୍ୟାୟ

# ଜ୍ଞାନର ତତ୍ତ୍ୱ

ପରିବେଷ୍ଟନ କରିଥିବା ବିଶ୍ୱଜଗତ ସମ୍ପର୍କରେ ମନୁଷ୍ୟର ଅବଧାରଣର ଏକ ସୁଦୀର୍ଘ ଇତିହାସ ରହିଛି । ଅଜ୍ଞାନରୁ ଜ୍ଞାନକୁ, ଅପୂର୍ଣ୍ଣ ତ୍ରୁଟିଯୁକ୍ତ ଜ୍ଞାନରୁ ଉତ୍ତରୋତ୍ତର ପୂର୍ଣ୍ଣ ଓ ପ୍ରଗାଢ଼ ଜ୍ଞାନକୁ ତାହା କ୍ରମଶଃ ଗତି କରେ । ଏଇ ପ୍ରକ୍ରିୟାର ସ୍ୱତନ୍ତ୍ର ରୂପ ଓ ନିୟମଗୁଡ଼ିକ ମାର୍କ୍ସବାଦୀ ତତ୍ତ୍ୱଜ୍ଞାନ ଦ୍ୱାରା ପ୍ରକଟିତ ହୋଇଥାଏ ।

ଅବଧାରଣର ନିୟମମାନଙ୍କ ଉପଲବ୍ଧି କରିବାକୁ ହେଲେ, ତାଙ୍କର ବିକାଶ, ତାଙ୍କର ଉତ୍ପତ୍ତି ଏବଂ ତାଙ୍କ ଭିତରର ବିପରୀତ ପ୍ରବୃତ୍ତିମାନଙ୍କର ସଂଘାତ ପ୍ରତି ଦୃଷ୍ଟିପାତ କରିବାକୁ ହେବ । ବିକାଶର ସମସ୍ତ ପ୍ରକ୍ରିୟା ଭଳି ମାର୍କ୍ସବାଦୀ ଦ୍ୱନ୍ଦ୍ୱବାଦ ଦ୍ୱାରା ପ୍ରକଟିତ ବିଶ୍ୱଜନୀନ ନିୟମ ଦ୍ୱାରା ତାହା ନିୟନ୍ତ୍ରିତ । ଲେନିନ୍ ଲେଖିଥିଲେ, ଦ୍ୱନ୍ଦ୍ୱ ହେଉଛି ଅବଧାରଣର ମାର୍କ୍ସବାଦୀ ତତ୍ତ୍ୱ । ଏଇ ମାର୍କ୍ସବାଦୀ ତତ୍ତ୍ୱଜ୍ଞାନ ଅବଧାରଣର ସମସ୍ୟାମାନଙ୍କ ପ୍ରତି ଆପଣାର ଦ୍ୱନ୍ଦ୍ୱମୂଳକ ବସ୍ତୁର ଦୃଷ୍ଟି ହେତୁ, ପ୍ରାକ୍-ମାର୍କ୍ସୀୟ ବସ୍ତୁବାଦୀଙ୍କ ଦ୍ୱାରା ବିକଶିତ ତତ୍ତ୍ୱମାନଙ୍କଠାରୁ ନିଜକୁ ପୃଥକ୍ ଭାବେ ଚିହ୍ନିତ କରିଥାଏ ।

## (୧) ବ୍ୟାବହାରିକ କ୍ରିୟା—
## ଅବଧାରଣର ଭିତ୍ତି ଓ ଉଦ୍ଦେଶ୍ୟ

ପରିବେଷ୍ଟନ କରିଥିବା ବିଶ୍ୱଜଗତର ଅବଧାରଣ—ବସ୍ତୁର ସୁଦୂର ପ୍ରସାରିତ ନୀହାରିକା ମଣ୍ଡଳ ଓ ସୂକ୍ଷ୍ମ ଅଣୁ ପରମାଣୁର ଅନୁସନ୍ଧାନ, ପୃଥିବୀ ବକ୍ଷରେ ଜୀବସତ୍ତାର

ଉତ୍ପତ୍ତି ଏବଂ ପ୍ରାଚୀନ ସଂସ୍କୃତିର ଇତିହାସ ଅଧ୍ୟୟନ, ଜଟିଳ ଗାଣିତିକ ସମସ୍ୟା-ମାନଙ୍କର ସମାଧାନ ଏବଂ ଜାଗତିକ ରଶ୍ମିର ବିଶ୍ଳେଷଣ ଇତ୍ୟାଦି—ଏ ସମସ୍ତ ଅତ୍ୟନ୍ତ ଆକର୍ଷଣୀୟ, ମନୋମୁଗ୍ଧକର କାର୍ଯ୍ୟ । ତାହା ଗବେଷଣାରତ କର୍ମୀମାନଙ୍କ ପକ୍ଷରେ ମହାନ ତୃପ୍ତି ଓ ଆନନ୍ଦର ଉତ୍ସ ଏବଂ ଅନେକଙ୍କ ନିମନ୍ତେ ତାଙ୍କର ସମସ୍ତ ଜୀବନର ଉଦ୍ଦେଶ୍ୟ । ଲୋକ କେବଳ ଆନନ୍ଦପ୍ରାପ୍ତି ଲାଗି ନିଜକୁ ବିଜ୍ଞାନରେ ନିୟୋଗ କରେ ନାହିଁ । ମନୁଷ୍ୟର ଦୈନନ୍ଦିନ କର୍ମକ୍ଷେତ୍ରରେ, ପ୍ରକୃତି ବିରୁଦ୍ଧରେ ତା'ର ସଂଗ୍ରାମରେ, ପୁଣି ତା'ର ସାମାଜିକ କାର୍ଯ୍ୟକ୍ରମରେ, ଅର୍ଥାତ୍ ଯେଉଁସବୁ ବ୍ୟାବହାରିକ ବ୍ୟାପାର ଉପରେ ବ୍ୟକ୍ତିଗତ ଭାବେ ପ୍ରତ୍ୟେକର ଏବଂ ସମଗ୍ର ସମାଜର ଅସ୍ତିତ୍ୱ ନିର୍ଭର କରେ, ଜ୍ଞାନ ସେସବୁକୁ ମହାନ ଶକ୍ତି ଯୋଗାଇଥାଏ ।

ଅନେକ ସମୟରେ ଭାବବାଦୀ ଦାର୍ଶନିକମାନେ ଜ୍ଞାନକୁ ବ୍ୟାବହାରିକ କ୍ରିୟାରୁ ପୃଥକ କରି ତାକୁ ତା'ର ବିପରୀତ ବିଷୟଭାବେ ଉପସ୍ଥାପିତ କରିବାକୁ ଉଦ୍ୟମ କରନ୍ତି । ଭାବବାଦୀମାନେ ଏ ଦୃଷ୍ଟିକୋଣରୁ ଅଗ୍ରସର ହୁଅନ୍ତି ଯେ, ସତ୍ୟ ଅନ୍ୱେଷଣରେ ମନୁଷ୍ୟର ଅନନ୍ତ ଲିପ୍ସାର ଫଳ ହେଉଛି ଅବଧାରଣ ଏବଂ ତାହା ବ୍ୟାବହାରିକ କ୍ରିୟା ଉପରେ ନିର୍ଭର କରେ ନାହିଁ କିମ୍ବା ବ୍ୟାବହାରିକ କ୍ରିୟା ବିଶ୍ୱଜଗତର ଅବଧାରଣ ସହିତ ସଂଶ୍ଳିଷ୍ଟ ନୁହେଁ, ଆଉ ମନୁଷ୍ୟର ମନୀଷା କେବଳ ପଦାର୍ଥସମୂହକୁ ଆୟତ୍ତ କରିବା ଏବଂ କାର୍ଯ୍ୟରେ ସଫଳତା ଅର୍ଜନ ଲାଗି ପରିକଳ୍ପିତ, କାରଣ ବିଶ୍ୱଜଗତର ପ୍ରକୃତ ଅବଧାରଣ ହୁଏତ ସମ୍ପୂର୍ଣ୍ଣ ଅସମ୍ଭବ (ଫ୍ରେଡ୍ରିକ୍ ନୀତ୍ସେ ଏବଂ ଅନ୍ୟମାନେ) କିମ୍ବା ଗୂଢ଼ ଅନ୍ତର୍ଜ୍ଞାନ ଦ୍ୱାରାହିଁ ତାହା କେବଳ ସମ୍ଭବ (ହେନେରି ବରଗ୍‌ସନ୍) ।

ଏ ଉଭୟ ଦୃଷ୍ଟିକୋଣ, ଅବଧାରଣ ଓ କର୍ମ, ତତ୍ତ୍ୱ ଏବଂ ବ୍ୟାବହାରିକ କ୍ରିୟାର ପ୍ରକୃତ ସମ୍ବନ୍ଧକୁ କଦର୍ଥ ଓ ବିକୃତ କରନ୍ତି ।

ବିଜ୍ଞାନର ଉତ୍ଥାନ ଓ ବିକାଶ ଦୃଢ଼ଭାବେ ପ୍ରମାଣ କରେ ଯେ ବିଜ୍ଞାନ ଓ ଅବଧାରଣ ସାଧାରଣଭାବେ ବ୍ୟାବହାରିକ କ୍ରିୟାର ପ୍ରୟୋଜନୀୟତା ମଧ୍ୟରୁହିଁ ଜାତ ଏବଂ ବ୍ୟାବହାରିକ କ୍ରିୟା ହେଉଛି ଅବଧାରଣ ଲାଗି ଅପରିହାର୍ଯ୍ୟ ଅବସ୍ଥା ଏବଂ ତା'ର ଭିତ୍ତି ।

ମନୁଷ୍ୟ ତା'ର ବ୍ୟାବହାରିକ କ୍ରିୟା ଦ୍ୱାରା ପାରିପାର୍ଶ୍ୱିକ ଜଗତ ସହିତ ପ୍ରତ୍ୟକ୍ଷ ସଂସର୍ଗରେ ପ୍ରବେଶ କରେ । ପଦାର୍ଥ ଓ ବିଷୟଗୁଡ଼ିକ ସହିତ କାର୍ଯ୍ୟ ହେବା ଦ୍ୱାରା ଏବଂ ସେମାନେ ପରିବର୍ତ୍ତିତ ହେବା ଫଳରେ ସେମାନେ ତାଙ୍କର ପୂର୍ବର ଅଜ୍ଞାତ ଲକ୍ଷଣମାନ ମନୁଷ୍ୟ ସମ୍ମୁଖରେ ପ୍ରକାଶ କରନ୍ତି । କୌଣସି ପଦାର୍ଥକୁ ବ୍ୟବହାର କରିବା ସଙ୍ଗେ ସଙ୍ଗେ ତାକୁ ଅବଧାରଣ କରାଯାଏ । ଯେତେବେଳେ ବ୍ୟାବହାରିକ କ୍ରିୟା ସମ୍ମୁଖ

ହୁଏ ଏବଂ ଅଧିକ ବିବିଧ ରୂପ ଗ୍ରହଣ କରେ, ସେ ସମସ୍ତରେ ଅବଧାରଣର ସମ୍ଭାବନା ଅଧିକ ବ୍ୟାପକ ଓ ପ୍ରସାରିତ ହୋଇଉଠେ ।

ସବୁଠାରୁ ବିମୂର୍ତ୍ତି ବିଜ୍ଞାନକୁ ମିଶାଇ ସକଳ ବିଜ୍ଞାନ ମନୁଷ୍ୟଜୀବନର ବ୍ୟାବହାରିକ ପ୍ରୟୋଜନୀୟତାର ପ୍ରତିବେଦନସ୍ୱରୂପେ ଜାତ । 'ଜ୍ୟାମିତି' ଏଇ ନାମରୁ ଜଣାଯାଏ ଯେ ତାହା ପ୍ରଥମେ ଜମିର ମାପଚୁପ ସହିତ ସଂପୃକ୍ତ; ସେଇପରି ଗଣିତ-ଜ୍ୟୋତିଷ ନୌଚାଳନା, କୃଷିକର୍ମ ଲାଗି ଦିବସ ଗଣନା ଓ ପାଞ୍ଜି ତିଆରି ସହିତ ସଂପୃକ୍ତ ; ଆଉ ଯନ୍ତ୍ରବିଦ୍ୟା ନିର୍ମାଣ ଓ ଦୃଢ଼ ପ୍ରତିରକ୍ଷା ବ୍ୟବସ୍ଥାର କଳାକୌଶଳ ସହିତ ସଂପୃକ୍ତ—ଇତ୍ୟାଦି ।

ଅବଧାରଣ ଯେ କର୍ମ ଉପରେ ନିର୍ଭରଶୀଳ ଏହା ସୁଦୂର ଅତୀତ କାଳରେ ହିଁ ଆମେ ଦେଖିଛୁଁ, ଏପରି ନୁହେଁ । ଏବେ ମଧ୍ୟ ଦେଖୁଁ ଯେ ଯୁକ୍ତିବାଦର ଆବିର୍ଭାବ ସହିତ ଯେତେବେଳେ ଶିଳ୍ପର ଦ୍ରୁତ ଓ ବ୍ୟାପକ ପ୍ରସାର ଘଟିଲା, ସେତେବେଳେ ପ୍ରକୃତିବିଜ୍ଞାନ ଅତ୍ୟନ୍ତ ପ୍ରଖର ବେଗରେ ଅଗ୍ରସର ହେଲା । ବର୍ତ୍ତମାନ ଅବସ୍ଥାରେ ମଧ୍ୟ ବିଜ୍ଞାନ ବ୍ୟାବହାରିକ ଜୀବନ ସହିତ ଅବିଚ୍ଛେଦ୍ୟଭାବେ ସଂଶ୍ଲିଷ୍ଟ । ଏଇ ସଂପର୍କ ବିଜ୍ଞାନର ବିମୂର୍ତ୍ତି ତାତ୍ତ୍ୱିକ କ୍ଷେତ୍ରରେ ଅଧିକ ଜଟିଳ ଓ ପରୋକ୍ଷ ହୋଇଉଠୁଛି । କିନ୍ତୁ ବ୍ୟାବହାରିକ କ୍ରିୟା ସଦାବେଳେ ଅବଧାରଣର ମୌଳିକ ଭିତ୍ତି, ତା'ର ପ୍ରଧାନ ଉଦ୍ଦୀପନା ଏବଂ କ୍ରିୟାଶକ୍ତି ।

ପ୍ରାକ୍-ମାର୍କ୍ସୀୟ ବସ୍ତୁବାଦୀମାନଙ୍କର ସବୁଠାରୁ ଏକ ବଡ଼ ତ୍ରୁଟି ଠିକ୍ ଏଇଥିରେ ଯେ ସେମାନେ ସେଇ ଅବଧାରଣ ଓ କର୍ମର ସମ୍ବନ୍ଧ ବୁଝିବାରେ ଅସମର୍ଥ ଥିଲେ । ଏହା ଅବଶ୍ୟ ସତ ଯେ ବସ୍ତୁବାଦୀ ଦାର୍ଶନିକମାନେ ମନୁଷ୍ୟଜୀବନ ପାଇଁ ବୈଜ୍ଞାନିକ ଜ୍ଞାନର ଗୁରୁତ୍ୱ କଥା ବାରମ୍ବାର କହନ୍ତି । ଦୃଷ୍ଟାନ୍ତସ୍ୱରୂପ, ସପ୍ତଦଶ ଶତାବ୍ଦୀରେ ଆଧୁନିକ ବସ୍ତୁବାଦୀ ଦର୍ଶନର ଜନ୍ମଦାତା ଫ୍ରାନ୍‌ସିସ୍ ବେକନ୍ କହିଥିଲେ ଯେ ମନୁଷ୍ୟଜୀବନର ଉନ୍ନତି ଲାଗି ପ୍ରକୃତିକୁ ଆୟତ୍ତ କରିବା ହେଲା ବିଜ୍ଞାନର ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ଉଦ୍ଦେଶ୍ୟ । ଯଦିଓ ପ୍ରାଚୀନ ବସ୍ତୁବାଦୀମାନେ ବ୍ୟାବହାରିକ କର୍ମ ଲାଗି ଜ୍ଞାନର ଗୁରୁତ୍ୱ ଧରି ପାରି-ଥିଲେ ତେବେବି ସେମାନେ ଅବଧାରଣ (ଜ୍ଞାନ) ଲାଗି କର୍ମର ଗୁରୁତ୍ୱ ଉପଲବ୍ଧି କରି ପାରି ନ ଥିଲେ । ପୁରାତନ ପ୍ରାକ୍-ମାର୍କ୍ସୀୟ ବସ୍ତୁବାଦ ଥିଲା ଧ୍ୟାନନିଷ୍ଠ ।

ଯେଉଁ ବିଜ୍ଞାନୀମାନେ ପ୍ରକୃତିକୁ ନିରୀକ୍ଷଣ କରନ୍ତି ଓ ସେ ସମ୍ବନ୍ଧୀୟ ଚିନ୍ତନରେ ରତ ଥାଆନ୍ତି, ଅବଧାରଣ ସେମାନଙ୍କର କେବଳ ମାତ୍ର ତାତ୍ତ୍ୱିକ କର୍ମ ବୋଲି ପୁରାତନ ପ୍ରାକ୍-ମାର୍କ୍ସୀୟ ବସ୍ତୁବାଦ ବିଚାର କରୁଥିଲା ।

ସେମାନେ ଜନସାଧାରଣଙ୍କ ସାମାଜିକ, ରାଜନୈତିକ କିମ୍ବା ଉତ୍ପାଦନ ସଂକ୍ରାନ୍ତ କାର୍ଯ୍ୟ ସହିତ ଅବଧାରଣର ସଂପର୍କ ଦେଖୁ ନ ଥିଲେ । ପୁଣି, ତାଙ୍କ ମତରେ ଜ୍ଞାନ

ଆହରଣ ଅଲ୍ପ କେତେଜଣଙ୍କର ବିଶେଷ ଅଧିକାର ହୋଇ ରହିବା ଅତିଶୟ ସ୍ୱାଭାବିକ ଓ ଅପରିହାର୍ଯ୍ୟ କାର୍ଯ୍ୟ ଥିଲା । ଆଉ ଜ୍ଞାନଶୂନ ସାଧାରଣଙ୍କ ପକ୍ଷରେ "ନୀଚ" ବ୍ୟାବହାରିକ କର୍ମ ଓ ଶାରୀରିକ ଶ୍ରମ ଥିଲା ଭାଗ୍ୟର ଲିଖନ ।

କେବଳ ମାର୍କ୍ସ ଓ ଏଙ୍ଗେଲ୍ସ ଶୋଷକଶ୍ରେଣୀର ତତ୍ତ୍ୱବିତ୍ମାନଙ୍କର ଚରିତ୍ରଗତ ପକ୍ଷପାତୀ କୁସଂସ୍କାର ଧାରଣାରୁ ମୁକ୍ତ ରହି ଅବଧାରଣର ପ୍ରକ୍ରିୟାରେ ମନୁଷ୍ୟର ବ୍ୟାବହାରିକ କ୍ରିୟା କିପରି ନିଷ୍ପତ୍ତିମୂଳକ ଭୂମିକା ଗ୍ରହଣ କରେ, ତାହା ଉପଲବ୍ଧି କରିଥିଲେ । ଉତ୍ପାଦନ କ୍ଷେତ୍ରରେ ମନୁଷ୍ୟର ଦୈନନ୍ଦିନ ବ୍ୟାବହାରିକ କର୍ମ ଯାହାକି ସମାଜିକ ଅସ୍ତିତ୍ୱ ଲାଗି ଭୌତିକ ଭିତ୍ତି ସୃଷ୍ଟି କରେ, ଅବଧାରଣ ଦିଗରେ ମଧ୍ୟ ତା'ର ଯେ ବିରାଟ ଗୁରୁତ୍ୱପୂର୍ଣ୍ଣ ତାତ୍ପର୍ଯ୍ୟ ରହିଛି,—ଏ ସିଦ୍ଧାନ୍ତରେ ସେମାନେ ଉପନୀତ ହୋଇଥିଲେ । "ଜୀବନର ଏବଂ ବ୍ୟାବହାରିକ କର୍ମର ଦୃଷ୍ଟିଭଙ୍ଗୀ, ଜ୍ଞାନର ତତ୍ତ୍ୱରେ ସର୍ବପ୍ରଧାନ ଓ ମୌଳିକ ଭିତ୍ତି ହେବା ଉଚିତ"—ଏହା ସେମାନେ ପ୍ରତିପାଦିତ କରିଥିଲେ ବୋଲି ଲେନିନ୍ ଦର୍ଶାଇଛନ୍ତି ।

ମାର୍କ୍ସବାଦ ବ୍ୟାବହାରିକ କର୍ମକୁ ଅବଧାରଣ ପ୍ରକ୍ରିୟାର ଭିତ୍ତି ଓ ଉଦ୍ଦେଶ୍ୟ ଏବଂ ଜ୍ଞାନର ଦୃଢ଼ନିର୍ଭରଯୋଗ୍ୟ ମାନଦଣ୍ଡ ବୋଲି ବିଗ୍ଭର କର୍ମକୁ ଜ୍ଞାନତତ୍ତ୍ୱର ଅନ୍ତର୍ଭୁକ୍ତ କରିଥିଲା । ପ୍ରାକ୍-ମାର୍କ୍ସୀୟ ବସ୍ତୁବାଦ ସହିତ ତାହାର ପ୍ରଭେଦ ଏଇଠି ।

ଜ୍ଞାନର ତତ୍ତ୍ୱ ମଧ୍ୟରେ ମାର୍କ୍ସବାଦ ଜୀବନ ଓ ବ୍ୟାବହାରିକ କର୍ମର ଦୃଷ୍ଟି-କୋଣକୁ ପ୍ରବର୍ତ୍ତନ କରିବା ଦ୍ୱାରା ଅବଧାରଣକୁ ସିଧାସଳଖ ଶିଳ୍ପ, କୃଷି, ଗବେଷଣାଗାର ଏବଂ ଲୋକମାନଙ୍କ ସାମାଜିକ କାର୍ଯ୍ୟକ୍ରମ ସହିତ ସଂଯୁକ୍ତ କରିଛି । ମାର୍କ୍ସବାଦ ତତ୍ତ୍ୱକୁ ନୀତିଗତ ଭାବେ ବ୍ୟାବହାରିକ କର୍ମଠାରୁ ଭିନ୍ନ ବୋଲି ବିଗ୍ଭର କରେ ନାହିଁ ; ତାହା ତତ୍ତ୍ୱକୁ ମନୁଷ୍ୟର ବ୍ୟାବହାରିକ କର୍ମଜାତ ଅଭିଜ୍ଞତାର ସୁସ୍ପଷ୍ଟ ପରିପ୍ରକାଶ ଓ ସଚରାଚର ସାଧାରଣ ଭାବ ବୋଲି ବିଗ୍ଭର କରେ ।

ମନୁଷ୍ୟର ଭୌତିକ ଓ ମାନସିକ କ୍ରିୟା ଯେମିତି ପରସ୍ପରର ବିପରୀତ ସେଇପରି କର୍ମ ଓ ତତ୍ତ୍ୱ ପରସ୍ପରର ବିପରୀତ । ଅଥଚ, ଏଇସବୁ ବିପରୀତ ଭାବ ପରସ୍ପର ମଧ୍ୟରେ ଅନୁପ୍ରବେଶ କରନ୍ତି ଏବଂ ଅବିଚ୍ଛେଦ୍ୟଭାବେ ସଂଯୁକ୍ତ ଓ ମିଥକ୍ରିୟା-ରତ ସମାଜଜୀବନର ଦୁଇଟି ଦିଗକୁ ଏକତ୍ୱର ସ୍ୱରୂପ ପ୍ରଦାନ କରନ୍ତି ।

ତତ୍ତ୍ୱ ଏବଂ ବ୍ୟାବହାରିକ କର୍ମର ଏକତା

ବ୍ୟାବହାରିକ କର୍ମ ଯେ ତତ୍ତ୍ୱ ସମ୍ମୁଖରେ ସମାଧାନ ଲାଗି କର୍ତ୍ତବ୍ୟଭାର ଉପସ୍ଥାପିତ କରେ ସେତିକି ନୁହେ, ସମାଜ ପାଇଁ ଯାହା ଗୁରୁତ୍ୱପୂର୍ଣ୍ଣ, ଜଡ଼ ଜଗତର ସେ ସମସ୍ତ

ଢଙ୍ଗ,ପ୍ରକ୍ରିୟା ଏବଂ ପ୍ରପଞ୍ଚର ଅଧ୍ୟୟନ ପ୍ରତି ବୈଜ୍ଞାନିକ ଦୃଷ୍ଟିକୁ ପରିଚାଳିତ କରେ । ସେମାନଙ୍କର ଅବଧାରଣ ଲାଗି ଆବଶ୍ୟକ ଭୌତିକ ଉପାୟ ମଧ୍ୟ ଏହା ସୃଷ୍ଟି କରେ । ବ୍ୟାବହାରିକ କର୍ମ,—ଏ କ୍ଷେତ୍ରରେ ମୁଖ୍ୟତଃ ଶିଳ୍ପପ୍ରତିଷ୍ଠାନକୁ ବୁଝାଏ—ବିଜ୍ଞାନକୁ ନାନା ଯନ୍ତ୍ରପାତି ଓ ଉପକରଣ ଯୋଗାଏ ଏବଂ ଅତ୍ୟନ୍ତ ଜଟିଳ ଯନ୍ତ୍ରପାତି ଯେକ ଗବେଷଣା କରିବାରେ ବୈଜ୍ଞାନିକକୁ ସାହାଯ୍ୟ କରେ ।

ଭୌତିକ ଉତ୍ପାଦନ ମନୁଷ୍ୟକୁ ତା'ର ଜ୍ଞାନେନ୍ଦ୍ରିୟ ବୃଦ୍ଧି କରିବାରେ ସାହାଯ୍ୟ କରେ ଏବଂ ତା'ର ଅବଧାରଣର ସମ୍ଭାବନାକୁ ବିରାଟ ପରିମାଣରେ ବଢ଼ାଇ-ଦିଏ । ଅଣୁବୀକ୍ଷଣ ଯନ୍ତ୍ର ଏକ ପଦାର୍ଥର ପ୍ରତିମୂର୍ତ୍ତିକୁ ଶତ ବା ସହସ୍ର ଗୁଣ ବଢ଼ାଇଦିଏ, ଏବଂ ଇଲେକଟ୍ରନ୍ ଅଣୁବୀକ୍ଷଣ ତାହା ଲକ୍ଷ ଲକ୍ଷ ଗୁଣ ବୃଦ୍ଧି କରେ । ସାଧାରଣ ଚକ୍ଷୁରେ ଅଦୃଶ୍ୟ ବସ୍ତୁର ଅତି ସୂକ୍ଷ୍ମକଣାମାନଙ୍କୁ ଦେଖିବା ଏବଂ ସେମାନଙ୍କର ଫଟୋ ଉଠାଇ-ବାରେ ବୈଜ୍ଞାନିକକୁ ତାହା ସକ୍ଷମ କରାଏ । ଦୂରବୀକ୍ଷଣ ସାହାଯ୍ୟରେ ମନୁଷ୍ୟ ପୃଥିବୀ-ଠାରୁ କୋଟି କୋଟି ଆଲୋକବର୍ଷର ଦୂରରେ ଥିବା ନକ୍ଷତ୍ରମାନଙ୍କ ଆଲୋକ ଦେଖି-ବାରେ ସମର୍ଥ ହୁଏ । ଆଉ ଆଧୁନିକ ରେଡିଓ ଯନ୍ତ୍ର ଶତସହସ୍ର କିଲୋମିଟର ଦୂରରେ ସ୍ଥିତ କରୁଥିବା ଅନ୍ତରୀକ୍ଷ ରକେଟ୍ ଓ ସ୍ପୁଟ୍‌ନିକ୍‌ରୁ ସଙ୍କେତ ଓ ବୈଜ୍ଞାନିକ ବିବରଣୀ ପାଇବାରେ ମନୁଷ୍ୟକୁ ସାହାଯ୍ୟ କରେ ।

ଅଣୁବୀକ୍ଷଣ-କଣା ମଧ୍ୟରେ କୋଟି କୋଟି ଇଲେକ୍‌ଟ୍ରନ୍ ଭୋଲ୍‌ଟ ସୃଷ୍ଟି କରୁଥିବା ପ୍ରୋଟନ୍ ସିନ୍‌କ୍ରୋଟ୍ରୋନ୍‌କୁ ବାଦ ଦେଇ କିମ୍ବା ଆଣବିକ ରିଆକ୍‌ଟର, ଶକ୍ତିଶାଳୀ ଦୂରବୀଣ ଏବଂ ଏକ ସେକେଣ୍ଡରେ ହଜାର ହଜାର ସଂଖ୍ୟାରେ ହିସାବ କରୁଥିବା ଗଣନାକାରୀ ଇଲେକ୍‌ଟ୍ରନିକ୍ କମ୍ପ୍ୟୁଟର ବ୍ୟତିରେକେ ଆଧୁନିକ ବିଜ୍ଞାନ କଥା କ'ଣ ଚିନ୍ତା କରିଯାଇପାରେ ? ନା, ଅବଶ୍ୟ ନୁହେ ।

କିନ୍ତୁ ବ୍ୟାବହାରିକ କର୍ମର ପ୍ରୟୋଜନୀୟତା ମଧ୍ୟରୁ ଜାତ ବିଜ୍ଞାନ ମଧ୍ୟ ବ୍ୟାବହାରିକ କର୍ମ ଉପରେ ବିଶେଷ ଶକ୍ତିଶାଳୀ ଓ ସଦାବର୍ଦ୍ଧିଷ୍ଣୁ ପ୍ରଭାବ ପକାଇଥାଏ । ଏ ପ୍ରଭାବ ପରସ୍ପର ଆଦାନପ୍ରଦାନାତ୍ମକ ପ୍ରଭାବ । ବିଂଶ ଶତାବ୍ଦୀରେ ଉତ୍ପାଦନ ଶକ୍ତିର ବିକାଶରେ ଯେଉଁ ମହାନ ଟେକ୍‌ନିକାଲ (କାରିଗରି ବିଦ୍ୟା) ସଫଳତା ହାସଲ ହୋଇଛି, ତାହା ସମ୍ଭବ ହୋଇପାରିଛି କେବଳ ଏଇଥିଯୋଗୁଁ ଯେ ଶିଳ୍ପ, କୃଷି, ପରିବହନ ଓ ଯୋଗାଯୋଗ କ୍ଷେତ୍ରରେ ବୈଜ୍ଞାନିକ ଆବିଷ୍କାରମାନଙ୍କର ଅତି ବ୍ୟାପକ, ସର୍ବତୋମୁଖୀ ପ୍ରୟୋଗ ଘଟିଛି ଏବଂ ମେସିନ୍‌ର ଓ ଶିଳ୍ପବିଜ୍ଞାନ ସମ୍ବନ୍ଧୀୟ ପ୍ରଗତିର ବିଧିନିୟମ ଓ ସୂତ୍ରମାନ ପ୍ରଣୀତ ହୋଇଛି ।

ପ୍ରାକୃତିକ ନିୟମର ଜ୍ଞାନକୁ ଯେକ ମନୁଷ୍ୟର ଚେତନା ମନୁଷ୍ୟର ଭୌତିକ ଉତ୍ପାଦନ କାର୍ଯ୍ୟକୁ ପରିଚାଳିତ କରୁଛି ଏବଂ ତା'ର ପରିବେଶର ପୁନର୍ଗଠନ କରିବା

ଦଗରେ ଏକ ସୁଦକ୍ଷ ଶକ୍ତି ହୋଇ ଉଠୁଛି । ଏ ସମ୍ପର୍କରେ ଲେନିନ୍ କହିଥିଲେ, "ମନୁଷ୍ୟର ଚେତନା ବସ୍ତୁଗତ ବିଶ୍ୱଜଗତକୁ କେବଳ ପ୍ରତିଫଳିତ କରେ ନାହିଁ, ତାକୁ ସୃଷ୍ଟି କରେ ମଧ୍ୟ ।"

ଅତଏବ ବ୍ୟାବହାରିକ କର୍ମର ପ୍ରାଧାନ୍ୟ ସହିତ ତତ୍ତ୍ୱ ଓ ବ୍ୟାବହାରିକ କର୍ମର, ବିଜ୍ଞାନ ଓ ଉତ୍ପାଦନର ସମ୍ବନ୍ଧ ଓ ମିଥକ୍ରିୟା ସମାଜର ଭୌତିକ ଓ ନୈତିକ ପ୍ରଗତିଲାଗି ଏକ ଅପରିହାର୍ଯ୍ୟ ଅବସ୍ଥା ।

ସାମାଜିକ ଏବଂ ରାଜନୈତିକ ଜୀବନ ମଧ୍ୟ ସଦାସର୍ବଦା ତତ୍ତ୍ୱ ଓ ବ୍ୟାବହାରିକ କର୍ମର ମିଥକ୍ରିୟାର କ୍ଷେତ୍ର । ଏଠାରେ ହିଁ ସାମାଜିକ ଜୀବନର ଏବଂ ଶ୍ରେଣୀସଂଗ୍ରାମର ପ୍ରୟୋଜନୀୟତା ପ୍ରତି ପ୍ରତିବେଦନ ଭିତରେ ତତ୍ତ୍ୱର ଉଦ୍ଭବ ; ତାହା ପୁଣି ଅନ୍ୟପକ୍ଷରେ ସାମାଜିକ ପ୍ରକ୍ରିୟାକୁ ପ୍ରଭାବିତ କରେ । ଏହା ସତ ଯେ ଅସଲ ସମାଜବିଜ୍ଞାନ ସର୍ବପ୍ରଥମେ ମାର୍କ୍ସଙ୍କ ଦ୍ୱାରା ବିକାଶ ଲାଭ କରିଥିଲା । କିନ୍ତୁ ପ୍ରାକ୍-ମାର୍କ୍ସୀୟ ପ୍ରଗତିଶୀଳ ସାମାଜିକ ତତ୍ତ୍ୱମାନ ସୁଦ୍ଧା ଅଳ୍ପ କିଛି ବୈଜ୍ଞାନିକ ଜ୍ଞାନର ଉପାଦାନ ଘେନି ଅତ୍ୟନ୍ତ ପ୍ରଗତିଶୀଳ ଭୂମିକା ଗ୍ରହଣ କରିଥିଲା । ସମାଜର ପ୍ରଗତିଶୀଳ ଶକ୍ତିମାନଙ୍କୁ ସେମାନଙ୍କର ଆଶୁ ବ୍ୟାବହାରିକ ଲକ୍ଷ୍ୟ ଓ ସମସ୍ୟାମାନ ବୁଝିବାରେ ସେମାନେ ସାହାଯ୍ୟ କରିଥିଲେ, ପ୍ରତିକ୍ରିୟା ଓ ପୁରୁଣା ଅଚଳନ୍ତି ସଂସ୍ଥାମାନଙ୍କ ବିରୁଦ୍ଧରେ ସଂଗ୍ରାମରେ ସେମାନଙ୍କୁ ଅନୁପ୍ରାଣିତ କରିଥିଲେ, ସାହାଯ୍ୟ ସମର୍ଥନ ଦେଇଥିଲେ ।

ମାର୍କ୍ସ୍ ଓ ଏଙ୍ଗେଲ୍ସ ସମାଜ ସଂପର୍କରେ ବୈଜ୍ଞାନିକ ବସ୍ତୁବାଦୀ ଧାରଣାର ବିକାଶ ସାଧନ କଲା ପରେ ସମାଜଜୀବନ ଲାଗି ତତ୍ତ୍ୱର ଗୁରୁତ୍ୱ ଏବଂ ଲୋକଙ୍କ ମଧ୍ୟରେ ସମ୍ବନ୍ଧସୂତ୍ରର ଅପରିମେୟ ବୃଦ୍ଧି ଘଟିଲା ।

ତତ୍ତ୍ୱ ଓ ବ୍ୟାବହାରିକ କର୍ମର ଏକତ୍ୱର ନୀତି—ସେଇ ମାର୍କ୍ସବାଦୀ-ଲେନିନବାଦୀ ତତ୍ତ୍ୱ ଦ୍ୱାରା ଯଦି କମ୍ୟୁନିଷ୍ଟ ପାର୍ଟିମାନେ ତାଙ୍କ କାର୍ଯ୍ୟରେ ପରିଚାଳିତ ହୋଇ ନ ଥାନ୍ତେ, ତେବେ ସୋଭିଏତ୍ ରୁଷ ଏବଂ ସମାଜବାଦୀ ଶିବିରର ଅନ୍ୟ ଦେଶମାନଙ୍କରେ ସମାଜବାଦୀ ବିପ୍ଳବର ବିଜୟ ଏବଂ ସାମ୍ୟବାଦୀ ଓ ସମାଜବାଦୀ ନିର୍ମାଣରେ ବିପୁଳ ସଫଳତା କେବେ ହେଲେ ସମ୍ଭବ ହୋଇ ନ ଥାନ୍ତା ।

ଶ୍ରମିକଶ୍ରେଣୀ ସଂଗ୍ରାମର ବ୍ୟାବହାରିକ କର୍ମକୁ ତତ୍ତ୍ୱ ସାହାଯ୍ୟ କରେ ଏବଂ କର୍ମ ତତ୍ତ୍ୱ ମଧ୍ୟରୁ ନିଜର ରୂପ ଆହରଣ କରେ । ନ ହେଲେ, ତତ୍ତ୍ୱ ଓ କର୍ମ ଉଭୟେ କ୍ଷତିଗ୍ରସ୍ତ ହୁଅନ୍ତି । କର୍ମରୁ ବିଚ୍ଛିନ୍ନ ହୋଇ ତତ୍ତ୍ୱ ନିଷ୍ଫଳ ହୁଏ । ତତ୍ତ୍ୱ ଦ୍ୱାରା ପରିଚାଳିତ ନ ହେଉଥିବା କର୍ମ ଅନ୍ଧାରରେ ଅଣ୍ଡାଳି ହୁଏ ।

ସମାଜବାଦ ଅଧୀନରେ ତତ୍ତ୍ୱର ବିକାଶ ଓ ବ୍ୟାବହାରିକ କର୍ମର ସାଧନା ଏକ ସଙ୍ଗରେ ଘଟି କରେ । ସମାଜବାଦୀ ଶିବିରସ୍ଥ ଦେଶମାନଙ୍କରେ ସମାଜବାଦ ଓ

ସାମ୍ୟବାଦୀ ନିର୍ମାଣ ମାର୍କ୍ସବାଦୀ-ଲେନିନ୍‌ବାଦୀ ତତ୍ତ୍ୱ ଦ୍ୱାରା ପରିଚାଳିତ । ଆଉ ସେଇ ତତ୍ତ୍ୱ, ନୂତନ ସମାଜ ନିର୍ମାଣରେ ଲିପ୍ତ ଜନସାଧାରଣଙ୍କ ବ୍ୟାବହାରିକ କର୍ମ ଦ୍ୱାରା ସମୃଦ୍ଧ । ଏନ୍. ଏସ୍. କ୍ରୁଶ୍ଚେଭ କହିଥିଲେ, "ସମାଜବାଦ ନିର୍ମାଣର ପ୍ରତ୍ୟେକଟି ବ୍ୟାବହାରିକ ପ୍ରଶ୍ନ ଏକା ସଙ୍ଗରେ ଏକ ତାତ୍ତ୍ୱିକ ପ୍ରଶ୍ନ ମଧ୍ୟ । ମାର୍କ୍ସବାଦ-ଲେନିନ୍‌ବାଦର ସୃଜନଶୀଳ ବିକାଶ ସହିତ ତାହା ପ୍ରତ୍ୟକ୍ଷଭାବେ ଜଡ଼ିତ । ଏକକୁ ଅନ୍ୟଠାରୁ ପୃଥକ୍ କରାଯାଇ ନ ପାରେ ।"

ମାର୍କ୍ସବାଦ ବ୍ୟାବହାରିକ କର୍ମକୁ ବୈଜ୍ଞାନିକ ଅବଧାରଣର ଅନ୍ତିମ ଉଦ୍ଦେଶ୍ୟ ବୋଲି ସ୍ୱୀକାର କରେ, ତା'ର ଅର୍ଥ ନୁହେଁ ଯେ ଏହା ତତ୍ତ୍ୱର ଗୁରୁତ୍ୱକୁ କିଛିକେ ହେଲେ ଊଣା କରେ । ମାର୍କ୍ସବାଦର ସଙ୍କୀର୍ଣ୍ଣ ବ୍ୟାବହାରିକବାଦ ସହିତ ଆଦୌ ମେଳ ନାହିଁ । ବିଜ୍ଞାନ ଓ ଜୀବନ ସଂଯୁକ୍ତ ହେବା ଉଚିତ—ଏ ଦାବୀ ବିଜ୍ଞାନକୁ ବ୍ୟାବହାରିକ କର୍ମଠାରୁ ବିଚ୍ଛିନ୍ନ, ପୃଥକ କରିବା ବିରୁଦ୍ଧରେ, ତତ୍ତ୍ୱକୁ ଏକ ନିଷ୍ଫଳ ମାନସିକ ବ୍ୟାୟାମରେ ପରିଣତ କରିବା ବିରୁଦ୍ଧରେ ନିର୍ଦ୍ଦେଶିତ । କିନ୍ତୁ ଏହାର ଅର୍ଥ ନୁହେଁ ଯେ ଭବିଷ୍ୟତର ଆଭିମୁଖ୍ୟକୁ ପରିତ୍ୟାଗ କରିବା ଏବଂ କେବଳ ଅତି ନଗଦ ବ୍ୟାବହାରିକ କର୍ମର ପ୍ରୟୋଜନୀୟତା ପୂରଣରେ ତାତ୍ତ୍ୱିକ ଗବେଷଣାର କର୍ତ୍ତବ୍ୟକୁ ସୀମାବଦ୍ଧ କରି ରଖିବା । ସୁଦୀର୍ଘପ୍ରସାରୀ "ଭବିଷ୍ୟାପେକ୍ଷ" ତାତ୍ତ୍ୱିକ ଗବେଷଣା, ଯାହା କି ବାସ୍ତବତାର ନୂତନ ସମ୍ପର୍କ ଓ ନିୟମସବୁକୁ ଆବିଷ୍କାର କରେ ଏବଂ ପରବର୍ତ୍ତୀ କାଳରେ ବୈଜ୍ଞାନିକ ଓ ଟେକ୍‌ନିକାଲ ପ୍ରଗତି ଲାଗି ତାତ୍ତ୍ୱିକ "ସଞ୍ଚୟ" ସୃଷ୍ଟି କରିଥାଏ, ତାହା ବିଜ୍ଞାନ ଓ ପ୍ରୟୋଗ ବିଦ୍ୟାର କ୍ରମାଗତ ଅଭିବୃଦ୍ଧି ଲାଗି ଅପରିହାର୍ଯ୍ୟ । କ୍ଷଣିକ ପ୍ରୟୋଜନୀୟତା ବା ଅଭୀଷ୍ଟ ସାଧନ ଲାଗି ବୈଜ୍ଞାନିକ ସତ୍ୟକୁ ବିକୃତ ବା କଦର୍ଥ କରିବାର କୌଣସି ପ୍ରକାର ପ୍ରଚେଷ୍ଟାକୁ ମାର୍କ୍ସବାଦ ବରଦାସ୍ତ କରେ ନାହିଁ ।

ମାର୍କ୍ସବାଦ ଯେଉଁ ପକ୍ଷପାତ ବିଚାର ଦାବୀ କରେ ତାହା, ଗବେଷଣାର ଫଳାଫଳ ଯାହା ହେଉ ପଛେ, ଗବେଷଣା କ୍ଷେତ୍ରରେ ବାସ୍ତବତାର ଲଙ୍ଘନ ବିରୁଦ୍ଧରେ ଏବଂ ତଥ୍ୟକୁ ବିକୃତ କରିବା ବିରୁଦ୍ଧରେ ଉଦ୍ଦିଷ୍ଟ । ପୁଞ୍ଜିବାଦୀ ଶୋଷଣରୁ ମୁକ୍ତିର ସଂଗ୍ରାମ ପରିଚାଳନା ସମୟରେ ତଥା ସମାଜବାଦୀ ନିର୍ମାଣକାଳରେ, ଉଭୟ କ୍ଷେତ୍ରରେ, ଶ୍ରମିକଶ୍ରେଣୀ ସାମାଜିକ ବିକାଶର ନିୟମସଂକ୍ରାନ୍ତ ଜ୍ଞାନ ସମେତ ପ୍ରକୃତ ଜ୍ଞାନ ସମ୍ପର୍କରେ ଅତିଶୟ ଆଗ୍ରହୀ, କାରଣ ତାହା ହେଉଛି ତା'ର ଅନିବାର୍ଯ୍ୟ ଚରମ ବିଜୟର ନିୟମ ।

ବହୁକାଳ ହେଲା ବୁର୍ଜୁଆମାନେ ନିରପେକ୍ଷ ବୈଜ୍ଞାନିକ ଗବେଷଣା ଦାଗରେ, ବିଶେଷତଃ ସାମାଜିକ ବିଜ୍ଞାନ କ୍ଷେତ୍ରରେ ନିଜର ଆଗ୍ରହ ହରାଇଛନ୍ତି । ମାର୍କ୍ସବାଦକୁ ଖଣ୍ଡନ କରିବା ଓ ପୁଞ୍ଜିବାଦୀ ବ୍ୟବସ୍ଥା ସପକ୍ଷରେ ଯୁକ୍ତି ସଂଗ୍ରହ କରିବା ହେଲା ସେ କ୍ଷେତ୍ରରେ ସେମାନଙ୍କର ପ୍ରଧାନ ଚିନ୍ତା ।

ପ୍ରକୃତିବିଜ୍ଞାନ କ୍ଷେତ୍ରରେ ମୁଷ୍ଟିମେୟ ବୁର୍ଜୁଆମାନେ ସେଥିରୁ ନଗଦ ଲାଭ ହଟାଇବା ଦିଗରେ ଯେପରି ବ୍ୟସ୍ତ, ପ୍ରକୃତ ଜ୍ଞାନ ଆହରଣ ଦିଗରେ ସେପରି ଆଗ୍ରହାନ୍ୱିତ ନୁହନ୍ତି । ବିଜ୍ଞାନ ପ୍ରତି ତାଙ୍କର ଦୃଷ୍ଟିକୋଣ ପୁରାପୁରି ସଂକୀର୍ଣ୍ଣ ଉପ-ଯୋଗିତାର ଦୃଷ୍ଟିକୋଣ । ଏହା ଅବଶ୍ୟ ବୁର୍ଜୁଆ ପ୍ରତି ଶ୍ରେଣୀଗତଭାବେ ପ୍ରଯୋଜ୍ୟ ; ପୁଞ୍ଜିବାଦୀ ଦେଶରେ ଥିବା ସାଧୁ, ସଚ୍ଚୋଟ, ଦୁର୍ନୀତିମୁକ୍ତ, ନ୍ୟାୟପରାୟଣ ବୈଜ୍ଞାନିକମାନଙ୍କ ପ୍ରତି ପ୍ରଯୋଜ୍ୟ ନୁହେଁ ।

ସମାଜବାଦୀ ସମାଜରେ ବୈଜ୍ଞାନିକ ଗବେଷଣା କୌଣସି ପ୍ରତିବନ୍ଧ ଜାଣେ ନାହିଁ । ବିଶ୍ୱଜଗତର ଅବଧାରଣ ବୈଜ୍ଞାନିକମାନଙ୍କର ବ୍ୟକ୍ତିଗତ ବିଷୟ ନୁହେଁ, ତାହା ଏକ ସର୍ବଶ୍ରେଷ୍ଠ ସାମାଜିକ ତାତ୍ପର୍ଯ୍ୟ । ସେ ଉପଲବ୍ଧି ପ୍ରତ୍ୟେକ ନୀତିମାନ, ନ୍ୟାୟବାନ ବୈଜ୍ଞାନିକକୁ ଗଭୀର ଅନୁରକ୍ତି ଓ ଆତ୍ମୋତ୍ସର୍ଗ ସହିତ ସତ୍ୟର ପରିଚର୍ଯ୍ୟା ଦିଗରେ ଅନୁପ୍ରାଣିତ କରେ ।

## (୨) ଜ୍ଞାନ ବାସ୍ତବ ଜଗତର ପ୍ରତିଫଳନ

ଜ୍ଞାନର ମାର୍କ୍ସବାଦୀ ତତ୍ତ୍ୱ ହେଉଛି ପ୍ରତିଫଳନର ତତ୍ତ୍ୱ । ଏହାର ଅର୍ଥ, ତାହା ଅବଧାରଣକୁ ମନୁଷ୍ୟର ଚେତନାରେ ବସ୍ତୁଗତ ବାସ୍ତବତାର ପ୍ରତିଫଳନଭାବେ ବିଚାର କରେ । ଦ୍ୱନ୍ଦ୍ୱମୂଳକ ବସ୍ତୁବାଦର ବିରୋଧୀମାନେ ସାଧାରଣତଃ ଜ୍ଞାନର ଏଇ ପ୍ରକାର ଧାରଣାକୁ ବିରୋଧ କରିଥାନ୍ତି । ଦୃଷ୍ଟାନ୍ତସ୍ୱରୂପ, ସେମାନେ ଦାବୀ କରିଥାନ୍ତି ଯେ ପ୍ରକୃତିର ନିୟମମାନଙ୍କର ପ୍ରତିଫଳନ କଥା ଅର୍ଥହୀନ, ପ୍ରକୃତିର ନିୟମ ଅଦୃଶ୍ୟ ଏବଂ ଏପରି କୌଣସି ବାସ୍ତବତା ନାହିଁ, ଗାଣିତିକ ସୂତ୍ର ଓ ଯୁକ୍ତିଯୁକ୍ତ ବିଧାନ (ମାଗ୍ରାଂଶ) ତଥା ନୈତିକ ଧାରଣାମାନ (ନ୍ୟାୟ, ମହାନତା) ଯାହାର ପ୍ରତିଫଳନ ହୋଇପାରେ । ତେବେ ଏଇସବୁ ଏବଂ ଏଇପରି ଅନ୍ୟାନ୍ୟ ପ୍ରତିବାଦମାନ ପ୍ରତିଫଳନର ଏକ ଅତି ଆଦିମ ଅପରିପକ୍ୱ ଅମାର୍ଜିତ ଧାରଣା ଉପରେ ପ୍ରତିଷ୍ଠିତ ।

ଜ୍ଞାନକୁ ପ୍ରତିଫଳନ ବୋଲି ବ୍ୟାଖ୍ୟା କରିବା ଦ୍ୱାରା ଦ୍ୱନ୍ଦ୍ୱମୂଳକ ବସ୍ତୁବାଦ ସୂଚାଇଦିଏ ଯେ ଜ୍ଞାନ ମାନବଚେତନାରେ ବାସ୍ତବତାର ପ୍ରତିରୂପ ହୋଇଥିବା ହେତୁ ତାହା ବସ୍ତୁଗତ ଜଗତର ପ୍ରତିଫଳନ ଛଡ଼ା ଅନ୍ୟ କିଛି ନୁହେଁ । ମାନବ-ଚେତନା ମଧ୍ୟରେ ଏଇସବୁ ପଦାର୍ଥ ନିଜେ କିମ୍ବା ସେମାନଙ୍କର ଉପାଦାନ ଓ ସଂପର୍କ-ମାନଙ୍କର ଅସ୍ତିତ୍ୱ ନ ଥାଏ ; କିନ୍ତୁ କେବଳ ସେମାନଙ୍କର ପ୍ରତିଫଳନ ବା ମାନସିକ ପ୍ରତିମୂର୍ତ୍ତି ରହିଥାଏ । ତାହା ଚେତନାଭୂତ ପଦାର୍ଥର ବୈଶିଷ୍ଟ୍ୟକୁ ଊଣାଅଧିକେ ସଠିକଭାବେ ପ୍ରକାଶ କରିଥାଏ । ଏଇ ଅର୍ଥରେ ସେମାନଙ୍କ ସହିତ ତା'ର ସାମଞ୍ଜସ୍ୟ ।

ପ୍ରତିଫଳନର ବସ୍ତୁବାଦୀ ତତ୍ତ୍ୱ ଚୈତନ୍ୟ ଏବଂ ବସ୍ତୁ, ଅବଧାରଣ ଏବଂ ତା'ର ବିଷୟକୁ ପୃଥକଭାବେ ଚିହ୍ନିତ କରିଥାଏ । ତଥାପି ତାହା, ଚୂଡ଼ାନ୍ତ ଅର୍ଥରେ, ବସ୍ତୁ ପ୍ରତି ଚୈତନ୍ୟକୁ ବିପରୀତଭାବେ ଉପସ୍ଥାପିତ କରେନାହିଁ, ଯେହେତୁ ତାହା ହେଉଛି ବସ୍ତୁଗତ ବାସ୍ତବତା ଯାହାକି ମନୁଷ୍ୟର ଚେତନାରେ ପ୍ରତିଫଳିତ, ଯେହେତୁ ନିଜେ ଚୈତନ୍ୟ ହେଉଛି ବସ୍ତୁର ଏକ ଗୁଣ ବା ବୈଶିଷ୍ଟ୍ୟ ।

ମନ ଯେ ମସ୍ତିଷ୍କ ଭଳି ଅତି ଉନ୍ନତଭାବେ ସଂଗଠିତ ଏକ ବସ୍ତୁର ବିଶେଷ ଗୁଣ, ଏହା ସ୍ୱୀକାର କଲେ, ସେଇଥିରୁ ଏ ସିଦ୍ଧାନ୍ତରେ ଉପନୀତ ହେବାକୁ ହେବ ଯେ ଚିନ୍ତା ଏବଂ ଭୌତିକ ଜଗତ ମଧ୍ୟରେ କୌଣସି ମୌଳିକ ଅନତିକ୍ରମ୍ୟ ସୀମାରେଖା ନାହିଁ, କି ଥାଇ ନ ପାରେ ।

ଆଉ ମଧ୍ୟ ଭୌତିକ ପଦାର୍ଥ ଭଳି, ଆଧ୍ୟାତ୍ମିକ, ମାନସିକ ପ୍ରପଞ୍ଚ ଅବଶ୍ୟ ଅବଧାରଣର ବିଷୟ ହୋଇପାରେ । ତେବେ ସେ ଯାହା ହେଉ, ଏହା କୌଣସି ପ୍ରକାରେ ଅବଧାରଣର ପ୍ରକୃତିକୁ ବଦଳାଇ ଦିଏ ନାହିଁ, ଯେହେତୁ ଉକ୍ତ ପ୍ରପଞ୍ଚସବୁ ନିଜେ, ମନୁଷ୍ୟଚେତନାର ବହିର୍ଭୂତ ବସ୍ତୁଗତ ବାସ୍ତବତାର ଏକ ପ୍ରତିଫଳନ ।

ଆହୁରି ମଧ୍ୟ ମନୁଷ୍ୟର ଅବଧାରଣ କର୍ମଦକ୍ଷତା ଏକ ରହସ୍ୟମୟ ଐଶ୍ୱରିକ ଅବଦାନ ନୁହେଁ । ତାହା ଏକ ସୁଦୀର୍ଘକାଳବ୍ୟାପୀ ବିକାଶର ଫଳ, ଯାହାକି ବ୍ୟାବହାରିକ କ୍ରିୟାର ଭିତ୍ତି ଉପରେ ଭୌତିକ ଜଗତର ପ୍ରତିଫଳନ କିମ୍ବା ଅବଧାରଣର ପ୍ରକ୍ରିୟା ମଧ୍ୟରେ ବିକାଶ ଲାଭ କରିଛି । ଏହି ପ୍ରକ୍ରିୟା ମଧ୍ୟ ଦେଇ ଇନ୍ଦ୍ରିୟ ଅବୟବ ବିକାଶ ଲାଭ କରିଛି ଏବଂ ଚିନ୍ତାଶକ୍ତିରେ ଉନ୍ନତି ଘଟିଛି ।

ଜ୍ଞାନର ସମସ୍ୟା ସମ୍ବନ୍ଧରେ ଏହାହିଁ ହେଲା ମାର୍କ୍ସବାଦୀ ଦର୍ଶନର ମୌଳିକ ନୀତି । ଏହାର ପ୍ରାରମ୍ଭସ୍ଥଳ ହେଉଛି ମନୁଷ୍ୟର ଚତୁର୍ଦ୍ଦିଗରେ ପରିବ୍ୟାପ୍ତ ବିଶ୍ୱ-ଜଗତକୁ ପ୍ରତିଫଳନ ଓ ଅବଧାରଣ କରିବାରେ ମନୁଷ୍ୟର ଦକ୍ଷତା ଏବଂ ତାହା ମାନବିକ ଜ୍ଞାନର ଅଗ୍ରଗତି ଦିଗରେ ଅପରିସୀମ ଦିଗ୍‌ବଳୟ ଉନ୍ମୁକ୍ତ କରିଦିଏ ।

## ଅଜ୍ଞେୟବାଦର ବିରୋଧରେ

ଭାବବାଦୀ ସମ୍ପ୍ରଦାୟର ବହୁ ଦାର୍ଶନିକ, ଏପରିକି ତାଙ୍କ ପ୍ରଭାବାଧୀନ କେତେକ ବୈଜ୍ଞାନିକ ମଧ୍ୟ, ଜଗତ ଯେ ଅବଧାରଣଗମ୍ୟ,—ଏ ବସ୍ତୁବାଦୀ ଶିକ୍ଷାର ବିରୋଧ କରନ୍ତି ।

ସେମାନେ ଅଜ୍ଞେୟବାଦ ଦୃଷ୍ଟିକୋଣର ସମର୍ଥକ (agnosticism—ଗ୍ରୀକ୍ "ଏ" ଶବ୍ଦର ଅର୍ଥ "ନାହିଁ" ଏବଂ "ଗ୍ନୋସିସ୍"ର ଅର୍ଥ ଜ୍ଞାନ) । 'ଆମେ କିଛି ଜାଣିପାରିବା ନାହିଁ', ଅଜ୍ଞେୟବାଦୀମାନେ ସର୍ବଦା ଏହା କହନ୍ତି ନାହିଁ । ଅନେକ

ସମୟରେ ଯେ କେବଳ ସୃଷ୍ଟିରହସ୍ୟ ଯେ ନୀତିଗତଭାବେ ସମସ୍ୟାଗୁଡ଼ିକ ସମାଧାନାତୀତ । ବିଜ୍ଞାନ ଓ ପ୍ରୟୋଗବିଦ୍ୟାର ଯେତେ ପ୍ରସାର ଓ ଅଗ୍ରଗତି ଘଟୁ ପଛେ ଏବଂ ମନୁଷ୍ୟର ମନୀଷାର ଯେତେ ବିକାଶ ଓ ଉନ୍ନତି ଘଟିଲେ ମଧ୍ୟ କେତେକ କ୍ଷେତ୍ରରେ ବାସ୍ତବତା ନୀତିଗତଭାବେ ମନୁଷ୍ୟର ଅବଧାରଣର ବହିର୍ଭୂତ ହୋଇ ରହିଥିବ ।

ଦୃଷ୍ଟାନ୍ତସ୍ୱରୂପ, ଅଷ୍ଟାଦଶ ଶତାବ୍ଦୀର ସ୍କଟଲଣ୍ଡବାସୀ ଅଜ୍ଞେୟବାଦୀ ଡେଭିଡ୍ ହ୍ୟୁମ ଦାବୀ କରିଥିଲେ ଯେ କେବଳ ଇନ୍ଦ୍ରିୟାନୁଭୂତ ଯାଏ ଆମେ ପହଞ୍ଚିପାରୁ ଏବଂ ବିଜ୍ଞାନର ଉଦ୍ଦେଶ୍ୟ ସେସବୁକୁ କେବଳ ଶୃଙ୍ଖଳିତ ଓ ସୁସଜ୍ଜିତ କରିବା । ତାଙ୍କ ମତରେ, ଆମର ଇନ୍ଦ୍ରିୟାନୁଭୂତର ବହିର୍ଭୂତ ଜିନିଷ ଏବଂ ତା'ର କାରଣମାନଙ୍କ ବିଷୟରେ ଆମେ କିଛି ଜାଣିପାରିବା ନାହିଁ । ତେଣୁ ସେ ଘୋଷଣା କରିଥିଲେ ଯେ ଦର୍ଶନର ମୌଳିକ ପ୍ରଶ୍ନ ସମାଧାନହୀନ । ସେ କହିଥିଲେ—ବସ୍ତୁ, ଆତ୍ମା, ଚେତନା କାହା ଉପରେ ବିଶ୍ୱଜଗତ ପ୍ରତିଷ୍ଠିତ, ତାହା ଆମେ କହିପାରିବା ନାହିଁ ; ତାହା ଆମେ ଜାଣୁନାହିଁ ଏବଂ କେବେହେଲେ ଜାଣିପାରିବା ନାହିଁ । କାରଣ ଆମେ ଆମର ଇନ୍ଦ୍ରିୟାନୁଭୂତର ପରିସୀମାର ବାହାରକୁ ଯିବାକୁ ଅସମର୍ଥ ।

ତାଙ୍କର ସମସାମୟିକ ଜର୍ମାନୀର ଦାର୍ଶନିକ ଥିଲେ ଇମାନୁଏଲ କ୍ୟାଣ୍ଟ । ମନୁଷ୍ୟ ଓ ତା'ର ଅବଧାରଣଠାରୁ ସ୍ୱାଧୀନ ସ୍ୱତନ୍ତ୍ରଭାବେ ଅବସ୍ଥିତ ପଦାର୍ଥମାନଙ୍କ ଦ୍ୱାରା ଯେ ଆମର ଇନ୍ଦ୍ରିୟାନୁଭୂତର ସୃଷ୍ଟି ତାହା ସେ ଅସ୍ୱୀକାର କରୁ ନ ଥିଲେ । ତେବେ ସେ ଦାବୀ କରୁଥିଲେ ଯେ ଏଇସବୁ ପଦାର୍ଥ ( ତାକୁ ସେ things in themselves କହୁଥିଲେ ) ନୀତିଗତଭାବେ ଅବଧାରଣର ଅଗମ୍ୟ ।

"ଈଶ୍ୱରଙ୍କ ଗୂଢ଼ ଅବୋଧ୍ୟ", ମନୁଷ୍ୟର ବିଚାରବୁଦ୍ଧି ତ୍ରୁଟିପୂର୍ଣ୍ଣ ଏବଂ ସତ୍ୟରେ ଉପନୀତ ହେବାଲାଗି ମନୁଷ୍ୟର ପ୍ରୟୋଜନ ଏକ ଭିନ୍ନ, ଅବୈଜ୍ଞାନିକ ପନ୍ଥା—ଏ ଧର୍ମମତ ସହିତ ଅଜ୍ଞେୟବାଦର ସମ୍ପର୍କ ଅତି ନିବିଡ଼ । କ୍ୟାଣ୍ଟ ନିଜେ ସ୍ୱୀକାର କରିଥିଲେ ଯେ "ବିଶ୍ୱାସ ଲାଗି କ୍ଷେତ୍ର ପ୍ରସ୍ତୁତ କରିବା ନିମନ୍ତେ ତାଙ୍କୁ ଜ୍ଞାନ ପରିତ୍ୟାଗ କରିବାକୁ" ପଡ଼ିଥିଲା । ଅଜ୍ଞେୟବାଦୀ ଦାର୍ଶନିକମାନେ ସର୍ବଦା ଗିର୍ଜାର ମିତ୍ର ; ଯେଉଁ କ୍ଷେତ୍ରରେ ସେମାନେ ନିଜେ ଈଶ୍ୱର ବିଶ୍ୱାସ କରନ୍ତି ନାହିଁ, ସେଠି ମଧ୍ୟ । ଏହାର କାରଣ, ବିଶ୍ୱଜଗତ ଜ୍ଞାନର ଅଗମ୍ୟ ବୋଲି ଏକ ଭ୍ରାନ୍ତ ମତ ଯେଉଁ ଅଜ୍ଞେୟବାଦ ଘୋଷଣା କରେ ତାହା ବିଜ୍ଞାନର ଚେର କାଟିଦିଏ, ପରମାର୍ଥବିଦ୍ୟାକୁ ଶକ୍ତିଶାଳୀ କରେ, ମନୁଷ୍ୟକୁ ଅନ୍ଧବିଶ୍ୱାସର ବଶୀଭୂତ କରେ, ଆଉ ଧର୍ମମତ ଉପରେ ଭରସା ରଖିବା ଲାଗି ତାକୁ ପ୍ରଲୁବ୍ଧ କରେ ।

ଜୀବନର ଅନୁଭୂତ ଅଜ୍ଞେୟବାଦର ଯାବତୀୟ ସ୍ୱରୂପ ଖଣ୍ଡନ କରେ । ମନୁଷ୍ୟ କ୍ରମଶଃ ପ୍ରଥମେ ଧୀରେ ଧୀରେ ଏବଂ ପରେ ଅଧିକରୁ ଅଧିକ ବେଗରେ

ଅଜ୍ଞାନତାରୁ ଜ୍ଞାନ ଦିଗକୁ ଅଗ୍ରସର ହେଉଛୁ, ଏବଂ ପ୍ରକୃତି କିଭଳି ତା'ର ଆପାତପ୍ରତୀୟମାନ ଗୂଢ଼ ରହସ୍ୟ ମନୁଷ୍ୟ ସମ୍ମୁଖରେ ଉଦ୍‌ଘାଟିତ କରୁଛି, ବିଜ୍ଞାନର ଇତିହାସରୁ ତାହା ଜଣାଯାଏ ।

ପାଞ୍ଚଶହ ବର୍ଷ ତଳେ ସୁଦ୍ଧା ମନୁଷ୍ୟ ବିଶ୍ୱାସ କରୁଥିଲା ଯେ ପୃଥିବୀ ହେଉଛି ସସୀମ ବିଶ୍ୱଜଗତର କେନ୍ଦ୍ର, ନକ୍ଷତ୍ରମାନେ ଏକ ଗୋଲକାର କାଚର ଖିଲଣ ଭଳି ଦେଖାଯାଉଥିବା ନଭୋମଣ୍ଡଳରେ ଖଚିତ । ୟୁରୋପର ନବଜାଗରଣ ଯୁଗର ଚିନ୍ତାନାୟକମାନେ—କୋପରନିକସ, ବ୍ରୁନୋ ଏବଂ ଗାଲିଲିଓ—ଏହି ଭ୍ରମ ଧାରଣା ବଦଳାଇଦେଲେ, ବିଶ୍ୱବ୍ରହ୍ମାଣ୍ଡର କାଚ ଗମ୍ବୁଜକୁ ଚୂର୍ଣ୍ଣବିଚୂର୍ଣ୍ଣ କରି ଅସୀମତାକୁ ତାହା ପ୍ରସାରିତ କରିଦେଲେ । ଏପରିକି ଗତ ଶହେ ବର୍ଷ ତଳେ ସୁଦ୍ଧା କେତେ ଲୋକ ବିଶ୍ୱାସ କରୁଥିଲେ ଯେ ଅନ୍ତରୀକ୍ଷୀୟ ଗ୍ରହ ଓ ନକ୍ଷତ୍ରମାନଙ୍କର ଗଠନ ଓ ନିର୍ମାଣକୌଶଳ ଅନନ୍ତ କାଳ ଧରି ଅସମାଧାନୀୟ ଗୂଢ଼ ରହସ୍ୟ ହୋଇ ରହିବାକୁ ବାଧ୍ୟ । ଦୃଷ୍ଟବାଦୀ ଅଗଷ୍ଟି କୋମ୍‌ଟେ ଅତି ଦୃଢ଼ ଓ ସ୍ପଷ୍ଟଭାବେ କହୁଥିଲେ ଯେ ନକ୍ଷତ୍ରଗୁଡ଼ିକ କେଉଁଥିରେ ଗଠିତ ତାହା ମାନବସମାଜ କେବେହେଲେ ଜାଣିପାରିବ ନାହିଁ । କିନ୍ତୁ ତାଙ୍କ ମୃତ୍ୟୁର ମାତ୍ର ଦୁଇବର୍ଷ ପରେ, ୧୮୫୯ରେ, ବର୍ଣ୍ଣାଳୀର ବିଶ୍ଳେଷଣ ପଦ୍ଧତି ଦ୍ୱାରା, ଅନ୍ତରୀକ୍ଷୀୟ ଗ୍ରହନକ୍ଷତ୍ରମାନଙ୍କର ରାସାୟନିକ ଗଠନ ସମ୍ବନ୍ଧରେ ଅନୁସନ୍ଧାନର ଭିତ୍ତି ପଡ଼ିଲା । ବିଂଶ ଶତାବ୍ଦୀର ପ୍ରାରମ୍ଭରେ ଗଣିତ, ଜ୍ୟୋତିଷବିଜ୍ଞାନ ଆମର ଛାୟାପଥ ଓ ନୀହାରିକା ମଣ୍ଡଳଠାରୁ ଅଧିକ ଦୂରକୁ ଅଗ୍ରସର ହେବାରେ ଅସମର୍ଥ ଥିଲା । ଅଥଚ ଆଧୁନିକ ଗବେଷଣାର ପ୍ରଣାଳୀ ଦ୍ୱାରା ଏବେ କୋଟି କୋଟି ନାକ୍ଷତ୍ରିକ ସତ୍ତା ଉଦ୍‌ଘାଟିତ ହେଉଛି ଏବଂ ଏତେ ଅଧିକ ଦୂରରେ ବିଶ୍ୱବ୍ରହ୍ମାଣ୍ଡର ଗଠନର ଧାରଣା ମନୁଷ୍ୟକୁ ଦେଉଛି ଯେ ତାହା କଳ୍ପନା କରିବା ସୁଦ୍ଧା କଠିନ ।

ଆଜି ମନୁଷ୍ୟ କେବଳ ଅନ୍ତରୀକ୍ଷର ବାହ୍ୟ ଶୂନ୍ୟତାର ସୀମାହୀନ ବିସ୍ତୃତି ମଧ୍ୟରେ ପ୍ରବେଶ କରିନାହିଁ । ସେ ଅଧିକ ଗଭୀରଭାବେ ସୂକ୍ଷ୍ମତମ ସୃଷ୍ଟିକୁ ଉଦ୍‌ଘାଟିତ କରୁଛି, ଜୀବନସୃଷ୍ଟିର ଗୂଢ଼ ରହସ୍ୟ ଭେଦ କରିବା ଦିଗରେ ନିକଟତର ହେଉଛି । ସର୍ବତ୍ର, ବିଜ୍ଞାନର ସକଳ କ୍ଷେତ୍ରରେ. ବୈଜ୍ଞାନିକ ଅବଧାରଣର ଅସୀମ ଶକ୍ତିର ପ୍ରମାଣ ଆମେ ପାଉଛୁଁ ।

କିନ୍ତୁ ଅଜ୍ଞେୟବାଦର ସବୁଠାରୁ ବଳି ବିଶ୍ୱାସପ୍ରଦ ଖଣ୍ଡନ ହେଲା ବ୍ୟାବହାରିକ କର୍ମ, ମନୁଷ୍ୟର କାର୍ଯ୍ୟ ଓ ଉତ୍ପାଦନ । ଏଙ୍ଗେଲ୍‌ସ କହନ୍ତି ଯେ ଏକ ପ୍ରପଞ୍ଚ ସମ୍ପର୍କରେ ଆମର ଧାରଣା ଅନୁଯାୟୀ ଆମେ ଯେତେବେଳେ ତାକୁ ଘଟାଇ ଦେଇ ପାରୁଁ ବା ସୃଷ୍ଟି କରିଦେଇ ପାରୁଁ, ଆଉ ତାକୁ ଆମର ଉଦ୍ଦେଶ୍ୟ ପୂରଣ ଦିଗରେ ନିୟୋଗ କରିଦେଇ ପାରୁଁ, ସେତେବେଳେ ଆମେ ଦୃଢ଼ନିଶ୍ଚିତ ହେଉଁ ଯେ ଉକ୍ତ ପ୍ରପଞ୍ଚ ସମ୍ପର୍କରେ ଆମର କେତେକ ସୀମାବଦ୍ଧ ଧାରଣା ମଧ୍ୟରେ ପ୍ରକୃତ ଓ ନିର୍ଭରଯୋଗ୍ୟ ଜ୍ଞାନ ନିହିତ ଅଛି ।

ଗବେଷଣାଗାରର ପରୀକ୍ଷା ଏବଂ ତାତ୍ତ୍ୱିକ ଗଣନା ସାହାଯ୍ୟରେ ପଦାର୍ଥ-ବିଦ୍ୟାବିତ୍‌ମାନେ ସୁଶ୍ରୀକ୍ଷ୍ମ ଅଣୁ ମଧ୍ୟରେ ବିସ୍ଫୋରକ ଏକ ଧାରାବାହିକ ପ୍ରତିକ୍ରିୟା ସୃଷ୍ଟି କରିବାକୁ କେବଳ ଶିକ୍ଷା କରି ନ ଥିଲେ, ଅଣୁପୁଞ୍ଜ ମଧ୍ୟରେ ସେ ପ୍ରତିକ୍ରିୟାକୁ ନିୟନ୍ତ୍ରଣ କରିବା ପାଇଁ ମଧ୍ୟ ସମର୍ଥ ହୋଇଥିଲେ । ଶିଳ୍ପ ପରମାଣୁ ହୃତ୍ପିଣ୍ଡ ଯନ୍ତ୍ର ଦ୍ୱାରା ଆଣବିକ ଶକ୍ତିର ଉତ୍ପାଦନ ତାତ୍ତ୍ୱିକ ପଦାର୍ଥବିଦ୍ୟାର ସିଦ୍ଧାନ୍ତର ନିର୍ଭୁଲତାକୁ ପ୍ରମାଣିତ କରିଛି, ଯାହାକି ବୈଜ୍ଞାନିକମାନଙ୍କର କର୍ମର ପ୍ରାରମ୍ଭ । ତାହା ପୁଣି ଦର୍ଶାଇଛି ଯେ ଅନ୍ତଃପରମାଣୁ ପ୍ରକ୍ରିୟାର ନିୟମମାନଙ୍କ ସମ୍ପର୍କରେ ଆମର ପ୍ରକୃତ ଜ୍ଞାନ ରହିଛି ।

ସିଓଲ୍‌କୋଭ୍‌ସ୍କିଙ୍କର ପ୍ରକଳ୍ପ ( ବା ସଂପାଦ୍ୟ ) ଯାହା ମହାଶୂନ୍ୟ ଯାତ୍ରା ଲାଗି ଜେଟ୍ ଇଞ୍ଜିନ୍ ଓ ରକେଟ୍ ବ୍ୟବହାରର ସମ୍ଭାବନାକୁ ତାତ୍ତ୍ୱିକ ଭିତ୍ତି ଉପରେ ଗଠନ କରିଥିଲା, ଆମ ଆଖି ଆଗରେ ତାହା ଅନ୍ତରୀକ୍ଷୀୟ ପୋତ-ଚାଳନାର ଦ୍ୱାର ଉଦ୍‌ଘାଟନ କରିଛି । ଜେଟ୍ ବିମାନ ଚାଳନା, ପୃଥିବୀର କୃତ୍ରିମ ଉପଗ୍ରହ ଏବଂ ଅନ୍ତରୀକ୍ଷୀୟ ରକେଟ ପୋତ ଚାଳନା ଆଦିର ବିକାଶ ଦ୍ୱାରା ପ୍ରମାଣିତ ହୋଇଛି ଯେ ସିଓଲ୍‌କୋଭ୍‌ସ୍କି ଏବଂ ତାଙ୍କର ଉତ୍ତରାଧିକାରୀମାନଙ୍କର ବୈଜ୍ଞାନିକ ମତ ଓ ଦୃଷ୍ଟିକୋଣ ନିର୍ଭୁଲ, ସେମାନଙ୍କର ଗଣନା ସୁପ୍ରତିଷ୍ଠିତ ।

ଆଧୁନିକ ଶିଳ୍ପ ଓ ପ୍ରୟୋଗବିଦ୍ୟା ଜ୍ଞାନର ଶକ୍ତି ସମ୍ପର୍କରେ ଅସଂଖ୍ୟ ପ୍ରମାଣ ପ୍ରଦାନ କରେ ।

## (୩) ସତ୍ୟର ତତ୍ତ୍ୱ

ସତ୍ୟର ସମସ୍ୟା ହେଉଛି ଜ୍ଞାନତତ୍ତ୍ୱର କେନ୍ଦ୍ରୀୟ ସମସ୍ୟା, ପ୍ରତ୍ୟେକ ବିଜ୍ଞାନ ପାଇଁ ସବୁଠାରୁ ବଳି ଗୁରୁତର ପ୍ରଶ୍ନ । ଯଦି କୌଣସି ବୈଜ୍ଞାନିକ ତତ୍ତ୍ୱ ପ୍ରକୃତ ଜ୍ଞାନ ପ୍ରଦାନ କରି ନ ପାରେ, ତେବେ ତାହା ଗୋଟାଏ ପଇସାର ଯୋଗ୍ୟ ବି ନୁହେଁ ।

ବସ୍ତୁଗତ ବାସ୍ତବତା ସହିତ ଆମର ଜ୍ଞାନର ସମ୍ପର୍କ ନେଇ ଯେତେବେଳେ ଆମେ ସଂଶ୍ଳିଷ୍ଟ ବା ଉଦ୍‌ବିଗ୍ନ ହେଉଁ ସେତେବେଳେ ସତ୍ୟର ପ୍ରଶ୍ନ ଦେଖାଦିଏ । ଯେତେବେଳେ ବସ୍ତୁଗତ ବିଶ୍ୱଜଗତ ଆମର ଚେତନାଠାରୁ ସ୍ୱାଧୀନ ସ୍ୱତନ୍ତ୍ରଭାବେ ବିଦ୍ୟମାନ, ସେତେବେଳେ ଅବଧାରଣର ପ୍ରକ୍ରିୟା ମଧ୍ୟରେ ଆମର ଧାରଣା, ଭାବ ଓ ତତ୍ତ୍ୱସବୁ ବାସ୍ତବତାର ଅନୁରୂପ ହେବା ଉଚିତ, ଏହା ଅତି ପରିଷ୍କାର କଥା । ଘଟଣାବଳୀକୁ ଆମର ଧାରଣାର ଉପଯୋଗୀ ହେଲାଭଳି ଏପଟ ସେପଟ କରାଯାଇ ନ ପାରେ, ବରଂ ଅନ୍ୟ ଦିଗରେ ଆମର ଧାରଣାକୁ ବାସ୍ତବ ଘଟଣାବଳୀସମ୍ମତ କରିବାକୁ ହେବ, ତାହା ସହିତ ଖାପ ଖୁଆଇବାକୁ ହେବ । କିନ୍ତୁ ଯେଉଁମାନେ ଭିନ୍ନ ମାର୍ଗ ଅନୁସରଣ କରନ୍ତି ସେମାନେ ଅନ୍ତଃସାରଶୂନ୍ୟ ମନୋଗତବାଦର ଶିକାର ହେବାକୁ

ବାଧ । ସେମାନେ ଆପଣାର ବାସ୍ତବତାର ଚେତନା ହରାନ୍ତି । ନିଜର କାମନାକୁ ଚିନ୍ତାର ଜନକ ପଦରେ ଅଧିଷ୍ଠିତ କରନ୍ତି ଏବଂ ସର୍ବଶେଷରେ ଆପଣାର ବ୍ୟାବହାରିକ କର୍ମରେ ବିଫଳତା ଭଜନ୍ତି ।

ଯଦି ଆମର ଇନ୍ଦ୍ରିୟାନୁଭୂତି, ପ୍ରତ୍ୟକ୍ଷ, ଧାରଣା, ଭାବ ଏବଂ ତତ୍ତ୍ୱସବୁ ବସ୍ତୁଗତ ବାସ୍ତବତାର ଅନୁରୂପ ହୁଏ ଏବଂ ତାକୁ ଯଥାଯଥଭାବେ ପ୍ରତିଫଳିତ କରେ, ଆମେ କହୁଁ ସେ ସବୁ ସତ ; ଆଉ ସତ ବିଷୟର, ବିବୃତି କିମ୍ବା ତତ୍ତ୍ୱକୁ ସତ୍ୟ କୁହାଯାଏ ।

ଅବଧାରଣର ଲକ୍ଷ୍ୟ ହେଲା ସତ୍ୟର ଅନ୍ୱେଷଣ, ସତ୍ୟର ଆବିଷ୍କାର ଆଦି—ଏହା ବହୁ ସମୟରେ କୁହାଯାଇଥାଏ । ଏହାର ଅର୍ଥ ନୁହେଁ ଯେ ସତ୍ୟ ସ୍ୱୟଂସ୍ଥିତ, ମନୁଷ୍ୟ ତାକୁ ଝୁଣ୍ଟି ପଡ଼େ କିମ୍ବା ଆବିଷ୍କାର କରି ବସେ । ତା'ର ଏକମାତ୍ର ଅର୍ଥ ହେଉଛି, ଅବଧାରଣର ଲକ୍ଷ୍ୟ ହେଲା ପ୍ରକୃତ ଜ୍ଞାନ ଲାଭ । ଏହାକୁ ସ୍ମରଣ ରଖିବା ଉଚିତ, କାରଣ କେତେକ ଭାବବାଦୀ ଦାର୍ଶନିକ ଦାବୀ କରି କହନ୍ତି ଯେ ସତ୍ୟର ସ୍ୱକୀୟ ସ୍ୱାଧୀନ ସତ୍ତା ରହିଛି, ଆଉ କେତେକ ଅବସ୍ଥାରେ ମନୁଷ୍ୟ ତାକୁ ଧ୍ୟାନ କରିପାରେ, ବର୍ଣ୍ଣନା କରି-ପାରେ । ବାସ୍ତବ ପକ୍ଷେ 'ସତ୍ୟ'ର ଧାରଣା କେବଳ ମାନବିକ ଜ୍ଞାନ, ଭାବ, ଧାରଣା, ତତ୍ତ୍ୱ ଏବଂ ମାନସିକ ରୂପ ଇତ୍ୟାଦି ପ୍ରତି ପ୍ରଯୋଜ୍ୟ । ବସ୍ତୁଗତ ଜଗତରେ ଯାହା ବିଦ୍ୟମାନ ତାହା ସତ୍ୟ ନୁହେଁ ; ସତ୍ୟ ହେଉଛି ପଦାର୍ଥ, ପ୍ରପଞ୍ଚ, ସମ୍ବନ୍ଧ, ପ୍ରକ୍ରିୟା ଇତ୍ୟାଦି ଯାହା ସବୁ ମନୁଷ୍ୟର ପ୍ରକୃତ ଧାରଣା ଏବଂ ଭାବ ମଧ୍ୟରେ ପ୍ରତିଫଳିତ ।

### ବସ୍ତୁଗତ ସତ୍ୟ

ଯଦିଓ ମାନବିକ ଅବଧାରଣ ପ୍ରକ୍ରିୟା ମଧ୍ୟରେ ସତ୍ୟର ଉଦ୍ଭବ, ତଥାପି ତା' ମଧ୍ୟରେ ପ୍ରତିଫଳିତ ପଦାର୍ଥମାନଙ୍କର ସମ୍ବନ୍ଧ ଓ ବୈଶିଷ୍ଟ୍ୟ ମନୁଷ୍ୟ ଉପରେ ନିର୍ଭର କରେ ନାହିଁ । ସେଥିଯୋଗୁଁ ଆମେ କହିଥାଉ—ସତ୍ୟ ବସ୍ତୁଗତ, ବାସ୍ତବ ।

ତେଣୁ ବସ୍ତୁଗତ ସତ୍ୟ ବୋଇଲେ ଆମେ ବୁଝୁଁ ମାନବିକ ଜ୍ଞାନ, ଯାହାକି ନିର୍ଭୁଲଭାବେ ବସ୍ତୁଗତ ଜଗତକୁ, ତା'ର ନିୟମ ଓ ବୈଶିଷ୍ଟ୍ୟକୁ ପ୍ରତିଫଳିତ କରେ । ଏହି ଅର୍ଥରେ, ତାହା "ବ୍ୟକ୍ତି ଉପରେ ନିର୍ଭର କରେ ନାହିଁ······କୌଣସି ଏକ ମାନବିକ ସତ୍ତା କିମ୍ବା ମନୁଷ୍ୟ ସମାଜ, କାହାରି ଉପରେ ନିର୍ଭର କରେ ନାହିଁ ।" ସତ୍ୟ ଉପରେ ମନୁଷ୍ୟର କର୍ତ୍ତୃତ୍ୱ ନାହିଁ । ମନୁଷ୍ୟ ନିଜର ପାରିପାର୍ଶ୍ୱିକ ଜଗତକୁ ବଦଳାଇ ଦେଇପାରେ, ନିଜର ଜୀବନର ଅବସ୍ଥାରେ ପରିବର୍ତ୍ତନ ଆଣିପାରେ । କିନ୍ତୁ ସେ ନିଜ ଇଚ୍ଛା ଅନୁସାରେ ସତ୍ୟକୁ ବଦଳାଇପାରେ ନାହିଁ, କାରଣ ଯାହା ବସ୍ତୁଗତଭାବେ ବିଦ୍ୟମାନ, ସତ୍ୟ ତାକୁହିଁ ପ୍ରତିଫଳିତ କରେ ।

ପ୍ରତ୍ୟେକ ସତ୍ୟ ବସ୍ତୁଗତ ସତ୍ୟ । ତାହାକୁ ଆତ୍ମଗତ ଧାରଣାରୁ—ଯେଉଁ ଧାରଣା କି ବାସ୍ତବତାର ଅନୁରୂପ ନୁହେଁ,—ଆଉ ଉଦ୍‌ଭାବନଠାରୁ ଅଥବା ମାୟାଠାରୁ

ପୃଥକ୍‌ଭାବେ ଚିହ୍ନିତ କରିବାକୁ ପଡ଼ିବ । ଯେଉଁସବୁ ଜିନିଷକୁ ମନୁଷ୍ୟ ସତ ବୋଲି ବିଚାରିଥିଲା ଅବା ବିଚାର କରେ ତାହା ବାସ୍ତବରେ ସତ ନୁହେଁ । ଦୃଷ୍ଟାନ୍ତସ୍ୱରୂପ, ବହୁକାଳ ଧରି ମନୁଷ୍ୟ ବିଚାରୁଥିଲା ଯେ ପୃଥିବୀ ଚାରିପାଖେ ସୂର୍ଯ୍ୟ ଘୂରୁଛି । କିନ୍ତୁ ତାହା ଏକ ଭୁଲ ଧାରଣା । ଅନ୍ୟ ଦିଗରେ ଆଧୁନିକ ଗଣିତ-ଜ୍ୟୋତିଷ ଅନୁସାରେ ସୂର୍ଯ୍ୟ ହେଉଛି ଆମର ସୌରମଣ୍ଡଳର କେନ୍ଦ୍ର । ତା'ର ଚାରିପାଖେ ଆମର ପୃଥିବୀକୁ ମିଶାଇ ଅନ୍ୟସବୁ ଗ୍ରହ ନିଜ ନିଜ କକ୍ଷରେ ଘୂରୁଛନ୍ତି । ଏହା ବସ୍ତୁଗତଭାବେ ପ୍ରକୃତ ଶିକ୍ଷା, କାହିଁକି ? କାରଣ ତାହା ବାସ୍ତବତାକୁ ନିର୍ଭୁଲଭାବେ ପ୍ରତିଫଳିତ କରେ, ଯେହେତୁ ତାହା ମନୁଷ୍ୟଠାରୁ ସ୍ୱାଧୀନ ସ୍ୱତନ୍ତ୍ରଭାବେ ବିଦ୍ୟମାନ ସୌରମଣ୍ଡଳର ପ୍ରକୃତ ଚରିତ୍ରକୁ ପ୍ରତିଫଳିତ କରେ ।

### ଅବଧାରଣର ପ୍ରକ୍ରିୟା

ମନୁଷ୍ୟର ଚେତନା ମଧ୍ୟରେ ବସ୍ତୁଗତ ବିଶ୍ୱଜଗତର ପ୍ରତିଫଳନକୁ ଗୋଟାଏ ଏକକ କାର୍ଯ୍ୟ ବୋଲି ଅଧିବିଦ୍ୟା ଦୃଷ୍ଟିରୁ ବିଚାରିବା ଅନୁଚିତ । ଅବଧାରଣ ବହୁ ଦିଗ-ସମ୍ବଳିତ ଏକ ପ୍ରକ୍ରିୟା ଏବଂ ପରସ୍ପର ସଂଯୁକ୍ତ ହେଲେ ବି ପୃଥକ ସ୍ତରମାନଙ୍କୁ ନେଇ ଗଠିତ । ଲେନିନ୍ ଲେଖିଥିଲେ—

"ଜୀବନ୍ତ ଧ୍ୟାନରୁ ବିମୂର୍ତ୍ତ ଭାବନା ଏବଂ ସେଥିରୁ ବ୍ୟାବହାରିକ କର୍ମ— ଏଇ ହେଲା ସତ୍ୟକୁ ଅବଧାରଣ କରିବାର, ବସ୍ତୁଗତ ବାସ୍ତବତାକୁ ଅବଧାରଣ କରିବାର ଦ୍ୱନ୍ଦ୍ୱମୂଳକ ପ୍ରକ୍ରିୟା ।"

ଆମେ ଆଗରୁ କହିସାରିଛୁଁ, ମନୁଷ୍ୟ ପଦାର୍ଥମାନଙ୍କ ସହିତ ସକ୍ରିୟ ବ୍ୟାବହାରିକ କର୍ମ ସମ୍ବନ୍ଧର ପ୍ରକ୍ରିୟା ଜରିଆରେ ଯେତେଦୂର ଜ୍ଞାନ ଆହରଣ କରେ ତା'ର ପରିଗମର ଇନ୍ଦ୍ରିୟ ପ୍ରତ୍ୟକ୍ଷ ଦ୍ୱାରା ତାହା କରେ ନାହିଁ । ବ୍ୟାବହାରିକ କର୍ମ, ଯାହା ବହୁ ପ୍ରକାରର ଇନ୍ଦ୍ରିୟାନୁଭୂତିକୁ ଜନ୍ମ ଦିଏ ତାହାହିଁ ମନୁଷ୍ୟକୁ ବାହ୍ୟଜଗତ ସହିତ ସଂଯୁକ୍ତ କରେ ବ୍ୟକ୍ତିବିଶେଷର ଅବଧାରଣ କ୍ରିୟାରେ ଏବଂ ସାଧାରଣଭାବେ ମାନବିକ ଅବଧାରଣର ଇତିହାସରେ ବ୍ୟତିକ୍ରମର କେନ୍ଦ୍ରବିନ୍ଦୁ ସୃଷ୍ଟି କରେ । ସଂକ୍ଷେପରେ କହିଲେ—ଅବଧାରଣର ପ୍ରଥମ ସ୍ତର ବା ପର୍ଯ୍ୟାୟ ଇନ୍ଦ୍ରିୟାନୁଭୂତିକୁ ନେଇ ଗଠିତ ।

### ଇନ୍ଦ୍ରିୟାନୁଭୂତି : ପଦାର୍ଥମାନଙ୍କର ଓ ସେମାନଙ୍କ ବିଶେଷ ଗୁଣର ପ୍ରତିଛବି ;

ଯେତେବେଳେ ଶେଷରେ ବିଶ୍ଳେଷଣରୁ ଦେଖାଗଲା ଯେ, ସମସ୍ତ ଜ୍ଞାନ ଇନ୍ଦ୍ରିୟାନୁଭୂତିରୁ ଆରମ୍ଭ, ସେତେବେଳେ ଆମର ସେ ଇନ୍ଦ୍ରିୟାନୁଭୂତି ସତ୍ୟନିଷ୍ଠ କି ନୁହେଁ ଏବଂ ତାହା ଭୌତିକ ପଦାର୍ଥ ଓ ତାଙ୍କର ବୈଶିଷ୍ଟ୍ୟକୁ ଯଥାଯଥଭାବେ

ପ୍ରତିଫଳିତ କରିପାରେ କି ନାହିଁ, ତା'ର ଉପରେ ପ୍ରଧାନତଃ ସତ୍ୟ ନିର୍ଭର କରୁଛି । ଏଠାରେ ମାର୍କ୍ସବାଦୀ ତତ୍ତ୍ୱ ଦ୍ୱନ୍ଦ୍ୱମୂଳକ ବସ୍ତୁବାଦର ମୌଳିକ ନୀତି ଉପରେ ପ୍ରତିଷ୍ଠିତ ହୋଇଥିବାରୁ ତାହା ଉକ୍ତ ପ୍ରଶ୍ନର ଦୃଢ଼ ଅସ୍ତିବାଚକ ଉତ୍ତର ଦେଇଥାଏ । ଇନ୍ଦ୍ରିୟାନୁଭୂତିଠାରୁ ଆରମ୍ଭ କରି ପ୍ରତ୍ୟେକ ମାନବିକ ଅବଧାରଣା ମଧ୍ୟରେ ଏକ ବସ୍ତୁଗତ ସତ୍ୟ ନିହିତ ଅଛି । ମନୁଷ୍ୟର ଇନ୍ଦ୍ରିୟାନୁଭୂତି, ତା'ର ପ୍ରତ୍ୟକ୍ଷ ଓ ଧାରଣା ଭଳି, ପଦାର୍ଥ ଓ ସେମାନଙ୍କର ବୈଶିଷ୍ଟ୍ୟର ପ୍ରତିଚ୍ଛାୟା ବା ପ୍ରତିଫଳନ ଅଟେ ।

ତେବେ ଅନେକ ଦାର୍ଶନିକ ଓ ପ୍ରକୃତିବିଜ୍ଞାନୀ ଅଛନ୍ତି, ଯେଉଁମାନେ କି ଏହାକୁ ଅସ୍ୱୀକାର କରନ୍ତି ।

ଦୃଷ୍ଟାନ୍ତସ୍ୱରୂପ, ଊନବିଂଶ ଶତାବ୍ଦୀର ମଧ୍ୟଭାଗରେ ବିଖ୍ୟାତ ଜର୍ମାନ ପ୍ରାଣୀତତ୍ତ୍ୱବିତ୍ ଜନ୍ ମୁଲର ଆମର ଇନ୍ଦ୍ରିୟମାନଙ୍କର ଗଠନପ୍ରଣାଳୀ ବିଷୟରେ ଅନୁଧ୍ୟାନ କଲାବେଳେ ଦର୍ଶାଇଥିଲେ ଯେ ଆଲୋକର ଇନ୍ଦ୍ରିୟାନୁଭୂତି କେବଳ ଆଲୋକରଶ୍ମି ଦ୍ୱାରା ସୃଷ୍ଟି ହୁଏ ନାହିଁ ; ଆଉ ମଧ୍ୟ, ବିଦ୍ୟୁତ୍ ପ୍ରବାହ, ଯାନ୍ତ୍ରିକ ଉତ୍ତେଜକ ଆଦି ଦ୍ୱାରା ଆମ ଦର୍ଶନେନ୍ଦ୍ରିୟର ଉତ୍ତେଜନା ଫଳରେ ସୃଷ୍ଟି ହୋଇଥାଏ । ଏହି ଭିତ୍ତି ଉପରେ ମୁଲର୍ ଏକ ଭ୍ରାନ୍ତିକର ସିଦ୍ଧାନ୍ତରେ ଉପନୀତ ହେଲେ ଯେ ଆମର ଇନ୍ଦ୍ରିୟାନୁଭୂତି, ଅନୁରୂପ ଇନ୍ଦ୍ରିୟ ଅବୟବର ଅବସ୍ଥାଠାରୁ ଆଉ ଅଧିକା କିଛି ପ୍ରଦାନ କରେ ନାହିଁ, ଏବଂ ଆମର ଇନ୍ଦ୍ରିୟ ବହିର୍ଭୂତ ପଦାର୍ଥ ଓ ସେମାନଙ୍କର ବୈଶିଷ୍ଟ୍ୟ ବିଷୟରେ ଆମକୁ କୌଣସି ଧାରଣା ଦିଏ ନାହିଁ । ମୁଲରଙ୍କ ଉକ୍ତ ନୀତି "ପ୍ରାଣୀତାତ୍ତ୍ୱିକ ଭାବବାଦ" ନାମରେ ପରିଚିତ ।

ଊନବିଂଶ ଶତାବ୍ଦୀର ଆଉ ଜଣେ ଜର୍ମାନ ବୈଜ୍ଞାନିକ ହରମାନ୍ ହେଲମ୍ହୋଜ ମଧ୍ୟ ଇନ୍ଦ୍ରିୟଅବୟବର ପ୍ରତ୍ୟକ୍ଷ ସମ୍ପର୍କରେ ସନ୍ଦେହ ପ୍ରକାଶ କରିଥିଲେ ।

ଯେଉଁମାନେ ଉପରୋକ୍ତ ବୈଜ୍ଞାନିକମାନଙ୍କର ଦୃଷ୍ଟିକୋଣକୁ ଗ୍ରହଣ କରନ୍ତି, ସେମାନେ ବିଚାରନ୍ତି ଯେ ଇନ୍ଦ୍ରିୟାନୁଭୂତି ପ୍ରତିଚ୍ଛାୟା ନୁହେଁ, ତାହା କେବଳ ପ୍ରଚଳିତ ସଙ୍କେତ, ପ୍ରତୀକ, ଚିତ୍ରଲିପି, ଯାହାକି ଏକ ପ୍ରପଞ୍ଚକୁ ଦର୍ଶାଏ, ଯାହା ତାକୁ ନିର୍ଦ୍ଦେଶ କରିଦିଏ କିନ୍ତୁ ତା'ର ବସ୍ତୁଗତ ପ୍ରକୃତିକୁ ପ୍ରତିଫଳିତ କରେ ନାହିଁ । ଏହି ଦୃଷ୍ଟିକୋଣ, ଇନ୍ଦ୍ରିୟାନୁଭୂତିକୁ ବହିର୍ଜଗତ ସହିତ ମନୁଷ୍ୟ ପାଇଁ ସଂଯୋଗର ଏକ ସେତୁ କରିବା ପରିବର୍ତ୍ତେ ମନୁଷ୍ୟକୁ ସେଥିରୁ ବିଚ୍ଛିନ୍ନ କରିଦିଏ ଏବଂ ଇନ୍ଦ୍ରିୟାନୁଭୂତିକୁ ଏକ ଅଲଙ୍ଘନୀୟ ପ୍ରତିବନ୍ଧକରେ ପରିଣତ କରେ । ଏହି ଦୃଷ୍ଟିକୋଣରୁ ପଦାର୍ଥମାନଙ୍କର ଅବଧାରଣ ଅସମ୍ଭବ । ଆଉ ମଧ୍ୟ ଏହି ଅଜ୍ଞେୟବାଦୀ ଦୃଷ୍ଟିକୋଣ, ପଦାର୍ଥମାନଙ୍କର ବସ୍ତୁଗତ ଅସ୍ତିତ୍ୱକୁ ଅସ୍ୱୀକାର କରିବା ଦିଗରେ ପେଲିଦେବାକୁ ବାଧ୍ୟ, ଯେହେତୁ ବସ୍ତୁଗତ ବାସ୍ତବତା, ପ୍ରଚଳିତ ସଙ୍କେତ ବା ଚିହ୍ନର କୌଣସି ପ୍ରକାର ଅପରିହାର୍ଯ୍ୟ ଅନୁରୂପ

ହୋଇପାରୁ ନାହିଁ । ତେଣୁ , ଇନ୍ଦ୍ରିୟାନୁଭୂତ ଯେ ପଦାର୍ଥମାନଙ୍କର ବସ୍ତୁଗତ ବୈଶିଷ୍ଟ୍ୟ-ଗୁଡ଼ିକର ପ୍ରତିଫଳନ, ଠିକ୍ ହୋଇନାହିଁ ଅସ୍ୱୀକାର କରିଦେବା ଦ୍ୱାରା, ଏହାର ଜଗତରେ ଦର୍ଶନ ଇତିହାସରେ ଆତ୍ମଗତ ଭାବବାଦର ମାର୍ଗ ପରିଷ୍କୃତ ହୋଇଥାଏ । କିନ୍ତୁ ଏହି ଅସ୍ୱୀକୃତ ମନୁଷ୍ୟ ସମାଜ ଓ ବୈଜ୍ଞାନିକ ତଥ୍ୟାବଳୀର ବିରୋଧ କରେ ।

ପ୍ରାଣୀଜଗତର ବିବର୍ତ୍ତନର ଇତିହାସରୁ ଜଣାଯାଏ ଯେ ପଶୁପକ୍ଷୀମାନଙ୍କ ଇନ୍ଦ୍ରିୟ ଅବୟବ ଓ ପରବର୍ତ୍ତୀ କାଳରେ ମନୁଷ୍ୟର ଅବୟବ, ଦେହ ଏବଂ ତା'ର ପରିବେଶର ମିଥସ୍କ୍ରିୟା ପ୍ରକ୍ରିୟା ମଧ୍ୟ ଦେଇ ବିକାଶ ଲଭିଛି ଓ ଉନ୍ନତ ହୋଇଛି । ବିବର୍ତ୍ତନର ଦୀର୍ଘ ସମୟ ଭିତରେ, ବାହ୍ୟଜଗତ ସହିତ ଇନ୍ଦ୍ରିୟ-ଅବୟବ ଏପରିଭାବେ ଖାପ ଖାଇଗଲା ଯେ ତାହା ପାରିପାର୍ଶ୍ୱିକ ଅବସ୍ଥା ସମ୍ପର୍କରେ ଏକ ଯୋଗ୍ୟ ପଥପ୍ରଦର୍ଶକ ହୋଇପାରିଲା । ଲେନିନ୍ ଲେଖିଥିଲେ, "ଯଦି ମନୁଷ୍ୟର ଇନ୍ଦ୍ରିୟାନୁଭୂତ ତା'ର ପରିବେଶ ସମ୍ପର୍କରେ ବସ୍ତୁଗତଭାବେ ନିର୍ଭୁଲ ଚିତ୍ର ପ୍ରଦାନ କରି ନ ଥାନ୍ତା ତେବେ ମନୁଷ୍ୟ କେବେହେଲେ ନିଜକୁ ପରିବେଶ ସହିତ ଜୀବତାତ୍ତ୍ୱିକଭାବେ ଉପଯୋଗୀ କରି ପାରି ନ ଥାନ୍ତା ।"

ଯଦି ଇନ୍ଦ୍ରିୟାନୁଭୂତ ଆମକୁ ପଦାର୍ଥ ଏବଂ ସେମାନଙ୍କ ବୈଶିଷ୍ଟ୍ୟ ସଂପର୍କରେ ଜଣାଅନ୍ତେ ବିଶୁଦ୍ଧ ଜ୍ଞାନ ଦେଇ ନ ଥାନ୍ତା ତେବେ ଭାବନା ମଧ୍ୟ ବିଶୁଦ୍ଧ ହୁଅନ୍ତା ନାହିଁ, କାରଣ ତାହା ଇନ୍ଦ୍ରିୟାନୁଭୂତରୁ ଜାତ ଏବଂ ସେମାନଙ୍କ ଉପରେ ପ୍ରତିଷ୍ଠିତ । ତେଣୁ କେବେହେଲେ କୌଣସି ପ୍ରକାର ବିଶୁଦ୍ଧ ଜ୍ଞାନ ନ ଥାନ୍ତା, ମନୁଷ୍ୟ ଏକ ମାୟା ଓ ମୋହମୟ ଜଗତରେ ବିଚରଣ କରୁଥାନ୍ତା ଏବଂ ତା'ର ଜୀବନଧାରଣ ଅସମ୍ଭବ ହୁଅନ୍ତା ।

ଇନ୍ଦ୍ରିୟାନୁଭୂତ ମଧ୍ୟରେ ଅବଶ୍ୟ ଏକ ଆତ୍ମଗତ ଉପାଦାନ ରହିଛି, କାରଣ ତାହା ସବୁ ମନୁଷ୍ୟର ଇନ୍ଦ୍ରିୟ ଅବୟବ ଓ ସ୍ନାୟୁପ୍ରଣାଳୀ ସହିତ ସଂଯୁକ୍ତ, ତା'ର ମନ ସହିତ ସଂଯୁକ୍ତ । କୌଣସି ପ୍ରତିଛାୟା, ପ୍ରତିଫଳିତ ହେଉଥିବା ପଦାର୍ଥ ସହିତ ସମାନ ହୋଇ ନ ପାରେ । ତାହା ସର୍ବଦା ତା'ର ( ପ୍ରତିଫଳିତ ପଦାର୍ଥର ) ସ୍ୱରୂପକୁ ଜଣା-ଅନ୍ତେ ପାଖାପାଖିରୂପେ ଓ ଅସମ୍ପୂର୍ଣ୍ଣଭାବେ ପ୍ରକାଶ କରିଥାଏ । କିନ୍ତୁ ଇନ୍ଦ୍ରିୟାନୁଭୂତ କେବଳ ମାନବିକ ଚେତନାର ଆତ୍ମଗତ ଅବସ୍ଥା ନୁହେ । "ଇନ୍ଦ୍ରିୟାନୁଭୂତ ହେଉଛି ବସ୍ତୁଗତ ଜଗତର ଆତ୍ମଗତ ପ୍ରତିଛାୟା" (ଲେନିନ୍ ) ।

ଅତଏବ ଇନ୍ଦ୍ରିୟାନୁଭୂତ ମଧ୍ୟରେ ବସ୍ତୁଗତ ସତ୍ୟ ନିହିତ । ଏହାହିଁ ଏକମାତ୍ର ବୈଜ୍ଞାନିକ ବସ୍ତୁବାଦୀ ଦୃଷ୍ଟିକୋଣ । ଲେନିନ୍ ଜୋର ଦେଇ କହିଥିଲେ, "ବସ୍ତୁବାଦୀ ହେବାକୁ ହେଲେ, ଆମର ଇନ୍ଦ୍ରିୟ-ଅବୟବମାନଙ୍କ ଦ୍ୱାରା ଆମ ସମ୍ମୁଖରେ ପ୍ରକଟିତ ହେଉଥିବା ବସ୍ତୁଗତ ସତ୍ୟକୁ ସ୍ୱୀକାର କରିବାକୁ ପଡ଼େ ।"

ଇନ୍ଦ୍ରିୟଲବ୍ଧ ଅଭିଜ୍ଞତା ଦ୍ୱାରା ଆହୃତ ଇନ୍ଦ୍ରିୟାନୁଭୂତି, ପ୍ରତ୍ୟକ୍ଷ ଓ ଧାରଣା ଜ୍ଞାନର ମୂଳଭିତ୍ତି ନିର୍ମାଣ କରେ ଏବଂ ଏହାହିଁ ତା'ର ପ୍ରସ୍ଥାନସ୍ଥଳ । କିନ୍ତୁ ଅବଧାରଣ ସେଇଠାରେ ସ୍ଥଗିତ ହୁଏ ନାହିଁ, ତାହା ଆହୁରି ଅଗ୍ରସର ହୁଏ, ବିମୂର୍ତ୍ତ ଚିନ୍ତାର ସ୍ତରକୁ ଉନ୍ନୀତ ହୁଏ ।

## ଚିନ୍ତା : ପ୍ରପଞ୍ଚର ସାରମର୍ମର ଅବଧାରଣ

ଜ୍ଞାନର ମାର୍କ୍ସବାଦୀ ତତ୍ତ୍ୱ ଉପରୋକ୍ତ ଏଇ ଦୁଇଟି ସ୍ତରର ଗୁଣଗତ ପାର୍ଥକ୍ୟକୁ ସ୍ୱୀକାର କରେ । ସେମାନଙ୍କୁ ପରସ୍ପରଠାରୁ ପୃଥକ କରିଦେବା ପରିବର୍ତ୍ତେ, ଏହା ସେମାନଙ୍କର ଦ୍ୱନ୍ଦ୍ୱମୂଳକ ଅନ୍ତଃସମ୍ବନ୍ଧକୁ ଦେଖିଥାଏ ।

ଯଦିଓ ଚିନ୍ତା ଅବଧାରଣ କ୍ରିୟାର ସର୍ବୋଚ୍ଚ ରୂପ, ତଥାପି ତାହା ଇନ୍ଦ୍ରିୟାନୁଭୂତିର ସ୍ତରରେ ଉପସ୍ଥିତ ଥାଏ । ଯେତେବେଳେ ମନୁଷ୍ୟ ଅନୁଭବ କରେ, ସେ ଚିନ୍ତା କରିପାରିଥାଏ, ତା'ର ଇନ୍ଦ୍ରିୟପ୍ରତ୍ୟକ୍ଷର ଫଳାଫଳ ସଂପର୍କରେ ସେ ସଚେତନ ହୋଇଯାଏ ଏବଂ ଯାହା ପ୍ରତ୍ୟକ୍ଷ କରେ ତାହା ବୋଧ କରେ । ସେଥି ସଙ୍ଗେ ସଙ୍ଗେ ସେଇ ଇନ୍ଦ୍ରିୟାନୁଭୂତି ଓ ପ୍ରତ୍ୟକ୍ଷ, ଯାହାକି କେବଳ ଭାବନା ଲାଗି ପରୀକ୍ଷାଲବ୍ଧ ଜିନିଷ ଯୋଗାଇଥାଏ, ତାହାହିଁ ଆମର ଜ୍ଞାନର ମୂଳଭିତ୍ତି ଗଠନ କରେ ।

ଇନ୍ଦ୍ରିୟ ଅବଧାରଣରେ ସମ୍ଭାବନା ସୀମାବଦ୍ଧ । ପ୍ରପଞ୍ଚର ଅବଧାରଣ, ଯାହା ଇନ୍ଦ୍ରିୟାନୁଭୂତିର ବହିର୍ଭୂତ, ତାହା ବିମୂର୍ତ୍ତ ବା ନିର୍ବିଶିଷ୍ଟ ଚିନ୍ତା କରିଆରେ ସଂଘଟିତ ହୋଇଥାଏ । ଦୃଷ୍ଟାନ୍ତସ୍ୱରୂପ, ଆମେ ଆମ ଇନ୍ଦ୍ରିୟ ଦ୍ୱାରା ଆଲୋକର ବେଗର ମାତ୍ରା, ଯାହାକି ଏକ ସେକେଣ୍ଡରେ ତିନି ଲକ୍ଷ କିଲୋମିଟର ଗତି କରେ, ତାକୁ ସିଧାସଳଖ ଦେଖିପାରୁଁ ନାହିଁ । କିନ୍ତୁ ଉକ୍ତ ଗତିବେଗ ରହିଛି ଏବଂ ଆମେ ତାକୁ ସଙ୍ଗେ ସଙ୍ଗେ ଭାବିନେଇପାରୁଁ । ଆହୁ ମଧ୍ୟ ତାତ୍ତ୍ୱିକ ଗଣନା ଦ୍ୱାରା ଆମେ ତାକୁ ଯନ୍ତ୍ର ସାହାଯ୍ୟରେ ମାପିଦେଇପାରୁଁ । କେତେକ ଅତି କ୍ଷୁଦ୍ର ବିଦ୍ୟୁତ୍ କଣା ଭଳି ଜିନିଷ ମେସିନ୍, ଯାହାର ଜୀବନକାଳ ଏକ ସେକେଣ୍ଡର କୋଟିଏ ଭାଗରୁ ଭାଗେ ମାତ୍ର, ତାକୁ ଦେଖିବାକୁ ଆମେମାନେ ଅସମର୍ଥ । କିନ୍ତୁ ତାକୁ ଆମେ ଭାବିପାରୁଁ । ଗଣିତଶାସ୍ତ୍ର ଚକ୍ଷୁର ଗୋଚର ନ ହେବା ଭଳି ବିଶାଳ ସୀମାତୀତ ପରିମାଣ ତଥା କ୍ଷୁଦ୍ରାତିକ୍ଷୁଦ୍ର ପରିମାଣ, ଉଭୟର ଆଲୋଚନା ଅବିଶ୍ରମଭାବେ ଚଳାଏ ।

ଇନ୍ଦ୍ରିୟର ଅବଧାରଣ ଅବସ୍ଥାରେ ବି ପ୍ରାଥମିକ ସାଧାରଣ ସଂଜ୍ଞା କରାଯାଇଥାଏ । ଆମେ ସାଧାରଣ ବୈଶିଷ୍ଟ୍ୟ ଦେଖିଥାଉଁ, ଯଥା—ବରଫ, ଲୁଣ, ଚିନି, ଫେଣ, କାଗଜ ଆଦି ପଦାର୍ଥମାନଙ୍କର ଶ୍ୱେତବର୍ଣ୍ଣ । କିନ୍ତୁ ଇନ୍ଦ୍ରିୟଜ୍ଞାନ ପ୍ରପଞ୍ଚର ଅନ୍ତର୍ନିହିତ ପ୍ରକୃତି, ସେମାନଙ୍କର ଅପରିହାର୍ଯ୍ୟ ସମ୍ବନ୍ଧ ଓ ଯୋଗାଯୋଗକୁ ପ୍ରକଟିତ କରେ ନାହିଁ ।

ତେଣୁ ପ୍ରପଞ୍ଚକୁ ପରିଚାଳିତ କରୁଥିବା ନିୟମମାନଙ୍କୁ ଆବିଷ୍କାର କରିବାକୁ ହେଲେ, ସେମାନଙ୍କ ସାରମର୍ମ ଭିତରକୁ ଅନୁପ୍ରବେଶ କରିବାକୁ ହେଲେ, ଅର୍ଥାତ୍ ଆମ ଚତୁଃ-ପାର୍ଶ୍ୱସ୍ଥିତ ବିଶ୍ୱଜଗତ ବିଷୟରେ ବୈଜ୍ଞାନିକ ଜ୍ଞାନ ଲାଭ କରିବାକୁ ହେଲେ, ଗୁଣଗତ ଭାବେ ପୃଥକ୍ ଏକ ଅବଧାରଣ କ୍ରିୟା ଆମର ଆବଶ୍ୟକ ହୁଏ । ତାହା ହେଲା ଭାବନା ଯାହାକି ମାନସିକ ରୂପ, ସିଦ୍ଧାନ୍ତ, ପରିଣାମ, କଳ୍ପନା ଏବଂ ତତ୍ତ୍ୱ ରୂପରେ ଦେଖା ଦିଏ ।

ଇନ୍ଦ୍ରିୟ ଦ୍ୱାରା କୌଣସି ନିୟମ ଆପଣାଛାଏଁ ପ୍ରତ୍ୟକ୍ଷ ହୁଏ ନାହିଁ । ଲୋକେ ବହୁକାଳ ଧରି ପୃଥିବୀ ବକ୍ଷରେ ପଦାର୍ଥର ପତନ ଲକ୍ଷ୍ୟ କରି ଆସିଛନ୍ତି ; କିନ୍ତୁ ମାଧ୍ୟା-କର୍ଷଣର ନିୟମ ଆବିଷ୍କାର କରିବା ଏବଂ ତାକୁ ସିଦ୍ଧାନ୍ତର ରୂପ ଦେବା ଲାଗି ବହୁ ବୈଜ୍ଞାନିକଙ୍କ ଅଗ୍ରଗତି ଏବଂ ନିଉଟନଙ୍କ ଧୀ-ଶକ୍ତିର ପ୍ରୟୋଜନ ହୋଇଥିଲା । ସେଇସବୁ ଅଗଣିତ ତଥ୍ୟାବଳୀକୁ ଏହା ଗ୍ରହଣ କରିଥିଲା ଏବଂ ସେମାନଙ୍କର ମୂଳ ଭିତ୍ତି ହେଲା ।

ଆମେ ଜାଣୁଁ, ଆମର ଇନ୍ଦ୍ରିୟ-ଅବୟବ ଉପରେ ପଦାର୍ଥମାନଙ୍କର ପ୍ରଭାବ ଦ୍ୱାରା ଯେଉଁ ଇନ୍ଦ୍ରିୟାନୁଭୂତ ସୃଷ୍ଟି ହୁଏ ତାହା ହେଉଛି ବସ୍ତୁଗତ ଜଗତର ଆତ୍ମଗତ ପ୍ରତିଚ୍ଛାୟା । ଅତଏବ, ସେଥିରେ ବସ୍ତୁଗତ ସତ୍ୟ ନିହିତ । କିନ୍ତୁ ଚିନ୍ତାର ଫଳ, ଭୌତିକ ପଦାର୍ଥମାନଙ୍କ ସହିତ ସିଧାସଳଖ ସମ୍ପୃକ୍ତ ନଥିବା ବିମୂର୍ତ୍ତ ଧାରଣା, ତା' ସମ୍ପର୍କରେ କଣ ସେଇ କଥା କୁହାଯାଇପାରେ ? ହଁ, ଅବଶ୍ୟ କୁହାଯାଇପାରେ ।

ଇନ୍ଦ୍ରିୟାନୁଭୂତ ଓ ପ୍ରତ୍ୟକ୍ଷ ସଦାସର୍ବଦା ଗୋଟିଏ ଗୋଟିଏ ସ୍ୱତନ୍ତ୍ର ନିର୍ଦ୍ଦିଷ୍ଟ ଘଟଣାବଳୀକୁ, ପ୍ରପଞ୍ଚର ବାହ୍ୟ ଦିଗକୁ ବିଚାର କରନ୍ତି । ସେମାନେ ଊଣାଅଧିକେ ନିର୍ଭୁଲଭାବେ ତାହାକୁ ପ୍ରତିଫଳିତ କରନ୍ତି । ବିମୂର୍ତ୍ତ ମାନସିକ ରୂପ ବା ଧାରଣା ମଧ୍ୟ ବସ୍ତୁଗତ ସତ୍ୟ-ନିହିତ ବାସ୍ତବତାର ପ୍ରତିଫଳନ । କିନ୍ତୁ ଏଇ ବିମୂର୍ତ୍ତ ମାନସିକ ରୂପ ବା ଧାରଣା ବାସ୍ତବତାର ଗଭୀର ଅନ୍ତର୍ନିହିତ "ସ୍ତର"କୁ ପ୍ରତିଫଳିତ କରେ । ସେମାନେ କେବଳ ନିଜକୁ ପ୍ରପଞ୍ଚର ବାହ୍ୟ ଇନ୍ଦ୍ରିୟଗ୍ରାହ୍ୟ ଦିଗମାନଙ୍କ ଭିତରେ ଆବଦ୍ଧ ରଖନ୍ତି ନାହିଁ, ସେମାନେ ପ୍ରପଞ୍ଚର ମୂଳରେ ଥିବା ସାରମର୍ମର ସମ୍ବନ୍ଧ ଓ ଯୋଗାଯୋଗକୁ ନିର୍ଦ୍ଦିଷ୍ଟଭାବେ ନିର୍ଦ୍ଧାରିତ କରନ୍ତି ।

ଉଦାହରଣସ୍ୱରୂପ, ଘଡ଼ଘଡ଼ି ଓ ବିଜୁଳିକୁ ବୃଷ୍ଟି ଅନୁସରଣ କରେ, ଏହା ଇନ୍ଦ୍ରିୟ-ଗଣ ଆମକୁ ଦିଅନ୍ତି । କେତେକ ବ୍ୟାବହାରିକ ଚେଷ୍ଟା ଲାଗି, ଯଥା—ଘଡ଼ଘଡ଼ି ମାରିଲେ ଆଶ୍ରୟ ଖୋଜିବା ଆଦି,—ଜ୍ଞାନ ଯଥେଷ୍ଟ ହୋଇପାରେ ; କିନ୍ତୁ ଘଡ଼ଘଡ଼ି ମଧ୍ୟରେ ପରିଲକ୍ଷିତ ହେଉଥିବା ପ୍ରପଞ୍ଚକୁ ବ୍ୟାଖ୍ୟା କରିବାରେ ତାହା ଆଦୌ ଯଥେଷ୍ଟ ନୁହେ । ତାହା ବିମୂର୍ତ୍ତ ଧାରଣା ବା ମାନସିକ ରୂପର ଭାବନାକୁ ଆହ୍ୱାନ କରେ ।

ପୁଞ୍ଜିପତି ଓ ଶ୍ରମିକ ମଧ୍ୟରେ ସମ୍ପର୍କ, କ୍ଷେତ୍ରବିଶେଷରେ ବହୁବିଧ ରୂପ ଗ୍ରହଣ କରିପାରେ,—ପ୍ରକାଶ୍ୟ ଦମନଠାରୁ ବାହ୍ୟ ଅନୁରକ୍ତି, ଗଣତନ୍ତ୍ର ଏବଂ ବନ୍ଧୁତ୍ୱ ଇତ୍ୟାଦି । କିନ୍ତୁ ପୁଞ୍ଜିପତି ଓ ଶ୍ରମିକ ମଧ୍ୟରେ ସମ୍ପର୍କର ସାରମର୍ମ ସଦାସର୍ବଦା ସମାନ— ତା ହେଲା ଶୋଷଣ । ଶ୍ରେଣୀସମ୍ପର୍କର ଏହି ପ୍ରକୃତ ସାରମର୍ମକୁ ଉଦ୍‌ଘାଟିତ କରିବା ଦିଗରେ ବିଭିନ୍ନ ନିର୍ଦ୍ଦିଷ୍ଟ ତଥ୍ୟ ଓ ଘଟଣାବଳୀର ବର୍ଣ୍ଣନା ଯଥେଷ୍ଟ ନୁହେଁ । ସେଥିଲାଗି ପୁଞ୍ଜିବାଦର ପ୍ରକୃତିକୁ ପ୍ରକାଶ କରିଭଳି ଏକ ଗଭୀର ତାତ୍ତ୍ୱିକ ବିଶ୍ଳେଷଣ ଆବଶ୍ୟକ ; ଆଉ ତାହା, ତା'ର ନିୟମମାନଙ୍କୁ ପ୍ରକାଶ କରିବା ଦିଗରେ ଯଥେଷ୍ଟ ବିମୂର୍ତ୍ତ ମାନସିକ ରୂପ ବା ଧାରଣାକୁ ଆହ୍ୱାନ କରେ ।

ଲେନିନ୍ ଲେଖିଥିଲେ, "ଭାବନା, ଯାହାକି ମୂର୍ତ୍ତିରୁ ବିମୂର୍ତ୍ତିକୁ ଉନ୍ନୀତ ହୁଏ, ତାହା ସତ୍ୟଠାରୁ...ଅପସାରିତ ହୁଏ ନାହିଁ, ସତ୍ୟର ନିକଟବର୍ତ୍ତୀ ହୁଏ । ବସ୍ତୁର ବିମୂର୍ତ୍ତିତା, ପ୍ରକୃତିର ଏକ ନିୟମ, ମୂଲ୍ୟର ବିମୂର୍ତ୍ତିତା ଇତ୍ୟାଦି, ପଦେ କଥାରେ, ସମସ୍ତ ବୈଜ୍ଞାନିକ (ନିର୍ଭୁଲ, ଗୁରୁତ୍ୱପୂର୍ଣ୍ଣ, ଅନିଷ୍ଠିର) ବିମୂର୍ତ୍ତିତା ପ୍ରକୃତିକୁ ଅଧିକ ଗଭୀର, ଅଧିକ ନିର୍ଭୁଲ, ଅଧିକ ପରିପୂର୍ଣ୍ଣଭାବେ ପ୍ରତିଫଳିତ କରେ ।"

ଚିନ୍ତାର ଶକ୍ତି, ବିମୂର୍ତ୍ତିତା ରଚନା କରିବାରେ ନିଜର ଦକ୍ଷତାରେ ଏବଂ କ୍ଷୁଦ୍ର ବିଷୟାବଳୀକୁ ପରିହାର କରିବା ଦିଗରେ ତଥା ପ୍ରପଞ୍ଚର ମୁଖ୍ୟ ଓ ସର୍ବଶ୍ରେଷ୍ଠ ସାର ବିଷୟକୁ ପ୍ରକାଶ କରୁଥିବା ସାମାନ୍ୟୀକରଣରେ ଉପନୀତ ହେବାର ସାମର୍ଥ୍ୟରେ ନିହିତ ରହିଛି ।

ଆଶୁ କ୍ଷଣିକ ମୁହୂର୍ତ୍ତର ସୀମା ଅତିକ୍ରମ କରି ଅଗ୍ରସର ହେବା, ଅତୀତର ବିକାଶକୁ ବୁଝିବା ଏବଂ ତାହା ଦ୍ୱାରା ଆବିଷ୍କୃତ ବସ୍ତୁଗତ ନିୟମର ମାଧ୍ୟମରେ ଭବିଷ୍ୟତକୁ ପୂର୍ବରୁ ଅବଲୋକନ କରିବା,—ଚିନ୍ତାର ଏହି ଦକ୍ଷତା ମଧ୍ୟରେ ତା'ର ଶକ୍ତି ନିହିତ । ଚିନ୍ତା ଏକ ସକ୍ରିୟ ପ୍ରକ୍ରିୟା—ମାନସିକ ରୂପ ସୃଷ୍ଟି କରିବାର ଏବଂ ତାକୁ ଧରି କାର୍ଯ୍ୟ କରିବାର ଏକ ପ୍ରକ୍ରିୟା । କିନ୍ତୁ ଚିନ୍ତା ଏବଂ ତା'ର ସୃଷ୍ଟି (ଧାରଣା ବା ମାନସିକ ରୂପ) ବସ୍ତୁଗତ ଜଗତ ସହିତ ସଂଶ୍ଳିଷ୍ଟ ; ହେଲେ ସିଧାସଳଖ ସଂଶ୍ଳିଷ୍ଟ ନୁହେଁ, ତାହା ପରୋକ୍ଷ ଭାବରେ ବ୍ୟାବହାରିକ କ୍ରିୟା ଏବଂ ଇନ୍ଦ୍ରିୟାନୁଭୂତି ଦ୍ୱାରା ସଂଯୁକ୍ତ । ମାନସିକ ରୂପର ଏକ ସୁଯୋଗ ରହିଛି ଯେ ତାହା କୌଣସି ବିଶେଷ ଇନ୍ଦ୍ରିୟାନୁଭୂତ ତଥ୍ୟାବଳୀ ଦ୍ୱାରା ବନ୍ଧା ନୁହେଁ । ଏହି କାରଣରୁ ଚିନ୍ତା ପ୍ରପଞ୍ଚକୁ ବିଶ୍ଳେଷଣ ଏବଂ ବ୍ୟାପକଭାବେ ଅଧ୍ୟୟନ କରିବାରେ ସମର୍ଥ, ନିର୍ଦ୍ଦିଷ୍ଟ ବାସ୍ତବତାର ଅସୀମ ସମୀପବର୍ତ୍ତିତା ଲାଭ କରିବାରେ ଏବଂ ବିଶ୍ୱକୁ ଯଥାଯଥଭାବେ ପ୍ରତିଫଳିତ କରିବାରେ ତା'ର ଦକ୍ଷତା ଓ ଶକ୍ତି ରହିଛି ।

କିନ୍ତୁ ଏହା କରିବାକୁ ଗଲବେଳେ ଚିନ୍ତା ବାସ୍ତବତାକୁ ଏଡ଼ିଦେବାର, ଭିତ୍ତିହୀନ ରହସ୍ୟାବୃତ କଳ୍ପନାର ବିପଦ ସର୍ବଦା ରହିଛି ; ଗୋଟାଏ ପ୍ରକାର ସ୍ୱୟଂସମ୍ପୂର୍ଣ୍ଣ

ଅବସ୍ଥାରେ, ନିଜେ ହିଁ ନିଜର ଲକ୍ଷ୍ୟରେ ପରିଣତ ହେବାର ଆଶଙ୍କା ଚିନ୍ତା ପକ୍ଷରେ ସଦାସର୍ବଦା ରହିଛି । ଏହା ହେଉଛି ଭାବବାଦର ମାର୍ଗ ।

ତାହାର ଏକମାତ୍ର ପ୍ରତିଷେଧକ ହେଲା ବ୍ୟାବହାରିକ କ୍ରିୟା, ଜୀବନ, ଉତ୍ପାଦନ ଏବଂ ଲୋକମାନଙ୍କର ଅଭିଜ୍ଞତା ସହିତ ସଂଯୁକ୍ତ ହୋଇ ରହିବା । ପ୍ରକୃତ ବିଜ୍ଞାନ ଅଗ୍ରଗତି କରେ, କାରଣ ବୈଜ୍ଞାନିକମାନଙ୍କର ତାତ୍ତ୍ୱିକ ଚିନ୍ତା ଯେତେ ଊର୍ଦ୍ଧ୍ୱଗାମୀ ହେଉ ପଛେ ତାହା ସଦାସର୍ବଦା ଇନ୍ଦ୍ରିୟ-ଅଭିଜ୍ଞତାକୁ, ବ୍ୟାବହାରିକ କର୍ମକ୍ଷେତ୍ରକୁ ଫେରିଆସେ । ବ୍ୟାବହାରିକ କ୍ରିୟା, ପରୀକ୍ଷା ନିରୀକ୍ଷା ଏବଂ ତାତ୍ତ୍ୱିକ ଚିନ୍ତା—ଏମାନଙ୍କର କ୍ରମାଗତ ନିରବଚ୍ଛିନ୍ନ ମିଥକ୍ରିୟା ବିଜ୍ଞାନର ସଫଳ ଅଗ୍ରଗତିକୁ ସୁନିଶ୍ଚିତ କରେ ।

ଆପଣାର ହସ୍ତ ଓ ମସ୍ତିଷ୍କ, ଏ ଦୁହିଁଙ୍କର ସମ୍ମିଳିତ କାର୍ଯ୍ୟ ଜରିଆରେ ହିଁ ପ୍ରକୃତିର ଅସଂଖ୍ୟ ନିୟମ ଆବିଷ୍କାର କରିବାକୁ ମନୁଷ୍ୟ ସକ୍ଷମ ହୋଇଛି ; ସେସବୁକୁ ଯଥାର୍ଥଭାବେ ଉପଲବ୍ଧି କରିବାରେ ତଥା ପ୍ରକୃତି ଏବଂ ତା'ର ବିଶାଳ ଶକ୍ତିମାନଙ୍କୁ ଆୟତ୍ତ ଓ ଅଧିକାର କରିବା ନିମନ୍ତେ ସେ ସମର୍ଥ ହୋଇଛି ।

## ଅନନ୍ତ ଜଗତର ଅନନ୍ତ ଅବଧାରଣା

ମନୁଷ୍ୟର ଅବଧାରଣା ସାମଗ୍ରିକଭାବେ ବିକାଶ ଲାଭ କରୁଥିବା ଏକ ଅଶେଷ ଅବିରାମ ପ୍ରସାରିତ ପ୍ରକ୍ରିୟା ।

ମନୁଷ୍ୟକୁ ପରିବେଷ୍ଟନ କରିଥିବା ବସ୍ତୁଗତ ଜଗତ ଅନନ୍ତ, ଅସୀମ । ତାହା ଅବିରାମ ପରିବର୍ତ୍ତିତ ହୁଏ, ବିକାଶ ଲଭେ କରେ । ତାହା ଅଶେଷ ପ୍ରକାର ଅସଂଖ୍ୟ ରୂପକୁ ଜନ୍ମ ଦେଉଛି । ତେବେ ମନୁଷ୍ୟର ଅବଧାରଣା ବିଶ୍ୱବ୍ରହ୍ମାଣ୍ଡର ବ୍ୟାପ୍ତିକୁ ଯେତେ ଗଭୀରଭାବେ ଭେଦ କରିପାରିବ, ତାହା ସଦାସର୍ବଦା ନୂତନ ଗବେଷଣା ଏବଂ ସାମାନ୍ୟୀକରଣ ଲାଗି ନୂତନ ନୂତନ ନିୟମର ଆବିଷ୍କାର ପାଇଁ ଏବଂ ଆହୁରି ଅଧିକ ସାରମର୍ମ, ମହାନ ଗଭୀର ବିଶ୍ୱଜନୀନ ସମ୍ବନ୍ଧସବୁ ଅନୁସନ୍ଧାନ କରିବା ନିମନ୍ତେ ସେତେସେତେ ସୁପ୍ରଶସ୍ତ ଅସରନ୍ତି କ୍ଷେତ୍ର ସେ ପାଇବ ।

ମନୁଷ୍ୟର ଆୟତ୍ତାଧୀନ ଗୋଟିଏ ହେଲେ ବିଜ୍ଞାନ ତା'ର ଆପଣା କ୍ଷେତ୍ରରେ ତା'ର ସମସ୍ତ ପ୍ରପଞ୍ଚକୁ ଏବଂ ସେ କ୍ଷେତ୍ରର ସମସ୍ତ ନିୟମାନୁବର୍ତ୍ତିତାକୁ, ପୂର୍ଣ୍ଣଭାବେ ବ୍ୟାଖ୍ୟା କରିପାରିନାହିଁ । ପ୍ରକୃତିର ଅନନ୍ତ ଚରିତ୍ର ବା ଗୁଣ ହେତୁ କେବେହେଲେ ତାହା କରିବାକୁ ଏହା ସମର୍ଥ ହୋଇପାରିବ ନାହିଁ । ଏଙ୍ଗେଲ୍‌ସ୍ କହିଥିଲେ, ବିଶ୍ୱବ୍ରହ୍ମାଣ୍ଡକୁ ପରିପୂର୍ଣ୍ଣଭାବେ ଅବଧାରଣ କରିବା, ଅସୀମତାକୁ ଗଣନା କରିବାର ଅଲୌକିକତା ସଙ୍ଗେ ସମାନ । ଅସଂଖ୍ୟ ସଂଖ୍ୟାକୁ ଗଣନା କରିବା ଯେମିତି ଅସମ୍ଭବ, ଅବଧାରଣ ଦ୍ୱାରା ପ୍ରକୃତିକୁ ନିଃଶେଷ କରିବା ସେଇଭଳି ଅସମ୍ଭବ ।

ଅବଧାରଣ ଅନନ୍ତ, କାରଣ ଅବଧାରଣର ବିଷୟବସ୍ତୁ—ପ୍ରକୃତି ଓ ସମାଜ—କେବଳ ଅନ୍ତହୀନ ବୈଚିତ୍ର୍ୟମୟ ନୁହେଁ, ଅବଧାରଣର ନିଜର ମଧ୍ୟ ସୀମା ନାହିଁ । ଉତ୍ପାଦନ ଓ ସାମାଜିକ ସମ୍ପର୍କର ବର୍ଦ୍ଧିଷ୍ଣୁ ପ୍ରଗତିଶୀଳ ବିକାଶ ନିତ୍ୟନୂତନ ତାତ୍ତ୍ୱିକ ଓ ପ୍ରାୟୋଗିକ ସମସ୍ୟା ଯେନ ବିକାଶର ସମ୍ମୁଖୀନ ହେଉଛି ଏବଂ ନୂତନ ପ୍ରୟୋଜନୀୟତାମାନ ସୃଷ୍ଟି କରୁଛି । ଜ୍ଞାନ ଲାଭ ଲାଗି ଆକାଂକ୍ଷାର ସୀମା ନାହିଁ । ପ୍ରତ୍ୟେକଟି ନୂତନ ଆବିଷ୍କୃତ ସତ୍ୟ ମନୁଷ୍ୟ ଲାଗି ନୂତନ ଦିଗ୍‌ବଳୟମାନ ଉଦ୍‌ଘାଟିତ କରୁଛି, ନୂତନ ପ୍ରଶ୍ନ ଉତ୍ଥାପନ କରୁଛି ଏବଂ ଅବଧାରଣର ବିଷୟବସ୍ତୁ ମଧ୍ୟରେ ଅଧିକ ଅନୁପ୍ରବେଶ କରିବାରେ ଏବଂ ପୂର୍ବର ଜ୍ଞାନକୁ ପରିବୃଦ୍ଧି କରିବାରେ ଅଧିକ ପ୍ରଣୋଦିତ, ପ୍ରୋତ୍ସାହିତ କରୁଛି ।

ବିଶ୍ୱଜଗତ ଅବିନଶ୍ୱର, ଜ୍ଞାନ ଅପରିସୀମ । ଦ୍ୱନ୍ଦ୍ୱମୂଳକ ବସ୍ତୁବାଦର ଏ ନୀତି ସମସ୍ତ ପ୍ରକାର ଅଜ୍ଞେୟବାଦର ପରିପନ୍ଥୀ । ପ୍ରତ୍ୟେକ ଯୁଗରେ ଜ୍ଞାନର ଐତିହାସିକ ପରିସୀମାକୁ ଦ୍ୱନ୍ଦ୍ୱମୂଳକ ବସ୍ତୁବାଦ ସ୍ୱୀକାର କରେ, କିନ୍ତୁ ବିଜ୍ଞାନ ଅତିକ୍ରମ କରିବାକୁ ଅସମର୍ଥ ଏପରି କୌଣସି ପରମସୀମାର ଅସ୍ତିତ୍ୱ ଭଳି ଭ୍ରାନ୍ତ ଧାରଣାକୁ ଦୃଢ଼ଭାବେ ତାହା ପ୍ରତ୍ୟାଖ୍ୟାନ କରେ ।

ମନୁଷ୍ୟର ଅବଧାରଣ ସର୍ବଶକ୍ତିମାନ । ତା'ର କୌଣସି ପରିସର ନାହିଁ, କୌଣସି ପରିସୀମା ନାହିଁ । କିନ୍ତୁ ଏଇ ସର୍ବଶକ୍ତିମାନ ଅବଧାରଣ ବ୍ୟକ୍ତିବିଶେଷମାନଙ୍କ ଦ୍ୱାରା ହିଁ ଉପାର୍ଜିତ, ଯାହାଙ୍କ ସୁପ୍ତ ଶକ୍ତି ତାଙ୍କ ନିଜର ସାମର୍ଥ୍ୟ, ପ୍ରଲବ୍ଧ ଜ୍ଞାନର ସ୍ତର ଏବଂ ଉପସ୍ଥିତ ପ୍ରାୟୋଗିକ ସୁବିଧା ସୁଯୋଗ ଆଦି ଦ୍ୱାରା ସୀମାବଦ୍ଧ ।

ବ୍ୟକ୍ତିବିଶେଷଙ୍କ ସୀମାବଦ୍ଧ ଅବଧାରଣର ସମ୍ଭାବନା ଏବଂ ମୌଳିକଭାବେ ଜ୍ଞାନର ଅପରିମେୟ ଅନନ୍ତ ପ୍ରକୃତି—ଏ ଦୁହିଁଙ୍କର ବିରୋଧିତା ପୁରୁଷ ପୁରୁଷ କାଳ ଧରି ମନୁଷ୍ୟସମାଜର ଅବସ୍ଥିତିର ପ୍ରତ୍ୟେକ ମୁହୂର୍ତ୍ତରେ ତା'ର ସାମୂହିକ ଶ୍ରମଦ୍ୱାରା ଅତିକ୍ରାନ୍ତ ହୁଏ । ଏଙ୍ଗେଲ୍‌ସ୍ କହିଥିଲେ, "ମାନବିକ ଚିନ୍ତା ଅତୀତ, ବର୍ତ୍ତମାନ ଏବଂ ଭବିଷ୍ୟତର ଶହ ଶହ କୋଟି ମଣିଷଙ୍କର କେବଳ ବ୍ୟକ୍ତିଗତ ଚିନ୍ତାଭାବେ ବିଦ୍ୟମାନ ।"

ବୈଜ୍ଞାନିକ ସତ୍ୟ ହଠାତ୍ ନିଖୁଣ ରୂପରେ ଉଦ୍‌ଭବ ହୁଏ ନାହିଁ । ବହୁ ପୁରୁଷକାଳର ପୁଞ୍ଜୀଭୂତ ଜ୍ଞାନ ଏବଂ ସୁଦୀର୍ଘ କାଳର ବୈଜ୍ଞାନିକ ବିକାଶ ପ୍ରକ୍ରିୟା ଫଳରେ ତାହା ରୂପ ଧାରଣ କରେ । "ଅବଧାରଣ, ବିଷୟବସ୍ତୁ ପ୍ରତି ଚିନ୍ତାର ଚିରନ୍ତନ, ଅନ୍ତହୀନ ଗତି । ମାନବଚିନ୍ତାରେ ପ୍ରକୃତିର ପ୍ରତିଫଳନକୁ 'ମୃତ', 'ବିମୂର୍ତ୍ତ', ଗତିହୀନ, ବିରୋଧିତାହୀନ ବୋଲି ଧାରଣା କରିବା ଅନୁଚିତ; ତାହାକୁ ବରଂ ଗତିର ଏକ ଚିରନ୍ତନ ପ୍ରକ୍ରିୟା, ବିରୋଧିତାର ପ୍ରାରମ୍ଭ ଓ ତା'ର ସମାଧାନ ବୋଲି ଧାରଣା କରିବାକୁ ହେବ ।"

## ପରମ ଓ ଆପେକ୍ଷିକ ସତ୍ୟ

ପ୍ରତ୍ୟେକ ବିଶେଷ ଐତିହାସିକ କ୍ଷଣରେ ବିଜ୍ଞାନ ଦ୍ୱାରା ଆହୃତ ଜ୍ଞାନ କେତେକାଂଶରେ ଅପୂର୍ଣ୍ଣ, ଅମାର୍ଜିତ । ଏହି ଅପୂର୍ଣ୍ଣତାକୁ ଧୀରେ ଧୀରେ ଦୂର ଓ ହ୍ରାସ କରିବା ମଧ୍ୟରେ ଅବଧାରଣର ଅଗ୍ରଗତି ନିହିତ ଥିଲାବେଳେ, ପ୍ରପଞ୍ଚର ପ୍ରତିଫଳନର ସଠିକତା ଓ ପରିପୂର୍ଣ୍ଣତା ଏବଂ ପ୍ରକୃତିର ନିୟମ ସବୁ ଅବିରାମ ବୃଦ୍ଧି ଲାଭ କରେ ।

ଏକ ଦିଗରେ ବୈଜ୍ଞାନିକ ଅଗ୍ରଗତିର ଶତ୍ରୁମାନଙ୍କ ଦ୍ୱାରା ଅନେକ ସମୟରେ ଇଚ୍ଛାକୃତଭାବେ ବ୍ୟବହୃତ ହେଉଥିବା ମିଥ୍ୟା ଏବଂ ଅନ୍ୟ ଦିଗରେ ବସ୍ତୁଗତ କାରଣରୁ ଜାତ ଭ୍ରମ ଓ ଭ୍ରାନ୍ତଧାରଣା ମଧ୍ୟରେ ପାର୍ଥକ୍ୟ ନିଶ୍ଚୟ ଦେଖିବାକୁ ପଡ଼ିବ । ଉକ୍ତ ବସ୍ତୁଗତ କାରଣ ହେଲା ଏକ ନିର୍ଦ୍ଦିଷ୍ଟ କ୍ଷେତ୍ରରେ ଜ୍ଞାନର ସାଧାରଣ ସ୍ତରରେ ଦାରିଦ୍ର୍ୟ, ବୈଜ୍ଞାନିକ ଗବେଷଣାରେ ବ୍ୟବହୃତ ଟେକନିକାଲ ଯନ୍ତ୍ରପାତିର ତ୍ରୁଟି ବା ପୂର୍ଣ୍ଣତାର ଅଭାବ ଇତ୍ୟାଦି । ପୁଣି ସତ୍ୟ ବହୁ ସମୟରେ ମିଥ୍ୟାର ପାଖାପାଖି ବିକାଶ ଲାଭ କରିଥାଏ । ଏଥିରୁ ଜ୍ଞାନର ଦ୍ୱନ୍ଦ୍ୱାତ୍ମକ ବିରୋଧିତା ପ୍ରତିପାଦିତ ହୁଏ । ବେଳେବେଳେ ଏକଦେଶଦର୍ଶୀ, ଏପରିକି ଭୁଲ ତତ୍ତ୍ୱ ମୁଦ୍ଧା ସତ୍ୟର ବିକାଶର ଏକ ରୂପ ଭଳି କାର୍ଯ୍ୟ କରୁଥିବାର ଦେଖାଯାଏ ।

ଊନବିଂଶ ଶତାବ୍ଦୀରେ ପଦାର୍ଥବିଦ୍ୟା ଆଲୋକର ତରଙ୍ଗତତ୍ତ୍ୱକୁ ଗ୍ରହଣ କରୁଥିଲା । ବିଂଶ ଶତାବ୍ଦୀର ପ୍ରାରମ୍ଭରେ ଦେଖାଗଲା ଯେ ଆଲୋକର ତରଙ୍ଗତତ୍ତ୍ୱ ଏକଦେଶଦର୍ଶୀ ଏବଂ ଯଥେଷ୍ଟ ନୁହେଁ ; ଯେହେତୁ ଆଲୋକର ତରଙ୍ଗାୟିତ ଓ କଣିକାକାର, ଉଭୟ ପ୍ରକାର ପ୍ରକୃତି ରହିଛି । ଯାହା ହେଉ, ସେହି ଏକଦେଶଦର୍ଶୀ ତରଙ୍ଗତତ୍ତ୍ୱ ବହୁ ଗୁରୁତ୍ୱପୂର୍ଣ୍ଣ ଆବିଷ୍କାର ଏବଂ ଅସଂଖ୍ୟ ଆଲୋକ-ପ୍ରପଞ୍ଚର ବ୍ୟାଖ୍ୟା କରିବାକୁ ସମର୍ଥ ହୋଇଥିଲା ।

ଭ୍ରାନ୍ତ ଭାବବାଦୀ ଭିତ୍ତି ଉପରେ ହେଗେଲଙ୍କ ଦ୍ୱାରା ଦ୍ୱନ୍ଦ୍ୱମୂଳକ ପଦ୍ଧତିର ବିକାଶକୁ, ଭୁଲ ତତ୍ତ୍ୱ ଉପରେ ସତ୍ୟ କିପରି ବିକାଶ ଲାଭ କରେ ତାହାର ଏକ ଦୃଷ୍ଟାନ୍ତଭାବେ ଗ୍ରହଣ କରାଯାଇପାରେ ।

ମନୁଷ୍ୟ ଦ୍ୱାରା ସଂଗୃହୀତ ସତ୍ୟ ଏବଂ ମାନବିକ ଜ୍ଞାନର ଅପୂର୍ଣ୍ଣତା ଓ ତ୍ରୁଟିକୁ ଜ୍ଞାନର ଆପେକ୍ଷିକତା ବୋଲି ସାଧାରଣତଃ ବର୍ଣ୍ଣନା କରାଯାଏ । ଆପେକ୍ଷିକ ସତ୍ୟ ହେଉଛି ତ୍ରୁଟିଯୁକ୍ତ, ଅପୂର୍ଣ୍ଣ ସତ୍ୟ ।

କିନ୍ତୁ ଆମେ ଯଦି ମାନବିକ ଜ୍ଞାନର ଆପେକ୍ଷିକତାକୁ ମାନିନେଇ ସେଇଠାରେ ଅଟକିଯାଉଁ, ପରମ ସତ୍ୟର ପ୍ରଶ୍ନ ଦିଗରେ ଅଗ୍ରସର ନ ହେଉଁ, ତାହାହେଲେ ଅନେକ ସମୟରେ ବହୁ ସମସାମୟିକ ପଦାର୍ଥବିଦ୍ୟାବିତ୍ ଯେଉଁ ଭୁଲ କରିଥାନ୍ତି, ଆଉ ଯେଉଁ ଭୁଲକୁ କି ଭାବବାଦୀ ଦାର୍ଶନିକମାନେ ନିଜର ଲକ୍ଷ୍ୟପୂରଣ ଦିଗରେ ଚତୁରତା ସହ

ବ୍ୟବହାର କରିଥାନ୍ତି, ଆମେ ସେଇଭଳି ଭୁଲ କରିବସିବା । ସେମାନେ ମାନବିକ ଜ୍ଞାନ ମଧ୍ୟରେ କେବଳ ଆପେକ୍ଷିକତା, ଦୁର୍ବଳତା ଓ ତ୍ରୁଟି ଦେଖିଥାନ୍ତି ଏବଂ ଫଳରେ ବସ୍ତୁଗତ ସତ୍ୟକୁ ଅସ୍ୱୀକାର କରନ୍ତି, ଆପେକ୍ଷିକତାବାଦ ଏବଂ ଅଜ୍ଞେୟବାଦରେ ଉପନୀତ ହୁଅନ୍ତି । ଯେ କୌଣସି କୁ-ଯୁକ୍ତି କିମ୍ବା ଭ୍ରାନ୍ତ ଧାରଣା ଏଇ ଏକଦେଶଦର୍ଶୀ ଆପେକ୍ଷିକତାବାଦର ଦୃଷ୍ଟିକୋଣରୁ ଯଥାର୍ଥ ବୋଲି ପ୍ରତିପାଦିତ ହୋଇପାରେ, କାରଣ ଏହା ପ୍ରତ୍ୟେକ କଥାକୁ ଆପେକ୍ଷିକ ବୋଲି ଗ୍ରହଣ କରେ ଏବଂ କୌଣସି ବିଷୟ ପରମ ନୁହେଁ ବୋଲି ବିଚାରେ ।

ଲେନିନ କହିଥିଲେ ଯେ ବସ୍ତୁବାଦୀ ଦ୍ୱନ୍ଦ ଆମର ସକଳ ଜ୍ଞାନର ଆପେକ୍ଷିକତାକୁ ସ୍ୱୀକାର କରେ ; ତେବେ, "ବସ୍ତୁଗତ ସତ୍ୟକୁ ଅସ୍ୱୀକାର କରିବା ଅର୍ଥରେ" ତାହା କରେ ନାହିଁ, "ବରଂ ଏଇ ସତ୍ୟ ପ୍ରତି ଆମର ଜ୍ଞାନର ସମୀପବର୍ତ୍ତିତାର ପରିସୀମା ଯେ ଐତିହାସିକଭାବେ ସର୍ତ୍ତଯୁକ୍ତ, ଏଇ ଅର୍ଥରେ" କରିଥାଏ ।

ସଦାସର୍ବଦା ରହିଥିବା ଆମର ଆପେକ୍ଷିକ ଜ୍ଞାନ ମଧ୍ୟରେ ବସ୍ତୁଗତଭାବେ ପ୍ରକୃତ ବିଷୟବସ୍ତୁ ରହିଛି, ଯାହାକି ଅବଧାରଣ ପ୍ରକ୍ରିୟା ଭିତରେ ସଂରକ୍ଷିତ ହୁଏ ଏବଂ ବିଜ୍ଞାନର ଅଧିକାଧିକ ବିକାଶ ଲାଗି ଏକ ଭିତ୍ତି ଭାବରେ ନିୟୋଜିତ ହୋଇଥାଏ । ମାନବ ଜ୍ଞାନର ଆପେକ୍ଷିକ ସତ୍ୟ ମଧ୍ୟରେ ଏଇ ଅକ୍ଷୟସ୍ଥାୟୀ ବିଷୟବସ୍ତୁକୁ ଏହାର ଚୂଡ଼ାନ୍ତ ବିଶୁଦ୍ଧ ବିଷୟବସ୍ତୁ କିମ୍ବା ଏକ କଥାରେ ପରମ ସତ୍ୟ ବୋଲି କୁହା-ଯାଇଥାଏ ।

ପରମ ସତ୍ୟର ସ୍ୱୀକୃତି ବସ୍ତୁଗତ ସତ୍ୟର ସ୍ୱୀକୃତିରୁ ଅଗ୍ରସର ହୋଇଥାଏ । ବାସ୍ତବିକ, ଯଦି ଆମର ଜ୍ଞାନ ବସ୍ତୁଗତ ବାସ୍ତବତାକୁ ପ୍ରତିଫଳିତ କରେ ତେବେ ସେଥିରେ ଅନିବାର୍ଯ୍ୟଭାବେ ଥିବା ଅଶୁଦ୍ଧି ଏବଂ ଭୁଲ ଗଣନା ସତ୍ତ୍ୱେ ତାହା ଏପରି କେତେକ ବିଷୟ ଧାରଣ କରେ ଯାହାର କି ଏକ ସର୍ତ୍ତଶୂନ୍ୟ ଚୂଡ଼ାନ୍ତ ଅର୍ଥ ରହିଛି । ଲେନିନ୍ ଦର୍ଶାଇଥିଲେ ଯେ, "ବସ୍ତୁଗତ ସତ୍ୟକୁ ସ୍ୱୀକାର କରିବା, ଅର୍ଥାତ୍ ମନୁଷ୍ୟ ଓ ମନୁଷ୍ୟ ସମାଜ ଉପରେ ନିର୍ଭରଶୀଳ ନଥିବା ସତ୍ୟକୁ ସ୍ୱୀକାର କରିବା ଅର୍ଥ ପରମ ସତ୍ୟକୁ ସ୍ୱୀକାର କରିବା ।"

ପ୍ରାଚୀନ ଗ୍ରୀସର ବସ୍ତୁବାଦୀ ଦାର୍ଶନିକମାନେହିଁ ପ୍ରଥମେ କହିଥିଲେ ଯେ ପ୍ରାଣହୀନ ଜଡ଼ ପଦାର୍ଥରୁ ଜୀବନର ଉତ୍ପତ୍ତି, ପଶୁରୁ ମନୁଷ୍ୟର ଉତ୍ପତ୍ତି । ତେଣୁ ଆନା-କ୍ସିମାଣ୍ଡରଙ୍କ (ଖ୍ରୀଷ୍ଟପୂର୍ବ ୬ଷ୍ଠ ଶତାବ୍ଦୀ) ମତ ଅନୁସାରେ ସମୁଦ୍ରର କର୍ଦ୍ଦମ ପ୍ରଥମ ଜୀବନ୍ତ ପଦାର୍ଥର ରୂପ ଗ୍ରହଣ କଲା ଏବଂ ମନୁଷ୍ୟ ମାଛରୁ ଜାତ ହେଲା । ବିଜ୍ଞାନର ଅଗ୍ରଗତିରୁ ଜଣାଯାଏ ଯେ ଜୀବନ ଓ ମଣିଷର ଉତ୍ପତ୍ତି ସମ୍ପର୍କରେ ପ୍ରାଚୀନ ଗ୍ରୀକ୍ ଦାର୍ଶନିକମାନଙ୍କ ଧାରଣା ଅତି ସରଳ ଏବଂ ଭ୍ରାନ୍ତ । ତଥାପି ଏହା ସତ୍ତ୍ୱେ ସେମାନଙ୍କ

ପ୍ରକଳ୍ପ ବା କଳ୍ପନା ମଧ୍ୟରେ ପରମ ସତ୍ୟର ଏକ ଉପାଦାନ ରହିଥିଲା । ତାହା ହେଲା, ଜୀବନ ଓ ମନୁଷ୍ୟର ପ୍ରାକୃତିକ ଉତ୍ପତ୍ତିର ଏପରି ଭାବନା, ଯାହା ବିଜ୍ଞାନ ଦ୍ୱାରା ସୁରକ୍ଷିତ ଏବଂ ଅନୁମୋଦିତ ହୁଏ ।

ଦ୍ୱନ୍ଦ୍ୱମୂଳକ ବସ୍ତୁବାଦ ପରମ ସତ୍ୟକୁ ସ୍ୱୀକାର କରିବା ଦ୍ୱାରା ଅଜ୍ଞେୟବାଦୀ ଏବଂ ଆପେକ୍ଷିକତାବାଦୀମାନଙ୍କ ଦୃଷ୍ଟିକୋଣଠାରୁ ନିଜକୁ ପୃଥକ କରେ । ଶେଷୋକ୍ତ ମତବାଦୀଙ୍କ ଦୃଷ୍ଟିକୋଣ ମନୁଷ୍ୟ ଜ୍ଞାନର ଶକ୍ତି, ତା'ର ସର୍ବଜୟୀ ଶକ୍ତିକୁ ଅସ୍ୱୀକାର କରେ, ଯା'ର ମୁକାବିଲା କରିବା ପ୍ରକୃତିର ଯେକୌଣସି ନିଗୂଢ଼ ରହସ୍ୟ ପକ୍ଷେ ବି ସମ୍ଭବ ନୁହେଁ ।

ଅନେକ ସମୟରେ କୁହାଯାଏ ଯେ ମନୁଷ୍ୟର ଜ୍ଞାନ ଅତି ସମାନ୍ୟ କେତେକ ପରମ ସତ୍ୟର ଅଧିକାରୀ ଏବଂ ଯାହା କିଛି ଜଣା ତାହା ଅତି ନଗଣ୍ୟ—ଅର୍ଥାତ୍ ଯାହା ସମସ୍ତେ ଜାଣନ୍ତି ସେଇସବୁ ସିଦ୍ଧାନ୍ତମାନଙ୍କ ଭିତରେ ଉକ୍ତ ଜ୍ଞାନ ସୀମାବଦ୍ଧ । ଦୃଷ୍ଟାନ୍ତସ୍ୱରୂପ, "ଦୁଇରେ ଦୁଇ ମିଶାଇଲେ ଚାରି" ଏବଂ "ଭଲ୍‌ଗା ନଦୀ କାସ୍‌ପିଆନ ସମୁଦ୍ରକୁ ପ୍ରବାହିତ ହେଉଛି", ଏସବୁ ପରମ, ଅନ୍ତିମ ସତ୍ୟ ; କିନ୍ତୁ କେହି କେହି କହି-ପାରନ୍ତି ଯେ ଏ ସତ୍ୟର କୌଣସି ବିଶେଷ ମୂଲ୍ୟ ନାହିଁ ।

ଯୁକ୍ତି କରାଯାଇପାରେ ଯେ ପ୍ରକୃତ ପକ୍ଷେ ମନୁଷ୍ୟର ଜ୍ଞାନ ଅତ୍ୟନ୍ତ ଗୁରୁତ୍ୱ-ପୂର୍ଣ୍ଣ, ଚୂଡ଼ାନ୍ତ ଭାବେ ସତ୍ୟ ବହୁ ସିଦ୍ଧାନ୍ତର ଅଧିକାରୀ, ଯାହାକୁ ବିଜ୍ଞାନର ଅଗ୍ରଗତି ବଦଳେଇ ଦେଇପାରିବ ନାହିଁ । ଏହାର ଦୃଷ୍ଟାନ୍ତ ହେଲା, ଦାର୍ଶନିକ ବସ୍ତୁବାଦର ସିଦ୍ଧାନ୍ତ, ଯିଏ କହେ ଯେ ବସ୍ତୁ ହେଉଛି ମୁଖ୍ୟ, ଚେତନା ହେଉଛି ଗୌଣ । ଭୌତିକ ସମ୍ପଦ ଉତ୍ପାଦନ ନ କଲେ ସମାଜର ଅସ୍ତିତ୍ୱ କି ଅଭିବୃଦ୍ଧି ସମ୍ଭବ ନୁହେଁ, ଏହା ଏକ ପରମ ସତ୍ୟ ସିଦ୍ଧାନ୍ତ । ଜୈବିକ ପ୍ରଜାତିର ବିବର୍ତ୍ତନ ଏବଂ ପଶୁରୁ ମନୁଷ୍ୟର ଉତ୍ପତ୍ତି ସମ୍ପର୍କରେ ଡାରଉଇନଙ୍କ ମତ ଏକ ପରମ ସତ୍ୟ ।

ବିଜ୍ଞାନର ନିୟମ ଓ ତତ୍ତ୍ୱମାନଙ୍କରେ ଏଇପରି ପରମ ସତ୍ୟସବୁ ରହିଛି । ମନୁଷ୍ୟ ତା'ର ବ୍ୟାବହାରିକ ଓ ତାତ୍ତ୍ୱିକ କର୍ମରେ ଏହା ଦ୍ୱାରା ପରିଚାଳିତ ହୁଏ ।

ତେବେ ଦ୍ୱନ୍ଦ୍ୱମୂଳକ ବସ୍ତୁବାଦ, ଯାହା ଅବଧାରଣକୁ ଏକ ପ୍ରକ୍ରିୟାଭାବେ ଦେଖେ, ପରମ ସତ୍ୟ ପ୍ରତି ସେଇପରି ଦୃଷ୍ଟିକୋଣ ତା'ର ରହିଛି । ପରମ ସତ୍ୟ ବୋଲିଲେ ମାର୍କ୍‌ସବାଦୀ ଦର୍ଶନରେ କେବଳ ନିର୍ଦ୍ଦିଷ୍ଟ ଅନ୍ତିମ ସତ୍ୟକୁ ବୁଝାଏ ନାହିଁ, ଯଥା—"୧୮୨୧ ମଇ ୫ ତାରିଖରେ ନେପୋଲିୟନଙ୍କ ମୃତ୍ୟୁ ଘଟିଲା ।" ପରମ ସତ୍ୟର ଧାରଣାକୁ ଏହା ଏକ ବ୍ୟାପକ ଅର୍ଥ ପ୍ରଦାନ କରେ । ପରମ ସତ୍ୟ ହେଉଛି ଆପେକ୍ଷିକ-ଭାବେ ବିଶୁଦ୍ଧ ଜ୍ଞାନର ଚିରପ୍ରସାରୀମାନ ଚୂଡ଼ାନ୍ତ ବିଶୁଦ୍ଧ ବିଷୟବସ୍ତୁ । ବସ୍ତୁଗତ ବିଶ୍ୱର ଏହା ଏକ ପୂର୍ଣ୍ଣତର, ଗଭୀରତର ଏବଂ ଅଧିକ ସୁନିର୍ଦ୍ଦିଷ୍ଟ ପ୍ରତିଫଳନର ପ୍ରକ୍ରିୟା ।

## ପରମ ଓ ଆପେକ୍ଷିକ ସତ୍ୟର ଦ୍ୱନ୍ଦ୍ୱମୂଳକ ଏକତ୍ୱ

ବିଜ୍ଞାନର ଇତିହାସରେ ସବୁବେଳେ ଆମେ ଦେଖିବାକୁ ପାଉଁ ଯେ ପ୍ରଥମ ଅବସ୍ଥାରେ ଯାହା ଆପେକ୍ଷିକ ସତ୍ୟ ବୋଲି ନିର୍ଦ୍ଧାରଣ କରାଯାଉଥିଲା ତାହା ମଧ୍ୟରେ ପରମ ସତ୍ୟର ମର୍ମ ଅନ୍ତର୍ନିହିତ ରହିଛି । କିନ୍ତୁ ପରେ ଯାହାକୁ ଭ୍ରମାତ୍ମକ ବୋଲି ପରିହାର କରାଯାଇଛି ସେମାନଙ୍କର ସେପରି ମର୍ମ ମଧ୍ୟ ଅନ୍ତର୍ନିହିତ ରହିଛି । ଆମେ ଦେଖୁଁ ଯେ ସତ୍ୟର ବୃଦ୍ଧି ସହିତ ପରମ ଭାବେ ସତ୍ୟର ମର୍ମ ପ୍ରସାରିତ ହୁଏ, ବୃଦ୍ଧିପ୍ରାପ୍ତ ହୁଏ, ଯେତେବେଳେ କି ଭ୍ରମର ଉପାଦାନ କ୍ରମାଗତଭାବେ ହ୍ରାସ ଲଭୁଥାଏ । ଆମେ ଦେଖୁଁ ଆପେକ୍ଷିକ ସତ୍ୟ କିପରି ଅବିଶ୍ରାନ୍ତଭାବେ ପରମ ସତ୍ୟର ସମୀପବର୍ତ୍ତୀ ହେଉଛି । ଆମେ ଦେଖୁଁ କିପରି ଆପେକ୍ଷିକ ସତ୍ୟର ସମଷ୍ଟି ମଧ୍ୟରୁ ପରମ ମାନବ ଜ୍ଞାନର ବିକାଶ ଘଟେ ।

ଲେନିନ୍ କହନ୍ତି, "ମାନବର ଜ୍ଞାନ, ତା'ର ପ୍ରକୃତି ଅନୁଯାୟୀ ପରମ ସତ୍ୟ ପ୍ରଦାନ କରିବାକୁ ସକ୍ଷମ ଏବଂ ପ୍ରଦାନ କରିଥାଏ, ଯାହାକି ଆପେକ୍ଷିକ ସତ୍ୟମାନଙ୍କର ସମଷ୍ଟିର ସମ୍ମିଶ୍ରଣ । ବିଜ୍ଞାନର ବିକାଶରେ ପ୍ରତ୍ୟେକ ପଦକ୍ଷେପ ଆପେକ୍ଷିକ ସତ୍ୟ ସମଷ୍ଟିରେ ନୂତନ କଣା ସଂଯୋଗ କରେ । କିନ୍ତୁ ପ୍ରତ୍ୟେକଟି ବୈଜ୍ଞାନିକ ସିଦ୍ଧାନ୍ତର ସତ୍ୟତାର ସୀମା ଆପେକ୍ଷିକ ; ଜ୍ଞାନର ବୃଦ୍ଧି ସଙ୍ଗେ ସଙ୍ଗେ କେତେବେଳେ ତାହା ପ୍ରସାରିତ ହୁଏ, କେତେବେଳେ ସଙ୍କୁଚିତ ହୁଏ ।

ବିଜ୍ଞାନରେ ଅଧିବିଦ୍ୟା ଓ ଗୋଷ୍ଠିବାଦିତାକୁ ଭାଙ୍ଗିବା ଦିଗରେ ପରମ ସତ୍ୟର ଦ୍ୱନ୍ଦ୍ୱମୂଳକ ଧାରଣା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ଅନେକ ଦାର୍ଶନିକ ଓ ବୈଜ୍ଞାନିକ ଘୋଷଣା କରିବାକୁ ଚାହାନ୍ତି ଯେ ସେମାନେ ଯେଉଁ ଜ୍ଞାନ ଆହରଣ କରିଛନ୍ତି ତାହା ଚିରନ୍ତନ, ଚୂଡ଼ାନ୍ତ, ପରମ ସତ୍ୟ ; ତାହା ଆଉ ଅଧିକ ବିକାଶ କି ଅଧିକ ପରୀକ୍ଷା ଦରକାର କରେ ନାହିଁ । ଦୃଷ୍ଟାନ୍ତସ୍ୱରୂପ, ହେଗେଲ୍ ଘୋଷଣା କରିଥିଲେ ଯେ ତାଙ୍କର ଭାବବାଦୀ ଦାର୍ଶନିକ ପଦ୍ଧତିର ସକଳ ମର୍ମ ହେଉଛି ପରମ ଚିରନ୍ତନ ସତ୍ୟ । ଏହାଦ୍ୱାରା ସେ ତାଙ୍କ ନିଜର ଦ୍ୱନ୍ଦ୍ୱମୂଳକ ପଦ୍ଧତିର ବିରୋଧ କଲେ । ପରମ ସତ୍ୟ ମଧ୍ୟ ବିକାଶ ଲଭେ ଏବଂ ତାହା ଏକ ପ୍ରକ୍ରିୟା, ଜ୍ଞାନ ସମ୍ପର୍କରେ ଏକଥା ଉପଲବ୍ଧି କରିବାର ବିଫଳତା ଅଧିବିଦ୍ୟାର ଲକ୍ଷଣ ।

ମାର୍କ୍ସ ଓ ଏଙ୍ଗେଲ୍ସ ଦ୍ୱନ୍ଦ୍ୱମୂଳକ ବସ୍ତୁବାଦର ବିକାଶ ସାଧନ କଲେ । ଏହା ବସ୍ତୁବାଦର ଏକ ନୂତନ ରୂପ, ଯାହା ପୂର୍ବର ଅଧିବିଦ୍ୟାବାଦୀ ବସ୍ତୁବାଦର ଦୋଷ-ତ୍ରୁଟିଠାରୁ ମୁକ୍ତ ପାଇଛି । କିନ୍ତୁ ଏହାର ଅର୍ଥ ନୁହେ ଯେ ମାର୍କ୍ସ ଓ ଏଙ୍ଗେଲ୍ସ ଦର୍ଶନର ବିକାଶକୁ ଶେଷ ଚୂଡ଼ାନ୍ତ ସ୍ତରରେ ପହଞ୍ଚାଇଦେଲେ ଏବଂ ସମସ୍ତ ଦାର୍ଶନିକ ସତ୍ୟକୁ ନିଃଶେଷ କରିଦେଲେ । ଲେନିନ୍ କହିଥିଲେ, "ଆମେ ମାର୍କ୍ସବାଦୀ ତତ୍ତ୍ୱକୁ ପରିପୂର୍ଣ୍ଣ ଏବଂ ଅଲଙ୍ଘନୀୟ ବୋଲି ବିଚାର କରୁ ନା ; ବରଂ ତାହା ଯେ ବିଜ୍ଞାନର

କେବଳ ଭିତ୍ତିପ୍ରସ୍ତର ସ୍ଥାପନ କରିଛୁ, ସେ ବିଷୟରେ ଆମେମାନେ ଦୃଢ଼ବିଶ୍ୱାସୀ । ଯଦି ସମାଜବାଦୀମାନେ ଜୀବନ ସହିତ ସମତାଳରେ ଗତି କରିବାକୁ ଚାହାନ୍ତି ତେବେ ସେମାନେ ସକଳ ଦିଗରେ ଏହାର ଅଭିବୃଦ୍ଧି ନିଶ୍ଚିତ୍ କରିବା ଉଚିତ ।

ଏହା କଣ ମାର୍କ୍ସବାଦର ଦ୍ୱନ୍ଦ୍ୱମୂଳକ ନୀତି ଓ ନିୟମ ପ୍ରତି ପ୍ରଯୋଜ୍ୟ ? ହଁ, ଅବଶ୍ୟ । ଦ୍ୱନ୍ଦ୍ୱବାଦ ଏକ ବିଜ୍ଞାନ ; ସେଥିପାଇଁ ଏହାର ବିକାଶ ଅବଶ୍ୟମ୍ଭାବୀ । ଅନ୍ୟାନ୍ୟ ବିଜ୍ଞାନର ନିୟମ ଭଳି ବିଜ୍ଞାନର ବିକାଶ ଏବଂ ତା'ର ବ୍ୟାବହାରିକ ବିସ୍ତାର ଇତିହାସ ପରିବର୍ତ୍ତନ ସହିତ ଦ୍ୱନ୍ଦ୍ୱବାଦର ସାଧାରଣ ନିୟମର ଉପଲବ୍ଧି ସୁଗଭୀର ହେବାକୁ ବାଧ୍ୟ । ନୂତନ ଅଭିଜ୍ଞତା, ନୂତନ ଜ୍ଞାନ ଦ୍ୱାରା ତାହା ସମୃଦ୍ଧ ହେବାକୁ ବାଧ୍ୟ । ବିଭିନ୍ନ ଐତିହାସିକ ଅବସ୍ଥାରେ ଦ୍ୱନ୍ଦ୍ୱବାଦର ସାଧାରଣ ନିୟମ ବିଭିନ୍ନଭାବେ କାର୍ଯ୍ୟ କରିଥାଏ । ଏହି କାରଣରୁ ସେହିସବୁ ନୂତନ ଅବସ୍ଥାର ଅନୁସନ୍ଧାନ ଦ୍ୱାରା ଦ୍ୱନ୍ଦ୍ୱବାଦ ସମ୍ପର୍କୀୟ ନିୟମର ଜ୍ଞାନ ସମୃଦ୍ଧ ହୁଏ ।

ତଥାପି, ଏକ ବିଜ୍ଞାନ ହିସାବରେ ଦ୍ୱନ୍ଦ୍ୱର ବିକାଶ, ମାନବଚିନ୍ତାର ସୁଦୀର୍ଘ ଓ କଠୋର ଦୁଃସାଧ୍ୟ ଇତିହାସର କାଳ ଦେଇ ବିକାଶ ଲଭିଥିବା ମୌଳିକ ସିଦ୍ଧାନ୍ତ-ମାନଙ୍କୁ ରଦ୍ ବା ରହିତ କରିଦିଏ ନାହିଁ ।

## ସତ୍ୟ ହେଉଛି ମୂର୍ତ୍ତ

ମାନବର ଅବଧାରଣ ଦ୍ୱାରା ଆହୃତ ସବୁ ସତ୍ୟକୁ ବିମୂର୍ତ୍ତ ଭାବେ, ଅଥବା ଜୀବନଠାରୁ ବିଚ୍ଛିନ୍ନ ଭାବେ ଦେଖିବା ଉଚିତ ନୁହେ । ତାକୁ କିନ୍ତୁ ନିର୍ଦ୍ଦିଷ୍ଟ ଅବସ୍ଥାମାନଙ୍କ ସହିତ ସେମାନଙ୍କର ସମ୍ବନ୍ଧ ଭିତରେ ଦେଖିବାକୁ ପଡ଼ିବ । ତାହା ହେଉଛି ବସ୍ତୁବାଦୀ ଦ୍ୱନ୍ଦ୍ୱର ଏକ ଅତି ଗୁରୁତ୍ୱପୂର୍ଣ୍ଣ ଅନୁସିଦ୍ଧାନ୍ତ, ଅର୍ଥାତ୍ ବିମୂର୍ତ୍ତ ସତ୍ୟ ବୋଲି କିଛି ନାହିଁ । ସତ୍ୟ ହେଉଛି ମୂର୍ତ୍ତ ।

ଆମେ ସ୍କୁଲରେ ଇଉକ୍ଲିଡ୍ଙ୍କ ଯେଉଁ ଜ୍ୟାମିତି ପଢ଼ୁ, ତାହା କ'ଣ ସତ୍ୟ ? ତାହା ନିଃସନ୍ଦେହ ଭାବରେ ସତ୍ୟ । କିନ୍ତୁ ସାଧାରଣତଃ ଯେଉଁ ଆୟତନ ସମ୍ବନ୍ଧରେ ବିଚାର କରୁ, ସେଇଥିପାଇଁ କେବଳ ତାହା ସତ । କିନ୍ତୁ ଅତି କ୍ଷୁଦ୍ରତମ ସୃଷ୍ଟି ତଥା ଆନ୍ତଃ-ଗ୍ରହ୍ପଥ ବିସ୍ତାର, ଉଭୟ କ୍ଷେତ୍ର ସମ୍ପର୍କରେ ତାହା ଯଥେଷ୍ଟ ନୁହେ ; ସେଠାରେ ଅଣ-ଇଉକ୍ଲିଡ୍ ଜ୍ୟାମିତି, ଯେପରିକି ଲୋବାଚେଭସ୍କି ଜ୍ୟାମିତି ପ୍ରୟୋଗ କରିବାକୁ ପଡ଼ିବ ।

ବୁର୍ଜୁଆ ଗଣତନ୍ତ୍ର କଥା କହିଲାବେଳେ ଲେନିନ୍ ଉଲ୍ଲେଖ କରିଥିଲେ, ସାମନ୍ତବାଦୀ ବ୍ୟବସ୍ଥା ସହିତ ତୁଳନାରେ ତାହା ଏକ ବିରାଟ ଅଗ୍ରଗତି । ପୁଞ୍ଜିବାଦୀ ବ୍ୟବସ୍ଥା ଭିତରେ ଏକ ଗଣତାନ୍ତ୍ରିକ ପ୍ରଜାତନ୍ତ୍ର ଏବଂ ସାବାଳକ ଭୋଟ ଅଧିକାର

ସର୍ବହରା ଶ୍ରେଣୀକୁ ଅର୍ଥନୈତିକ ଓ ରାଜନୈତିକ ସଂଗଠନ ଗଢ଼ିବାର ସୁବିଧା ସୁଯୋଗ ଦେଇଥିଲା, ଯାହା ସାହାଯ୍ୟରେ ସେ ମୁକ୍ତିବାଦ ବିରୁଦ୍ଧରେ ସୁଶୃଙ୍ଖଳ ସଂଗ୍ରାମ ଚଳାଇଲା । "କ୍ରୀତଦାସଙ୍କ କଥା ଛାଡ଼, ଭୂ-ଦାସଙ୍କ ମଧ୍ୟରେ ସୁଦ୍ଧା ଏହାର ଅନୁରୂପ କୌଣସି ପ୍ରକାର ସୁବିଧା ସୁଯୋଗ ନ ଥିଲା ।"

ସେଥି ସଙ୍ଗେ ସଙ୍ଗେ ଜନସାଧାରଣଙ୍କ ସୃଜନଶୀଳ ବୈପ୍ଳବିକ ଉଦ୍ୟମ ଭିତରୁ ଯେଉଁ ଗଣତନ୍ତ୍ରର ଉଦ୍‌ଭବ, ବହୁସଂଖ୍ୟକ ସାଧାରଣ ଲୋକଙ୍କର ଯେଉଁ ଗଣତନ୍ତ୍ର ସେହି ସୋଭିଏଟ୍ ଗଣତନ୍ତ୍ର ସହିତ ବୁର୍ଜୁଆ ଗଣତନ୍ତ୍ରର ତୁଳନା କରି ଲେନିନ୍ ବୁର୍ଜୁଆ ଗଣତନ୍ତ୍ରର ସୀମାବଦ୍ଧତା ଏବଂ ସଙ୍କୀର୍ଣ୍ଣତାକୁ ପଦାରେ ପକାଇ ଦେଇଥିଲେ ।

ଘଟଣାବଳୀକୁ ବିଚାର କଲାବେଳେ, ସାଧାରଣ ସୂତ୍ର ଓ ପୂର୍ବର ପରିକଳ୍ପିତ ଯୋଜନାର ଶିକାର ହେବା ବିରୁଦ୍ଧରେ, ସତ୍ୟର ମୂର୍ତ୍ତି ପ୍ରକୃତିର ଦ୍ୱନ୍ଦ୍ୱମୂଳକ ବସ୍ତୁବାଦର ଅନ୍ୟତମ ( ଥିସିସ୍ ) ଆମମାନଙ୍କୁ ସାବଧାନ କରାଇଦିଏ । ଦ୍ୱନ୍ଦ୍ୱବାଦ ଆମକୁ ଶିକ୍ଷା ଦିଏ ଯେ ଘଟଣାବଳୀକୁ ନିରୀକ୍ଷଣ ଓ ଗ୍ରାହ୍ୟ କର, ପ୍ରପଞ୍ଚମାନଙ୍କର ପୁଙ୍ଖାନୁପୁଙ୍ଖ ସମ୍ବନ୍ଧକୁ ବିଚାର କର, ପରିବର୍ତ୍ତିତ ଅବସ୍ଥାକୁ ବିଶ୍ଳେଷଣ କର ଏବଂ ସେମାନଙ୍କ ପ୍ରତି ଖାପଖୁଆଇବା ଭଳି ତୁମର କାର୍ଯ୍ୟର ଧାରା ସ୍ଥିର କର । ଦ୍ୱନ୍ଦ୍ୱବାଦ କାମନା କରେ ଯେ ନିର୍ଦ୍ଦିଷ୍ଟ ଅବସ୍ଥା ଅନୁଯାୟୀ ସାଧାରଣ ନୀତି ଓ ନିୟମମାନ ପ୍ରୟୋଗ ହେବା ଉଚିତ । ଏହି ଦୃଷ୍ଟିକୋଣ ହିଁ ବ୍ୟାବହାରିକ କର୍ମର ପ୍ରୟୋଜନୀୟତା ପ୍ରତି ଅନୁକୂଳ ଅଟେ ।

## ବିଜ୍ଞାନ ଓ ବ୍ୟାବହାରିକ କର୍ମ ନିମନ୍ତେ ସତ୍ୟର ମାର୍କ୍‌ସ୍‌ବାଦୀ ତତ୍ତ୍ୱର ଗୁରୁତ୍ୱ

ପରମ ଓ ଆପେକ୍ଷିକ ସତ୍ୟ ଏବଂ ସତ୍ୟର ମୂର୍ତ୍ତି ପ୍ରକୃତି ସମ୍ପର୍କରେ ବସ୍ତୁବାଦୀ ଦ୍ୱନ୍ଦ୍ୱବାଦର ଶିକ୍ଷା ବିଜ୍ଞାନ ଓ ବ୍ୟାବହାରିକ କର୍ମ ଲାଗି ଅଶେଷ ଗୁରୁତ୍ୱପୂର୍ଣ୍ଣ । ଲେନିନ୍ ଊନବିଂଶ ଶତାବ୍ଦୀର ଶେଷ ଭାଗ ଏବଂ ବିଂଶ ଶତାବ୍ଦୀର ପ୍ରାରମ୍ଭରେ ପଦାର୍ଥବିଜ୍ଞାନର ବିକାଶକୁ ବିଶ୍ଳେଷଣ କରିବାକୁ ଯାଇଁ ଦର୍ଶାଇଛନ୍ତି ଯେ ସେ ଯୁଗରେ ବହୁ ବୈଜ୍ଞାନିକ ଯେଉଁସବୁ ଭାବବାଦୀ ଭୁଲ୍‌ତ୍ରୁଟି କରିଛନ୍ତି ତାହା ସେମାନଙ୍କର ଅବଧାରଣ ପ୍ରକ୍ରିୟାରେ ଦ୍ୱନ୍ଦ୍ୱବାଦର ଅଜ୍ଞତା ଯୋଗୁଁ ଘଟିଛି । ଅଧିବିଦ୍ୟା ଧାରାରେ ଯିଏ ଚିନ୍ତା କରନ୍ତି ସେ ଧରିନିଅନ୍ତି ଯେ ସତ୍ୟ ହେଉଛି ପରମ କିମ୍ବା ପୂରାପୂରି ଅପ୍ରତିଦ୍ୱନ୍ଦ୍ୱୀ । ବହୁକାଳ ଧରି ବୈଜ୍ଞାନିକମାନେ ଭାବୁଥିଲେ ଯେ ଶାସ୍ତ୍ରୀୟ ପଦାର୍ଥବିଦ୍ୟାର ତତ୍ତ୍ୱସବୁ ପରମ ସତ୍ୟ । କିନ୍ତୁ ଯେତେବେଳେ ନୂତନ ଆବିଷ୍କାରମାନ ପୁରାତନ ବୈଜ୍ଞାନିକ ଧାରଣାକୁ ଓଲଟ-ପାଲଟ କରିଦେଲା ଏବଂ ପୂର୍ବର ତତ୍ତ୍ୱମାନଙ୍କର ଦାରିଦ୍ର୍ୟକୁ ପ୍ରକଟିତ କଲା,

ସେତେବେଳେ କେତେକ ବୈଜ୍ଞାନିକ ସେମାନଙ୍କର ବୁଦ୍ଧିବୃତ୍ତି ହରାଇ ବସିଲେ । ସେମାନଙ୍କୁ ବୋଧହେଲା ଯେ ପରମ ବା ବସ୍ତୁଗତ ସତ୍ୟ ବୋଲି ଆଦୌ କିଛି ନାହିଁ ; ଆମର ସମସ୍ତ ଜ୍ଞାନ ହେଉଛି କେବଳ ଆପେକ୍ଷିକ, ସର୍ତ୍ତଯୁକ୍ତ, ଆତ୍ମଗତ । ଏହି ଆପେକ୍ଷିକ ଦୃଷ୍ଟିକୋଣ ସେମାନଙ୍କୁ ଭାବବାଦୀ ଦର୍ଶନର ଶିକାର କଲା ।

ଦ୍ୱନ୍ଦ୍ୱବାଦର ଜ୍ଞାନ ବୈଜ୍ଞାନିକମାନଙ୍କୁ କେବଳ ଭାବବାଦୀ ଭୁଲ୍ ତ୍ରୁଟିଠାରୁ ଦୂରରେ ରହିବାଲାଗି ସକ୍ଷମ କରେ ନାହିଁ, ବିଜ୍ଞାନ ସମ୍ମୁଖରେ ଥିବା ବାଧା ପ୍ରତି-ବନ୍ଧମାନଙ୍କୁ ଅତିକ୍ରମ କରିବାରେ ମଧ୍ୟ ସେମାନଙ୍କୁ ସମର୍ଥ କରେ ।

ପରମ ଓ ଆପେକ୍ଷିକ ତତ୍ତ୍ୱର ଦ୍ୱନ୍ଦ୍ୱମୂଳକ ଧାରଣା, ବିଜ୍ଞାନରେ, ଅବଧାରଣ ପ୍ରକ୍ରିୟା ଭିତରେ ଘଟୁଥିବା ଭୁଲ ତ୍ରୁଟି ପ୍ରତି ଯଥାର୍ଥ ଗତି ଦର୍ଶାଇଥାଏ । ପୂର୍ବରୁ ତିଆରି କଳ୍ପିତ ଭଳି ସତ୍ୟ ଜନ୍ମଲାଭ କରେ ନାହିଁ । ଅବଧାରଣ ଏକ କଠୋର ଜଟିଳ ପ୍ରକ୍ରିୟା ; ଭୁଲ, ଭ୍ରାନ୍ତ ଧାରଣା ଏବଂ ଏକତରଫା ତତ୍ତ୍ୱ ଓ ଦୃଷ୍ଟିକୋଣ ଲାଗି ଏଥିରେ ଅବକାଶ ରହିଥାଏ । କିନ୍ତୁ ବିଜ୍ଞାନ ଫଳରେ ଅଗ୍ରଗତି କରୁଥିବା ଭାବ, ଧୀରେ ଧୀରେ ସମାଲୋଚନାର ଚୁଲିମା ଦ୍ୱାରା ପରିଷ୍କୃତ ହୋଇ ବ୍ୟାବହାରିକ କର୍ମର ଅଗ୍ନିକୁଣ୍ଡରେ ତାପସହ ହେବାଦ୍ୱାରା ସେମାନଙ୍କ ମଧ୍ୟରେ ଥିବା ସମସ୍ତ ମିଥ୍ୟା ଓ କୃତ୍ରିମ ଉପାଦାନ ଦୂରୀଭୂତ ହୁଏ କିମ୍ବା ଦଗ୍ଧ ହୋଇଯାଏ, ଯାହା ଫଳରେ କି ବସ୍ତୁଗତ-ଭାବେ ସତ୍ୟ ପରମ ଆଧେୟ ଅବଶେଷ ରହେ ଏବଂ ବିଜ୍ଞାନ କ୍ଷେତ୍ରରେ ତାହା ଏକ ସ୍ଥାୟୀ ସଂପଦରେ ପରିଣତ ହୁଏ ।

ଜଣେ ଏକବାଟେକେ ଚୂଡ଼ାନ୍ତଭାବେ ଅଭ୍ରାନ୍ତ, ଏ କଥା କେହି ଦାବୀ କରି ନ ପାରେ । କିନ୍ତୁ ମନୁଷ୍ୟର ଅବଧାରଣ କ୍ରିୟା ମଧ୍ୟରେ ଭ୍ରାନ୍ତି ଅନିବାର୍ଯ୍ୟ, ଏହାର ଅର୍ଥ ଆଦୌ ନୁହେଁ ଯେ, ପ୍ରତ୍ୟେକ ବ୍ୟକ୍ତିବିଶେଷ ବୈଜ୍ଞାନିକ ପ୍ରତ୍ୟେକଟି ନିର୍ଦ୍ଦିଷ୍ଟ ଅବଧାରଣ କର୍ମରେ ଅପରିହାର୍ଯ୍ୟ ଭାବେ ଭୁଲ କରିବେ । ଜଣେ ବୈଜ୍ଞାନିକ ଗବେଷଣା କଲାବେଳେ ଭୁଲ ନ କରିବା ଲାଗି ଯଥାସମ୍ଭବ ଚେଷ୍ଟା କରିବ । ଭୁଲକୁ ପରିହାର କରିବାର ଏକମାତ୍ର ମାର୍ଗ ହେଲା, ବୈଜ୍ଞାନିକ ଗବେଷଣାରେ ଦ୍ୱନ୍ଦ୍ୱମୂଳକ ପଦ୍ଧତିକୁ ଆସ୍ତୃତ କରିବା, ବ୍ୟାବହାରିକ କର୍ମ ସହିତ ଘନିଷ୍ଠ ଯୋଗାଯୋଗ ରକ୍ଷା କରିବା, ପାଖରେ ଥିବା ସମସ୍ତ ପଦାର୍ଥକୁ ସବୁଦିଗରୁ ବିଶଦଭାବେ ଅଧ୍ୟୟନ କରିବା ଏବଂ ସମସ୍ୟାଗୁଡ଼ିକ ତଥା ତା'ର ପ୍ରସ୍ତାବିତ ସମାଧାନଗୁଡ଼ିକୁ ମିଳିତଭାବେ ଆଲୋଚନା କରିବା ଇତ୍ୟାଦି ।

ଭୁଲ୍ ନ କରିବ ବୋଲି କେହି ଗ୍ୟାରେଣ୍ଟି ଦେଇପାରିବ ନାହିଁ । ତାତ୍ପର୍ଯ୍ୟ-ପୂର୍ଣ୍ଣ କଥା ହେଉଛି, ପ୍ରଥମେ କୌଣସି ଏକ ବିରାଟ ଭୁଲ ନ କରିବା, ଦ୍ୱିତୀୟରେ ଯାହା ଭୁଲ ବୋଲି ପ୍ରମାଣିତ ହୋଇଗଲା, ପରେ ସେଥିରେ ଆଉ ଅଗ୍ରସର ନ ହେବା ।

ସମାଲୋଚନା ଓ ଆତ୍ମସମାଲୋଚନା ହେଉଛି ସେଇ ଶକ୍ତି, ଯାହାକି ବ୍ୟାବହାରିକ କର୍ମ ଏବଂ ଅବଧାରଣ, ଏ ଉଭୟ କ୍ଷେତ୍ରରେ ଭ୍ରମର ସମ୍ଭାବନାକୁ ହ୍ରାସ କରେ ; ଏବଂ ତାହା ଘଟିଲେ ତାକୁ ପ୍ରକଟିତ କରିଦିଏ । ବିଜ୍ଞାନରେ ମତର ସଂଘର୍ଷ, ଜଣକର ନିଜର ବୈଜ୍ଞାନିକ ଉଦ୍ୟମ ପ୍ରତି ଏକ ସମାଲୋଚନାମୂଳକ ଦୃଷ୍ଟିକୋଣ, ଅନ୍ୟମାନଙ୍କର ସମାଲୋଚନା ପ୍ରତି ମନୋଯୋଗୀ ହେବା ଦୃଷ୍ଟି—ଏଇ ସର୍ତ୍ତଗୁଡ଼ିକ ପ୍ରତ୍ୟେକ ବୈଜ୍ଞାନିକର ଦୈନନ୍ଦିନ କାର୍ଯ୍ୟ ଲାଗି ଆବଶ୍ୟକ । ସମାଲୋଚନାକୁ କୌଣସି ପ୍ରକାରେ ଏଡ଼ିଦେବା କିମ୍ବା ଦମନ କରିବା ବୈଜ୍ଞାନିକଙ୍କର ନିଜ ପକ୍ଷରେ ତଥା ବିଜ୍ଞାନ ପକ୍ଷରେ ଅତ୍ୟନ୍ତ କ୍ଷତିକାରକ ।

ଗୋଷ୍ଠୀବାଦ ଏବଂ ଶୋଧନବାଦ, ମାର୍କ୍ସବାଦ ପ୍ରତି ଅନୁରକ୍ତି ଜ୍ଞାପନ କଲେ ମଧ୍ୟ, ମାର୍କ୍ସବାଦର ପରିପନ୍ଥୀ । ଏମାନେ ଆପେକ୍ଷିକ ଆଉ ମୂର୍ତ୍ତ ସତ୍ୟ ସମ୍ପର୍କରେ ଦ୍ୱନ୍ଦ୍ୱମୂଳକ ବସ୍ତୁବାଦର ଶିକ୍ଷାକୁ ଉପେକ୍ଷା କରନ୍ତି । ସତ୍ୟର ଦ୍ୱନ୍ଦ୍ୱମୂଳକ ଧାରଣା ଏଇ ଗୋଷ୍ଠୀବାଦ ଓ ସଂସ୍କାରବାଦକୁ ଭାଙ୍ଗିବାରେ ମଧ୍ୟ ସାହାଯ୍ୟ କରେ । ଗୋଷ୍ଠୀବାଦୀମାନେ ବିଚାରନ୍ତି ଯେ ତାତ୍ତ୍ୱିକ ସିଦ୍ଧାନ୍ତମାନ ପରମ ବିଶ୍ୱଜନୀନ ସତ୍ୟ —ଆଉ, ତାହାକୁ ନୂତନ ପ୍ରପଞ୍ଚର ଆବିର୍ଭାବ ଏବଂ ନିର୍ଦ୍ଦିଷ୍ଟ ଅବସ୍ଥାକୁ ବିଚାର ନ କରି ସମାନଭାବେ ସବୁ କ୍ଷେତ୍ରରେ ପ୍ରୟୋଗ କରାଯାଇପାରେ । ଅନ୍ୟ ଦିଗରେ ସଂସ୍କାରବାଦ ଆପଣାର ବୈଜ୍ଞାନିକ ପଦ୍ଧତି କ୍ଷେତ୍ରରେ ଅତିରିକ୍ତ ଆପେକ୍ଷିକବାଦ ଗ୍ରହଣ କରିଥାଏ ; ମାର୍କ୍ସବାଦର ମୌଳିକ ନୀତି ଯାହାକି ତା'ର ବୈପ୍ଳବିକ ସାରମର୍ମ, ତାକୁ ପରିତ୍ୟାଗ କରି, ପ୍ରତ୍ୟେକ ସତ୍ୟ ପ୍ରତି ଆପେକ୍ଷିକ ପ୍ରକୃତି ଛଡ଼ା ଅନ୍ୟ କିଛି ଆରୋପ କରେ ନାହିଁ ।

ଗୋଷ୍ଠୀବାଦ ଏବଂ ସଂସ୍କାରବାଦ ଉଭୟଙ୍କର ଅଧିବିଦ୍ୟାବାଦୀ ଦୋଷକୁ ମାର୍କ୍ସବାଦୀ ଦ୍ୱନ୍ଦ୍ୱବାଦ ପଦାରେ ପକାଇଦିଏ । ଆମ ଜ୍ଞାନର ଆପେକ୍ଷିକ ପ୍ରକୃତିକୁ ସ୍ୱୀକାର କରିବା ଦ୍ୱାରା, ତାହା ଦ୍ୱନ୍ଦ୍ୱବାଦର ତାତ୍ତ୍ୱିକ ସୂତ୍ରକୁ ପଥରଖଣ୍ଡ ଭଳି ଅଚଳ ପାଲଟିବାରେ ତଥା ଏକ ଗୋଷ୍ଠୀବାଦୀ ମନ୍ତ୍ରରେ ପରିଣତ ହେବାରେ ବାଧା ଦିଏ । ତାହା ସମସ୍ତ ସାଧାରଣ ସତ୍ୟ ଲାଗି ଏକ ନିର୍ଦ୍ଦିଷ୍ଟ ମୂର୍ତ୍ତ ପ୍ରୟୋଗ ଆବଶ୍ୟକ କରେ । ସେଥି ସଙ୍ଗେ ସଙ୍ଗେ, ଅବଧାରଣ ପ୍ରକ୍ରିୟା ମଧ୍ୟରେ ପରମ ସତ୍ୟର କଣା ଯେ ଗଠିତ ଏବଂ ସଞ୍ଚିତ ହୁଏ, ଏଇ ତଥ୍ୟରୁ ଦ୍ୱନ୍ଦ୍ୱବାଦ ଅଗ୍ରସର ହୋଇଥାଏ । ମାର୍କ୍ସବାଦୀ-ଲେନିନ୍‌ବାଦୀ ତତ୍ତ୍ୱର ମୂଳ ନୀତିମାନଙ୍କ ପ୍ରତି ଅନ୍ୟ କେତେକ ପଦାର୍ଥ ଭଳି ଏହା ମଧ୍ୟ ପ୍ରଯୋଜ୍ୟ । ବିଜ୍ଞାନ ଏବଂ ସାମାଜିକ ବ୍ୟାବହାରିକ କର୍ମରୁ ମିଳୁଥିବା ତଥ୍ୟାବଳୀ ଅନୁଯାୟୀ ସେମାନଙ୍କୁ ବିକାଶ କରାଯାଇପାରେ, ସମୃଦ୍ଧ କରାଯାଇପାରେ ଓ କରିବା ଉଚିତ, ପୁଣି ନିର୍ଦ୍ଦିଷ୍ଟ ରୂପ ଦିଆଯାଇପାରେ ଏବଂ ଦେବା ଉଚିତ । କିନ୍ତୁ

ସେମାନଙ୍କୁ ପରିହାର କରିବାକୁ ହେବ ନାହିଁ, କାରଣ ତାହା ହେବ ସତ୍ୟ ପ୍ରତି ବିଶ୍ୱାସଘାତକତା ।

## (୪) ବ୍ୟାବହାରିକ କର୍ମ ସତ୍ୟର ନିର୍ଣ୍ଣାୟକ

ସମାଜସେବାର ଯୋଗ୍ୟ ହେବା ନିମନ୍ତେ କୌଣସି ଭାବ ବା ବୈଜ୍ଞାନିକ ତତ୍ତ୍ୱ ପକ୍ଷରେ ସତ୍ୟ ହେବା ଉଚିତ । କୌଣସି ଏକ ଭାବ ସତ୍ୟ କି ମିଥ୍ୟା ତାହା ପ୍ରତିପାଦିତ କରିବାକୁ ହେଲେ ବାସ୍ତବତା ସହିତ ତାହାର ତୁଳନା କରିବାକୁ ହେବ ।

କିନ୍ତୁ ଏହା ହେବ କିପରି ? ଏ ସମସ୍ୟାଟି ଏକ ଅତି କଠିନ ବ୍ୟାପାର ବୋଲି ଠିକ୍ ବିଚାର କରାଯାଉଥିଲା । ବହୁବିଧ ଧର୍ମ ଦାର୍ଶନିକମାନେ ଏଥିପ୍ରତି ନିର୍ଭୁଲ୍ ମାର୍ଗ ଦେଖି ପାରି ନ ଥିଲେ । ମାର୍କ୍ସ ହିଁ ଏହା ସମାଧାନ କରିବାରେ ସମର୍ଥ ହେଲେ । ସେ ବୁଝିଥିଲେ ଯେ କେବଳ ଚେତନା ରାଜ୍ୟରେ ସତ୍ୟର ଏକ ମାନଦଣ୍ଡ ପାଇବାକୁ ଚେଷ୍ଟା କରିବା ଏକ ଛଳନା, ପ୍ରତାରଣା ମାତ୍ର । ସେ ପ୍ରତିପାଦିତ କରିଦେଲେ ଯେ ମନୁଷ୍ୟ କେବଳ ତା'ର ବ୍ୟାବହାରିକ କର୍ମ ମାଧ୍ୟମରେ ସତ୍ୟକୁ, ତା'ର ଚିନ୍ତାର ଶକ୍ତିକୁ ପ୍ରମାଣ କରିଦେଇପାରେ ।

ବାସ୍ତବିକ, ବ୍ୟାବହାରିକ କର୍ମ ଛଡ଼ା ଅନ୍ୟ କୌଣସି ଉପାୟରେ ମନୁଷ୍ୟ ନିଜ ଜ୍ଞାନର ସତ୍ୟତାକୁ ପ୍ରମାଣ କରିବାର ପନ୍ଥା ନାହିଁ । ମନୁଷ୍ୟର ନିଜର ବ୍ୟାବହାରିକ କ୍ରିୟାମାନ—ଅବଧାରଣର ଭିତ୍ତି ଏବଂ ଅନ୍ତିମ ଲକ୍ଷ୍ୟ—ହେଉଛି, ତା'ର ଅର୍ଜିତ ଜ୍ଞାନ ସତ୍ୟ କି ମିଥ୍ୟା ତାହାକୁ ନିର୍ଦ୍ଧାରଣ କରିବାର ସର୍ବଶ୍ରେଷ୍ଠ ନିର୍ଣ୍ଣାୟକ । ବ୍ୟାବହାରିକ କର୍ମ ହେଉଛି ସତ୍ୟର ନିର୍ଣ୍ଣାୟକ ।

ଦ୍ୱନ୍ଦ୍ୱମୂଳକ ବସ୍ତୁବାଦ ବ୍ୟାବହାରିକ କର୍ମକୁ ଏକ ପ୍ରକ୍ରିୟାଭାବେ ବ୍ୟାଖ୍ୟା କରେ ; ସେହି ପ୍ରକ୍ରିୟା ମଧ୍ୟରେ ମନୁଷ୍ୟ ଏକ ଭୌତିକ ସତ୍ତା, ତା'ର ଭୌତିକ ପରିବେଶ ଉପରେ କାର୍ଯ୍ୟ କରିଥାଏ । ଜଗତକୁ ପରିବର୍ତ୍ତନ କରିବାରେ ମନୁଷ୍ୟର ସମଗ୍ର କ୍ରିୟାକୁ ଏବଂ ମୁଖ୍ୟଭାବେ, ତା'ର ଉତ୍ପାଦନଶୀଳ, ସାମାଜିକ ଓ ବୈପ୍ଳବିକ କ୍ରିୟାକୁ ବ୍ୟାବହାରିକ କର୍ମ କୁହାଯାଇଥାଏ ।

ଶିଳ୍ପ ଉତ୍ପାଦନରେ, ବୈଜ୍ଞାନିକ ଏବଂ ପ୍ରାୟୋଗିକ ଭାବକୁ କାର୍ଯ୍ୟତଃ ପରୀକ୍ଷା କରିବାର ଅତି ବ୍ୟାପକ ପନ୍ଥା ହେଲ, ଫ୍ୟାକ୍ଟ୍ରି ଭିତରେ ପରୀକ୍ଷା, ଆଉ ମେସିନ୍, ଯନ୍ତ୍ରପାତି ଏବଂ ପ୍ରାୟୋଗିକ ପ୍ରକ୍ରିୟାମାନଙ୍କର ଅତି ବ୍ୟାପକ ବ୍ୟବହାର ।

ବୈଜ୍ଞାନିକ ଗବେଷଣାରେ, ଅନେକ ସମୟରେ ବ୍ୟାବହାରିକ କର୍ମ ପରୀକ୍ଷାର ରୂପ ଗ୍ରହଣ କରିଥାଏ ; ଅର୍ଥାତ୍ ପ୍ରାକୃତିକ ପ୍ରପଞ୍ଚ ଉପରେ ମନୁଷ୍ୟର ସକ୍ରିୟ ହସ୍ତକ୍ଷେପ

ସ୍ଥଳେ, ଏକ ନିର୍ଦ୍ଦିଷ୍ଟ ତାତ୍ତ୍ୱିକ ଅନୁମାନ ବଳରେ ପ୍ରସ୍ତାବିତ ପ୍ରପଞ୍ଚକୁ ପୁନର୍ବାର ନିର୍ମାଣ କରିବା କିମ୍ବା ବିପରୀତ ଦିଗରେ ତାକୁ ସମାପ୍ତ କରିବା ଲାଗି କୃତ୍ରିମ ଭାବରେ ଅବସ୍ଥା ସୃଷ୍ଟି କରାଯାଇଥାଏ ।

ନକ୍ଷତ୍ରମାନଙ୍କ ଭଳି ଯେଉଁ କ୍ଷେତ୍ରରେ, ଗବେଷଣା କରାଯାଉଥିବା ପଦାର୍ଥ-ମାନଙ୍କ ଉପରେ କୌଣସି ପ୍ରକାର ଆଶୁ ପ୍ରଭାବ ପଡ଼ିବା ସମ୍ଭବପର ହୁଏ ନାହିଁ, ସେ ସବୁ କ୍ଷେତ୍ରରେ, ସେମାନଙ୍କ ସମ୍ପର୍କରେ ଆମର ଧାରଣାକୁ, ତା' ସହିତ ସମ୍ପୃକ୍ତ ଅନ୍ୟାନ୍ୟ ବୈଜ୍ଞାନିକ (ପଦାର୍ଥ ବିଜ୍ଞାନ) ତଥ୍ୟ ସହିତ ଏବଂ ଗଣିତ ଜ୍ୟୋତିଷର ଗଣନା ଫଳାଫଳ ସହିତ ତୁଳନା କରି ଆମେ ପରୀକ୍ଷା କରିଥାଉଁ ।

କେତେକ ସମୟରେ ନୂତନ ଭାବକୁ ପରୋକ୍ଷଭାବେ ପରୀକ୍ଷା କରାଯାଇପାରେ, ଅର୍ଥାତ୍ ଯେଉଁସବୁ ବୈଜ୍ଞାନିକ ତତ୍ତ୍ୱ ଓ ନିୟମମାନ ବସ୍ତୁଗତ ସତ୍ୟର ପ୍ରକୃତ ଗ୍ରହଣ କରିସାରିଲାଣି ସେମାନଙ୍କ ସହିତ ତୁଳନା କରି ତାହା ପରୀକ୍ଷା କରାଯାଏ । ବହୁ କ୍ଷେତ୍ରରେ ମନୁଷ୍ୟସମାଜର ହସ୍ତଗତ ହୋଇସାରିଥିବା ସୁସିଦ୍ଧ ଓ ସୁସଙ୍ଗତ ଜ୍ଞାନ ଯୋଗୁଁ, ଆଉ ନୂତନ ପରୀକ୍ଷା ବିନା କେତେକ ଭାବର ମୂଲ୍ୟ ନିର୍ଦ୍ଧାରଣ କରାଯାଇଥାଏ । ଦୃଷ୍ଟାନ୍ତସ୍ୱରୂପ, ଯଦି ଜଣେ ଆବିଷ୍କାରକ ଏକ ନୂତନ "ଚିରସ୍ଥାୟୀ ଗତି"ଯୁକ୍ତ ମେସିନ୍‌ର ନକ୍‌ସା ତିଆରି କରେ ତେବେ ପୃଥିବୀର କୌଣସି ବିଜ୍ଞାନସଂସ୍ଥା ତାହାର ବ୍ୟାବହାରିକ ପରୀକ୍ଷା ଲାଗି ମଡେଲ ବା ଯନ୍ତ୍ର ନିର୍ମାଣ କରିବାକୁ ଆଗଭର ହେବ ନାହିଁ କି ସେ ଦିଗରେ ମୁଣ୍ଡ ଖେଳାଇବ ନାହିଁ । କାରଣ ଏକ "ଚିରସ୍ଥାୟୀ ଗତି" ଯୁକ୍ତ ମେସିନ୍‌ର ଭାବ ପ୍ରାକୃତିକ ନିୟମର ବିରୋଧୀ, ତା'ର ଅସତ୍ୟତା ଅତି ସ୍ପଷ୍ଟ ଓ ଏହା କୌଣସି ପରୀକ୍ଷା ଦରକାର କରେ ନାହିଁ । ଏହାର ଅର୍ଥ ନୁହେ ଯେ ଏ କ୍ଷେତ୍ରରେ ବ୍ୟାବହାରିକ କର୍ମର ନିର୍ଣ୍ଣାୟକ ଅଭାବ ରହୁଛି । ନା, ସେ ନିର୍ଣ୍ଣାୟକ ଅଛି । ପ୍ରତ୍ୟକ୍ଷ ପରିବର୍ତ୍ତେ ପରୋକ୍ଷଭାବେ ତା'ର ପ୍ରୟୋଗ ହେଉଛି । ବୈଜ୍ଞାନିକମାନଙ୍କର ପୂର୍ବ-ପୁରୁଷମାନଙ୍କ ଅଭିଜ୍ଞତା ଜରିଆରେ ପରୀକ୍ଷିତ ଓ ଅନୁମୋଦିତ ହୋଇସାରିଥିବା ସତ୍ୟ ଦ୍ୱାରା ତା'ର ପରୋକ୍ଷ ପ୍ରୟୋଗ ଘଟୁଛି ।

ସାମାଜିକ ବିଜ୍ଞାନରେ ମଧ୍ୟ ବ୍ୟାବହାରିକ କର୍ମ ସତ୍ୟର ନିର୍ଣ୍ଣାୟକ । ଏଠାରେ ବ୍ୟାବହାରିକ କର୍ମ ବୋଇଲେ ବ୍ୟକ୍ତିବିଶେଷଙ୍କ କାର୍ଯ୍ୟ ନୁହେ, ସବୁ ବଡ ବଡ଼ ସାମାଜିକ ଗୋଷ୍ଠୀ, ଶ୍ରେଣୀ ଏବଂ ଦଳମାନଙ୍କର କାର୍ଯ୍ୟ । ବ୍ୟକ୍ତିଗତ ବ୍ୟାବହାରିକ ଅଭିଜ୍ଞତା, ଯାହାକି ଅତି ସୀମାବଦ୍ଧ ଓ ସଙ୍କୀର୍ଣ୍ଣ ହେବା ଅନିବାର୍ଯ୍ୟ, ତାକୁ ଏକ ଶ୍ରେଣୀ ବା ଦଳର ମିଳିତ ଅଭିଜ୍ଞତାର ବିପରୀତଭାବେ ଉପସ୍ଥାପିତ କରିବା ଉଚିତ ନୁହେ । ଜନସାଧାରଣଙ୍କର ଉତ୍ପାଦନକାରୀ ଏବଂ ବ୍ୟାବହାରିକ ବୈପ୍ଳବିକ କ୍ରିୟା ହିଁ କେବଳ ସାମାଜିକ ତତ୍ତ୍ୱମାନଙ୍କ ସତ୍ୟର ନିର୍ଣ୍ଣାୟକ ହୋଇପାରେ ।

ପୁଞ୍ଜିବାଦୀ ଉତ୍ପାଦନ ପ୍ରଣାଳୀ ସମ୍ପର୍କରେ ମାର୍କ୍ସଙ୍କ ବିଶ୍ଳେଷଣ ଏବଂ ତାହା ଯେ ଅନିବାର୍ଯ୍ୟଭାବେ ଲୋପ ପାଇବ, ସାମାଜିକବାଦୀ ଉତ୍ପାଦନ ପ୍ରଣାଳୀ ଦ୍ୱାରା ପ୍ରତିଷ୍ଠାପିତ ହେବ, ମାର୍କ୍ସଙ୍କ ଏଇ ସିଦ୍ଧାନ୍ତ, ମହାନ୍ ଅକ୍ଟୋବର ବିପ୍ଳବ ଦ୍ୱାରା ଅତି ଚମତ୍କାର-ଭାବେ ସାବ୍ୟସ୍ତ ହୋଇଛି ।

ଦ୍ୱନ୍ଦ୍ୱମୂଳକ ବସ୍ତୁବାଦ ବ୍ୟାବହାରିକ କର୍ମକୁ ସତ୍ୟର ନିର୍ଣ୍ଣାୟକ କଲାବେଳେ ଚିନ୍ତାର ତାତ୍ପର୍ଯ୍ୟକୁ ଆଦୌ ଉପେକ୍ଷା କରେ ନାହିଁ । ମାର୍କ୍ସ ଲେଖିଥିଲେ, ତତ୍ତ୍ୱର ସମସ୍ତ ଗୂଢ଼ ରହସ୍ୟ "ମାନବର ବ୍ୟାବହାରିକ କ୍ରିୟା ମଧ୍ୟରେ ଏବଂ ସେହି ବ୍ୟାବହାରିକ କର୍ମର ଉପଲବ୍ଧିରେ ସେମାନଙ୍କର ଯୁକ୍ତିସଙ୍ଗତ ସମାଧାନ ପାଇଥାନ୍ତି ।" ଭାବ ଏବଂ ତତ୍ତ୍ୱର ସତ୍ୟତା ପ୍ରତିପାଦିତ କରିବାରେ ଚିନ୍ତା ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥାଏ । ବ୍ୟାବହାରିକ କର୍ମ ସତ୍ୟର ନିର୍ଣ୍ଣାୟକରୂପେ ଏପରି ଏକ ମେସିନ୍ ନୁହେ ଯାହାର ସୂଚକ କଣ୍ଟା ଆପଣା ଛାଏଁ "ସତ୍ୟ" ବା "ମିଥ୍ୟାକୁ" ଦର୍ଶାଇଦେବ । ମନୁଷ୍ୟ ନିଜର ବ୍ୟାବହାରିକ କର୍ମ ମଧ୍ୟରେ ଏକ ନିର୍ଦ୍ଦିଷ୍ଟ ଫଳ ହାସଲ କରେ ଯାହାର ତାତ୍ପର୍ଯ୍ୟକୁ ତଥାପି ମଧ୍ୟ ଉପଲବ୍ଧି କରିବାକୁ ପଡ଼ିବ, ସ୍ପଷ୍ଟଭାବେ ବ୍ୟାଖ୍ୟା କରିବାକୁ ହେବ ।

ଦୃଷ୍ଟାନ୍ତସ୍ୱରୂପ କୌଣସି ଗୋଟାଏ ନୂଆ ମଡେଲ ଗ୍ରନ୍ଥ ବା ଆବିଷ୍କାରର ନକ୍ସା ପ୍ରଥମ ପରୀକ୍ଷାରେ ବିଫଳ ହୋଇଗଲା ବୋଲି ସେ ମଡେଲ ବା ଆବିଷ୍କାର ବେକାର ଗଲା, ସବୁବେଳେ ଏପରି ଏକ ଉପସଂହାର ସମ୍ଭବ ନୁହେ । ସେଇ ଆବିଷ୍କାର ପଛରେ ରହିଥିବା ଭାବ ଏବଂ ତାକୁ କାର୍ଯ୍ୟରେ ପରିଣତ କରିବାର ସମସ୍ତ ଅବସ୍ଥାକୁ ଯତ୍ନର ସହିତ ବିଶ୍ଳେଷଣ କରିବା ଦ୍ୱାରାହିଁ କେବଳ ପରୀକ୍ଷଲବ୍ଧ ଫଳର ନିର୍ଭୁଲ ମୂଲ୍ୟ ନିର୍ଦ୍ଧାରଣ କରାଯାଇପାରେ ।

ବ୍ୟାବହାରିକ କର୍ମ ନିଶ୍ଚଳ ହୋଇ ରହେ ନାହିଁ ; ତାହା କ୍ରମାଗତ ପରିବର୍ଦ୍ଧିତ ହୁଏ, ବିକାଶ ଲଭେ ଏବଂ ଅଗ୍ରଗତି କରେ । ମନୁଷ୍ୟର କ୍ରିୟାର ପରିସର ଏବଂ ତାହାକୁ ପରିବେଷ୍ଟନ କରିଥିବା ବିଶ୍ୱଜଗତକୁ ଭେଦ କରିବାର ସମ୍ଭାବନା ଅନବରତ ଅଧିକ ବୃଦ୍ଧି ପାଇବାରେ ଲାଗିଛି । ଏକ ଭାବକୁ ଦୃଢ଼ଭାବେ ପ୍ରତିପନ୍ନ କରିବା ଦିଗରେ ବ୍ୟାବହାରିକ କର୍ମ ସମର୍ଥ ହେବାକୁ ବହୁ ସମୟ ଲାଗିପାରେ । କିନ୍ତୁ ପ୍ରକୃତ ସତ୍ ଭାବ, ନିକଟରେ ହେଉ ବା ଭବିଷ୍ୟତରେ ହେଉ, ପ୍ରତିପାଦିତ ହେବା ସୁନିଶ୍ଚିତ । ଦୃଷ୍ଟାନ୍ତସ୍ୱରୂପ, ୧୫୧୯-୨୨ରେ ମାଗେଲନ୍ ପୃଥିବୀ ଘୂରିପଟେ ଜାହାଜରେ ବୁଲି ନ ଆସିଲା ଯାଏ ପୃଥିବୀ ଯେ ଗୋଲ ଏ ଭାବକୁ ଅସତ୍ୟ ଏବଂ ପ୍ରଚଳିତ ଧର୍ମମତର ବିରୋଧୀ ବୋଲି ବିଗ୍ଭର କରାଯାଉଥିଲା ; ତା'ପରେ ଚିରଦିନ ଲାଗି ସେ ସନ୍ଦେହ ଦୂର ହେଲା ।

ବ୍ୟାବହାରିକ କର୍ମ ବୃଦ୍ଧିପାଏ ଓ ବିକାଶ ଲଭେ ; ତେଣୁ ତାହା ପୁରାତନ ଓ ନୂତନ ଉଭୟ ଉପାଦାନକୁ ଧାରଣ କରେ । ସେଥିଯୋଗୁଁ ସମସ୍ତ ବ୍ୟାବହାରିକ କର୍ମ ସତ୍ୟର ଏକ ବିଶ୍ୱାସଯୋଗ୍ୟ ନିର୍ଣ୍ଣାୟକ ନୁହେଁ । ଅନେକ ସମୟରେ ରକ୍ଷଣଶୀଳ ମନୋଭାବାପନ୍ନ ଲୋକମାନେ ମଧ୍ୟ ନୂତନ ଭାବକୁ ଭାଙ୍ଗିବା ଲାଗି ବ୍ୟାବହାରିକ କର୍ମ କଥା ଉଲ୍ଲେଖ କରିଥାନ୍ତି ; କିନ୍ତୁ ସେମାନେ ପୁରୁଣାକାଳିଆ ଅପ୍ରଚଳିତ ବ୍ୟାବହାରିକ କର୍ମ କଥା ଉଲ୍ଲେଖ କରନ୍ତି । ପ୍ରଗତିଶୀଳ ତତ୍ତ୍ୱ ପ୍ରଗତିଶୀଳ ବ୍ୟାବହାରିକ କର୍ମ ଉପରେ ନିର୍ଭର କରେ । ସେଇ କାରଣରୁ ଯୋଗୁଁ ତାହା ଏକ ତତ୍ତ୍ୱର ସତ୍ୟତା ଏବଂ ବିଜ୍ଞାନ ଲାଗି ନୂତନ ବିଷୟବସ୍ତୁର ମୂଲ୍ୟ ନିର୍ଦ୍ଧାରଣ ଦିଗରେ ତଥ୍ୟାବଳୀ ଯୋଗାଇଥାଏ, ଚିନ୍ତାକୁ ଜାଗ୍ରତ କରେ ଏବଂ ତାକୁ ଅଗ୍ରସର କରାଏ ।

ଆପେକ୍ଷିକ ସତ୍ୟର ଯେପରି ଏକ ନିର୍ଦ୍ଦିଷ୍ଟ ପରମ ଆଧେୟ ରହିଛି ଠିକ ସେଇପରି ବ୍ୟାବହାରିକ କର୍ମ ବସ୍ତୁଗତ ଜଗତ ସହିତ ମନୁଷ୍ୟର ସମ୍ବନ୍ଧର ଏକ ଅବିଶ୍ରାନ୍ତ ଓ ଅପରିହାର୍ଯ୍ୟ ରୂପ ହୋଇଥିବାରୁ ଏବଂ କୌଣସି ଏକ ମୁହୂର୍ତ୍ତରେ ଐତିହାସିକଭାବେ ସୀମାବଦ୍ଧ ହେଲେ ମଧ୍ୟ ତା'ର ବି ଏକ ସ୍ଥାୟୀ ତାତ୍ପର୍ଯ୍ୟ ରହିଛି ।

## ପ୍ରୟୋଗବାଦ : ବୃହତ ବ୍ୟବସାୟୀଙ୍କ ଦର୍ଶନ

"ପ୍ରୟୋଗବାଦ" ବା ପ୍ରାଗ୍‌ମାଟିଜିମ୍ (ଗ୍ରୀକ୍ ଶବ୍ଦ ପ୍ରାଗ୍‌ମା—ବ୍ୟବସାୟ, ହୋଇଥିବା କର୍ମ) ନାମରେ କଥିତ ଏକ ଦାର୍ଶନିକ ଧାରା ପୁଞ୍ଜିବାଦୀ ଦେଶମାନଙ୍କରେ, ବିଶେଷତଃ ଯୁକ୍ତରାଷ୍ଟ୍ର ଆମେରିକାରେ ବ୍ୟାପିଛି । କେତେକ ବୁର୍ଜୁଆ ଦାର୍ଶନିକ ତାହାକୁ ମାର୍କ୍ସ-ବାଦ ସହିତ ସମାନ ଭଳି ଦେଖାଇବାକୁ ଚାହାନ୍ତି । ଏହାର କାରଣ, ପ୍ରୟୋଗବାଦ ଅନବରତ କାର୍ଯ୍ୟ ଉପରେ ଜୋର ଦେଇଥାଏ ଏବଂ ତତ୍ତ୍ୱ ଆଉ ଭାବମାନଙ୍କର ବ୍ୟାବହାରିକ ପରୀକ୍ଷା ଉପରେ ନିର୍ଭର କରେ । ସଂଶୋଧନବାଦୀମାନେ ମଧ୍ୟ ବୁର୍ଜୁଆ ପ୍ରଚାରକଙ୍କ ସହିତ ମିଶି ମାର୍କ୍ସବାଦର ଦୁର୍ନାମ ରଟାନ୍ତି ଓ ମାର୍କ୍ସବାଦକୁ ମଧ୍ୟ ପ୍ରୟୋଗବାଦୀ ବୋଲି ଦୋଷ ଦେଇଥାନ୍ତି ।

କିନ୍ତୁ ବାସ୍ତବରେ ମାର୍କ୍ସବାଦ ଆପୋଷହୀନଭାବେ ପ୍ରୟୋଗବାଦର ଶତ୍ରୁ । ପ୍ରୟୋଗବାଦ ଏକ ମିଥ୍ୟା ଭାବବାଦୀ ଦର୍ଶନ ; ସାମ୍ରାଜ୍ୟବାଦୀ ବୁର୍ଜୁଆଙ୍କର ମତବାଦକୁ ଏହା ପ୍ରକାଶ କରିଥାଏ । ପ୍ରୟୋଗବାଦ ବ୍ୟାବହାରିକ କର୍ମ କଥା କହିବା ସମୟରେ ଏବଂ "କର୍ମର ଦର୍ଶନ" ବୋଲି ଛଳନା କଲାବେଳେ ବ୍ୟାବହାରିକ କର୍ମର ଏକ ବୁର୍ଜୁଆ ବ୍ୟକ୍ତିବାଦୀ ତତ୍ତ୍ୱ, ଆତ୍ମଗତ ଧାରଣା ଉପସ୍ଥାପିତ କରିଥାଏ, ଯାହା କି, ଜଗତ ଯୁକ୍ତିହୀନ ଏବଂ ଅଜ୍ଞେୟ, ଏଇ ଅବୈଜ୍ଞାନିକ ଧାରଣା ଉପରେ ପ୍ରତିଷ୍ଠିତ ।

ପ୍ରୟୋଗବାଦୀ ଦର୍ଶନର ମୁଖ୍ୟ ଭାବ ହେଲା ଯେ, ଏପରି ଜଗତରେ ମନୁଷ୍ୟକୁ କାର୍ଯ୍ୟ କରିବାକୁ ପଡ଼ୁଛି ଯାହା ସମ୍ବନ୍ଧରେ ତା'ର କୌଣସି ବିଶ୍ୱାସଯୋଗ୍ୟ ଜ୍ଞାନ ଥାଇ ନ ପାରେ । ପ୍ରୟୋଗବାଦୀ ଦୃଷ୍ଟିକୋଣରୁ ଏଇ ଅନୁଭବ୍ୟ ଜଗତ ଆନ୍ତଃ-ଏକତା ଶୂନ୍ୟ ଭାବ, ସ୍ୱାନୁଭୂତ ଓ ଆବେଗମାନଙ୍କର ଏକ ବିଶୃଙ୍ଖଳା ମାତ୍ର ଏବଂ ତାହା ନ୍ୟାୟସମ୍ମତ-ସଙ୍ଗତ ଅବଧାରଣର ବହିର୍ଭୂତ । ପ୍ରୟୋଗବାଦର ଜଣେ ପ୍ରତିଷ୍ଠାତା ଉଇଲିୟମ ଜେମ୍ସ ବ୍ୟାଖ୍ୟା କରି କହିଥିଲେ, "କୁକୁର ବିଲେଇ ଆମର ପାଠାଗାରରେ ରହିଲା ଭଳି—ଯେପରି ସେମାନେ ସବୁ କିଛି ଦେଖନ୍ତି, ସବୁ କଥାବାର୍ତ୍ତା ଶୁଣନ୍ତି, କିନ୍ତୁ ସେ ସବୁର କୌଣସି ଅର୍ଥ ବୁଝନ୍ତି ନାହିଁ, ସେଇପରି ଆମେ ଏ ବିଶ୍ୱବ୍ରହ୍ମାଣ୍ଡ ଭିତରେ ରହିଆଇପାରୁଁ ।"

କିନ୍ତୁ ମନୁଷ୍ୟ ଯଦି ଜ୍ଞାନରୁ ବଞ୍ଚିତ ହୁଏ ତେବେ ସେ ନିର୍ଦ୍ଦେଶ ନେବ କେଉଁଠୁ ? ଜେମସ୍ଙ୍କର ପ୍ରସ୍ତାବ ଓ ପରାମର୍ଶ ହେଲା - ସହଜାତ ପ୍ରବୃତ୍ତି, ଯୁକ୍ତିହୀନ ବିଶ୍ୱାସ,—ସର୍ବୋପରି ଆମର ଧର୍ମବିଶ୍ୱାସ, ଯାହା କି ଆମର ଯୁକ୍ତିଯୁକ୍ତ ଚିନ୍ତାକୁ ପ୍ରତ୍ୟାଖ୍ୟାନ କରେ, ତା'ଠାରୁ ନିର୍ଦ୍ଦେଶ ଗ୍ରହଣ କରାଯିବ ।

ଜନ୍ ଡିଉଏଙ୍କ ନେତୃତ୍ୱରେ ଅନ୍ୟାନ୍ୟ ପ୍ରୟୋଗବାଦୀମାନେ "ଯନ୍ତ୍ରଗତ" କିମ୍ବା "ପରୀକ୍ଷାମୂଳକ ତର୍କ" ଗ୍ରହଣଯୋଗ୍ୟ ବୋଲି ପରାମର୍ଶ ଦିଅନ୍ତି । ତା'ର ସାରମର୍ମ ହେଲା ଯେ ଏକ ନିର୍ଦ୍ଦିଷ୍ଟ ଅବସ୍ଥାରେ କେଉଁ ପ୍ରକାର ବ୍ୟବହାର ସବୁଠାରୁ ସୁବିଧା ବା ଲାଭଜନକ ତାହା ଭ୍ରମ ଓ ପରୀକ୍ଷାମୂଳକ ପଦ୍ଧତି ଦ୍ୱାରା ଖୋଜିବାକୁ ହେବ । ପ୍ରୟୋଗବାଦୀ ଦୃଷ୍ଟିକୋଣରୁ ଚିନ୍ତା ଜ୍ଞାନ ପ୍ରଦାନ କରେ ନାହିଁ ; ତାହା କେବଳ ମାତ୍ର କଠିନ ଅବସ୍ଥା ମଧ୍ୟରୁ ବାହାରିବାର ମାର୍ଗ ଦେଖାଏ ଏବଂ ସଫଳତା ହାସଲର ଦକ୍ଷତା ଯୋଗାଇଥାଏ ।

ତଦନୁଯାୟୀ ପ୍ରୟୋଗବାଦୀମାନେ ଦାବୀ କରନ୍ତି ଯେ ବୈଜ୍ଞାନିକ ରୂପ, ଧାରଣା, ନିୟମ ଏବଂ ତତ୍ତ୍ୱମାନ ଏଇ ବସ୍ତୁଗତ ବାସ୍ତବତାର ପ୍ରତିଫଳନ ବା ପ୍ରତିରୂପ ନୁହେ ; ତାହା କେବଳ ମାତ୍ର ଲକ୍ଷ୍ୟ ହାସଲ ସକାଶେ "କାର୍ଯ୍ୟର ନିର୍ଦ୍ଦେଶକ", "ହତିଆର" କିମ୍ବା "ଯନ୍ତ୍ରପାତି" । ଯଦି କୌଣସି ଭାବ ବା ତତ୍ତ୍ୱ "କାର୍ଯ୍ୟ କଲା" ଏବଂ ସଫଳତା ଆଣିଦେଲା, ତାହା ଭଲ ଅର୍ଥାତ୍ ସତ୍ୟ ; ଆଉ ଯଦି ତା ନ ହେଲା, ତେବେ ତାହା ଖରାପ, ଅର୍ଥାତ୍ ମିଥ୍ୟା । ସତ୍ୟ ଓ ମିଥ୍ୟା ଧାରଣାର ଆଉ ଅନ୍ୟ କୌଣସି ପ୍ରକାରର ତାତ୍ପର୍ଯ୍ୟକୁ ପ୍ରୟୋଗବାଦୀମାନେ ଗ୍ରହଣ କରନ୍ତି ନାହିଁ ।

ପ୍ରୟୋଗବାଦୀମାନେ ବିଚାରନ୍ତି ଯେ ଧର୍ମଗତ ମତାନ୍ଧତା ଅତ୍ୟନ୍ତ ପ୍ରୟୋଜନ, ତେଣୁ ସତ୍ୟ । ସେମାନେ କେବଳ ଜ୍ଞାନ ପ୍ରତି ଉପଯୋଗିତାବାଦ ନୀତି ପ୍ରୟୋଗ କରନ୍ତି ନାହିଁ, ସମସ୍ତ ପ୍ରକାର ବିଚାରବୁଦ୍ଧି ଓ ବ୍ୟାବହାରିକ କ୍ରିୟା ପ୍ରତି ତାହା ପ୍ରୟୋଗ

କରିଥାନ୍ତି । ପୁରୁଣା ଖ୍ରୀଷ୍ଟ ନୀତିବାକ୍ୟ "ଉଦ୍ଦେଶ୍ୟ ଉପାୟକୁ ନ୍ୟାୟସଙ୍ଗତ କରେ", ଏହା ବାସ୍ତବିକ, ଜୀବନ ପ୍ରତି ସେମାନଙ୍କ ଦୃଷ୍ଟିଭଙ୍ଗୀର ସାରମର୍ମକୁ ପ୍ରକାଶ କରିଥାଏ ।

ପ୍ରୟୋଗବାଦୀମାନେ ଚତୁର୍ଦ୍ଦିଗରେ ବ୍ୟାପ୍ତ ବିଶ୍ୱଜଗତର ବସ୍ତୁଗତ ବାସ୍ତବତାକୁ ଅସ୍ୱୀକାର କରନ୍ତି । ସେମାନେ ତାହାକୁ "ଅନୁଭୂତି"ର କଞ୍ଚା ଅନିର୍ଦ୍ଦିଷ୍ଟ ପଦାର୍ଥ ବୋଲି ବିଚାର କରନ୍ତି, ଯାହା କି ମନୁଷ୍ୟର ଉଦ୍ଦେଶ୍ୟପୂରଣ ଲାଗି ଯେକୌଣସି ରୂପ ଗ୍ରହଣ କରିପାରେ । ସେମାନେ କହନ୍ତି, ଜଗତ ହେଉଛି "ପ୍ଲାଷ୍ଟିକ୍", ଆମେ ସେଥିରେ ଯାହା କରିବା ତାହା ସବୁବେଳେ ସେଇଆ ହୋଇ ରହେ, ଆଉ ତାହା "ମନୁଷ୍ୟର ଶାସନ ପାଖରେ ସାଙ୍ଗେ ସାଙ୍ଗେ ମୁଣ୍ଡ ନୁଆଏଁ ।" ସେମାନେ କହନ୍ତି, କୌଣସି ବସ୍ତୁଗତ "ସୁଦୃଢ଼ ଘଟଣା" ନାହିଁ ; ଆମେ ସେମାନଙ୍କୁ ଦେଉଥିବା ବ୍ୟାଖ୍ୟାମାନ କେବଳ ରହିଛି । ଅତଏବ ସମସ୍ତ ବାସ୍ତବତାକୁ ବ୍ୟକ୍ତି ଏବଂ ତା'ର ଇଚ୍ଛା ଉପରେ ସମ୍ପୂର୍ଣ୍ଣଭାବେ ନିର୍ଭରଶୀଳ କରିଦିଆଯାଏ ।

ଫଳରେ ପ୍ରୟୋଗବାଦର ଦର୍ଶନ ବ୍ୟାବହାରିକ କର୍ମର ବିକୃତ ଧାରଣା ଉପରେ ପ୍ରତିଷ୍ଠିତ । ତାହା ମନୁଷ୍ୟର ସକ୍ରିୟ ଐଚ୍ଛିକ ପ୍ରକୃତିକୁ ଅତିଶୟ ଅତିରଞ୍ଜିତ କରେ ଏବଂ ତାହାକୁ ବାସ୍ତବତାର ଭିତ୍ତି କରେ । ଯାହା ହେଉ, ପ୍ରୟୋଗବାଦୀମାନଙ୍କର ଦାବୀ ସତ୍ତ୍ୱେ ମନୁଷ୍ୟର କ୍ରିୟା ବାହ୍ୟ ଜଗତକୁ ସୃଷ୍ଟି କରେ ନାହିଁ । ତାହା ମନୁଷ୍ୟଠାରୁ ସ୍ୱାଧୀନ ସ୍ୱତନ୍ତ୍ରଭାବେ ବିଦ୍ୟମାନ ଥିବା ବାସ୍ତବତାକୁ କେବଳ ଅଦଳବଦଳ ଓ ପରିବର୍ତ୍ତନ କରିଥାଏ । ସଫଳତା ହାସଲ କରିବାକୁ ହେଲେ, ସଚେତନ ମାନବିକ କ୍ରିୟାକୁ ପଦାର୍ଥମାନଙ୍କର ବସ୍ତୁଗତ ଜ୍ଞାନ ଏବଂ ସେମାନଙ୍କୁ ପରିଚାଳିତ କରୁଥିବା ନିୟମମାନଙ୍କ ଉପରେ ପ୍ରତିଷ୍ଠିତ କରିବାକୁ ହେବ । ପ୍ରୟୋଗବାଦୀମାନେ ଦାବୀ କଲାଭଳି କର୍ମ ଜ୍ଞାନକୁ ପରିହାର କରେ ନାହିଁ, ବରଂ କାର୍ଯ୍ୟ ପୂର୍ବରୁ ଜ୍ଞାନ ଦରକାର ହୁଏ । ମିଥ୍ୟାଭାବର ବଶବର୍ତ୍ତୀ ହୋଇ କାମ କରିବା ଦ୍ୱାରା କଦବା କେଉଁଠି ଆଂଶିକ ସାମୟିକ ସଫଳତା ହାସଲ ହୋଇପାରେ, ତାହା ଅତି ସ୍ୱାଭାବିକ । କିନ୍ତୁ ତାହା ସାଧାରଣତଃ କ୍ଷଣସ୍ଥାୟୀ ସଫଳତା—ଫାସିଷ୍ଟବାଦର ନକଲି ପୁରାଣଶାସ୍ତ୍ର ଉପରେ ପ୍ରତିଷ୍ଠିତ ହୋଇଥିବା ହିଟଲରବାଦର 'ସଫଳତା' ସଦୃଶ ତାହା କ୍ଷଣସ୍ଥାୟୀ ।

ଜଗତକୁ "ପ୍ଲାଷ୍ଟିକ" ଅର୍ଥାତ୍ ପରମ ନମନୀୟ ବାସ୍ତବତା ବୋଲି ବର୍ଣ୍ଣନା କରିବା ଦ୍ୱାରା ପ୍ରୟୋଗବାଦର ଦାର୍ଶନିକମାନେ ଏକ ମିଥ୍ୟାଭାବକୁ ପ୍ରୋତ୍ସାହିତ କରୁଛନ୍ତି । ଉକ୍ତ ଭାବ ହେଲା, ବସ୍ତୁଗତ ସବୁ ଅବସ୍ଥା ଏବଂ ନିୟମ ସତ୍ତ୍ୱେ, କାର୍ଯ୍ୟ କରିବାର ଇଚ୍ଛା, ଶକ୍ତି ଓ ଦୃଢ଼ତା ଯେକୌଣସି ନିର୍ଦ୍ଧାରିତ ଲକ୍ଷ୍ୟ ହାସଲ କରିବାରେ ସମର୍ଥ ।

"ବଳିଷ୍ଠ ଅର୍ଥଲୁଣ୍ଠନକାରୀ"—ଅର୍ଥର ବିଶାଳ ଅଧିପତି, ଏକଚାଟିଆ ପୁଞ୍ଜିପତି, ଯେଉଁମାନେ ଆପଣାକୁ ଜଗତର ସର୍ବଶକ୍ତିମାନ ପ୍ରଭୁ ବୋଲି ବିଚାରନ୍ତି, ପ୍ରୟୋଗବାଦ

ମୁଖ୍ୟଭାବରେ ସେଇମାନଙ୍କର ବିଶ୍ୱଦୃଷ୍ଟିଭଙ୍ଗୀ । ପ୍ରୟୋଗବାଦର ଭାବବାଦୀ ଦର୍ଶନ ବସ୍ତୁଗତ ଘଟଣାକୁ ଉପେକ୍ଷା କରିବା ଦ୍ୱାରା ରାଜନୈତିକ ଚିନ୍ତାଧାରାରେ ଦୁଃସାହସିକ, ଆକ୍ରମଣାତ୍ମକ ପ୍ରବୃତ୍ତିକୁ ପୋଷଣ କରେ ଏବଂ "ଶକ୍ତିର ଆହ୍ୱାନକୁ" କାମ କରିବାର ନୀତି ଲାଗି ତାତ୍ତ୍ୱିକ ଭିତ୍ତି ଯୋଗାଇଥାଏ । ସତ୍ୟ ଏବଂ ମିଥ୍ୟା ମଧ୍ୟରେ ବସ୍ତୁଗତ ପାର୍ଥକ୍ୟକୁ ସ୍ୱୀକାର ନ କରିବା ଦ୍ୱାରା ଏବଂ ସତ୍ୟ ଓ ପ୍ରୟୋଜନୀୟତାକୁ ସମାନ ଭାବେ ଦେଖିବା ଦ୍ୱାରା ପ୍ରୟୋଗବାଦ ନୀତିହୀନତାକୁ ଉତ୍ସାହିତ କରେ, ପୁଣି ସବୁ ଲାଭଜନକ ମିଥ୍ୟାକୁ ଏବଂ ପ୍ରତ୍ୟେକ ଅପରାଧମୂଳକ କର୍ମକୁ ଯଥାର୍ଥ ବୋଲି ପ୍ରଚାର କରିବାରେ ଶାସକଶ୍ରେଣୀକୁ ସାହାଯ୍ୟ କରେ । ହିଂସା, ପ୍ରତାରଣା ଏବଂ ଆକ୍ରମଣରେ ଯଥାର୍ଥତା, ଯାହାସବୁ ପ୍ରୟୋଗବାଦୀ ଦାର୍ଶନିକର ସେଇ ସାରମର୍ମରୁ ନିଃସୃତ ହୋଇଥାଏ, ତାହା ସବୁଠାରୁ ପ୍ରତିକ୍ରିୟାଶୀଳ ସାମ୍ରାଜ୍ୟବାଦୀ ଗୋଷ୍ଠୀଙ୍କର ସ୍ୱାର୍ଥ ସାଧନ କରେ । ଏଥିରେ ବିସ୍ମୟର କଥା କିଛି ନାହିଁ ଯେ ଜେମ୍ସଙ୍କଠାରୁ ସେ ବହୁତ କିଛି ଶିକ୍ଷା କରିଥିଲେ ବୋଲି ମୁସୋଲିନି ସ୍ୱୀକାର କରିଥିଲେ ଏବଂ ପ୍ରୟୋଗବାଦକୁ "ଫାସିଷ୍ଟବାଦର ଭିତ୍ତିପ୍ରସ୍ତର" ବୋଲି ବିଚାରୁଥିଲେ ।

ଏଥିସହିତ ସମସ୍ତ ପ୍ରକାର ତାତ୍ତ୍ୱିକ ଓ ବ୍ୟାବହାରିକ କ୍ରିୟାକର୍ମକୁ ନଗଦ ଲାଭ ସୁବିଧା ବିଚାରର ଅଧୀନସ୍ଥ କରିବା ଦ୍ୱାରା ଜୀବନ ପ୍ରତି ଏକ ଆତ୍ମଗତ, ସଂକୀର୍ଣ୍ଣ, ଉପଯୋଗିତାବାଦୀ ତଥା ସୁବିଧାବାଦୀ ଦୃଷ୍ଟିକୋଣର ବିକାଶକୁ ପ୍ରୟୋଗବାଦ ଆଗେଇ-ନିଏ । ଶ୍ରମିକଶ୍ରେଣୀର ଆନ୍ଦୋଳନ ପ୍ରତି ଏହାକୁ ପ୍ରୟୋଗ କଲେ ଟ୍ରେଡ଼ ୟୁନିୟନ୍ ଏବଂ "ଅଧିକ ପଇସା ଲାଗି ଲଢ଼େଇ" ଭିତରେ ଏହା ସୀମାବଦ୍ଧ ହୋଇଯାଏ । ଫଳରେ ଆପଣା ଆଭିମୁଖ୍ୟକୁ ଏହା ହରାଇ ବସେ ଓ ସର୍ବହରାର ଶ୍ରେଣୀସ୍ୱାର୍ଥ ପ୍ରତି ବିଶ୍ୱାସଘାତକତା କରେ ।

ପ୍ରୟୋଗବାଦ, ବୈଜ୍ଞାନିକ ପ୍ରଗତିଶୀଳ ବିଶ୍ୱଦୃଷ୍ଟିଭଙ୍ଗୀର ପରମ ଶତ୍ରୁ ।

## (୫) ଅପରିହାର୍ଯ୍ୟତା ଓ ମାନବିକ ସ୍ୱାଧୀନତା

ବସ୍ତୁଗତ ବିଶ୍ୱଜଗତର ବିକାଶ ଏବଂ ପରିବର୍ତ୍ତନର ନିୟମ ସମ୍ବନ୍ଧୀୟ ଜ୍ଞାନ ଦ୍ୱାରା ମାର୍କ୍ସ୍‌ବାଦୀ ଦର୍ଶନ ଶ୍ରମଜୀବୀ ଜନସାଧାରଣଙ୍କୁ ସୁସଜ୍ଜିତ କରିଥାଏ । ଏହାହିଁ ମାର୍କ୍ସ୍‌ବାଦୀ ଦର୍ଶନର ପ୍ରଧାନ ବିଶେଷତ୍ୱ । ସମସ୍ତ ପ୍ରକାର ଅତ୍ୟାଚାରରୁ ମୁକ୍ତ ଏବଂ ଏକ ନୂତନ ମୁକ୍ତ ଜୀବନର ନିର୍ମାଣ ଦିଗରେ ଶ୍ରମଜୀବୀ ଜନସାଧାରଣଙ୍କ ସଂଗ୍ରାମ ଲାଗି ଏହା ଏକ ଶକ୍ତିଶାଳୀ ହତିଆର ।

କିନ୍ତୁ ମାନବିକ ସ୍ୱାଧୀନତା କ'ଣ ସମ୍ଭବ ? ମନୁଷ୍ୟ କ'ଣ ନିଜେ ନିଜର ଭାଗ୍ୟ ଗଠନ କରିବାରେ ସମର୍ଥ ? ଅତି ପ୍ରାଚୀନକାଳରୁ ଏହି ପ୍ରଶ୍ନ ଲୋକମାନଙ୍କୁ ବିବ୍ରତ କରିଆସିଛି ; ହେଲେ, କେହି ଏହାର ବିଶ୍ୱାସଯୋଗ୍ୟ ଉତ୍ତର ଦେଇପାରି ନାହିଁ ।

ସ୍ୱାଧୀନତାର ପ୍ରଶ୍ନ ଆଲୋଚନା କରି ଦାର୍ଶନିକମାନେ ନାନାପ୍ରକାରର, ଅଥଚ ସର୍ବଥା ଭୁଲ, ସିଦ୍ଧାନ୍ତରେ ଉପନୀତ ହୋଇଛନ୍ତି ।

ସେମାନଙ୍କ ମଧ୍ୟରୁ କେତେକ ଭାଗ୍ୟବାଦୀ ଦୃଷ୍ଟିକୋଣ ଗ୍ରହଣ କରିଥିଲେ, ଯାହା କି ସ୍ୱାଧୀନତାକୁ ଅସ୍ୱୀକାର କରେ । ମନୁଷ୍ୟର ସମସ୍ତ କର୍ମ ଯେ ଚିରନ୍ତନଭାବେ ପୂର୍ବରୁ ତା'ର ଭାଗ୍ୟର ଲିଖନ—ଭାଗ୍ୟବାଦ ତାହାହିଁ ପ୍ରଚାର କରେ । ଧର୍ମର ଭାଗ୍ୟବାଦ (ମୁସଲମାନ ଧର୍ମବିଶ୍ୱାସ ଏବଂ କାଲଭିନ୍ ସମ୍ପ୍ରଦାୟ) କହେ ଯେ ମନୁଷ୍ୟର ଇଚ୍ଛା ଭଗବାନଙ୍କ ଦ୍ୱାରା ପୂର୍ବରୁ ନିର୍ଦ୍ଧାରିତ ହୋଇଛି । ପୁରାତନ ଅଧିବିଦ୍ୟାବାଦୀ ବସ୍ତୁବାଦୀମାନେ (ଯଥା ହୋଲବାକ୍) ପ୍ରକୃତିର ଅପରିହାର୍ଯ୍ୟତା କଥା କହୁଥିଲେ । ସେମାନେ କହୁଥିଲେ ଯେ ପ୍ରକୃତି ମନୁଷ୍ୟର ହାତଗୋଡ଼କୁ ବାନ୍ଧିଦେଇଛି, ତାକୁ କାର୍ଯ୍ୟର ସ୍ୱାଧୀନତା ଦେଇନାହିଁ ।

ବହୁ ଭାବବାଦୀ ଭାବଧାରା, ଅପର ଦିଗରେ, ପ୍ରାକୃତିକ ଅପରିହାର୍ଯ୍ୟତାକୁ ଅସ୍ୱୀକାର କରନ୍ତି, ଯେହେତୁ ସେମାନେ ଚୈତନ୍ୟରୁ, ମନୁଷ୍ୟର ଇଚ୍ଛାରୁ ସମଗ୍ର ଜଗତର ଉତ୍ପତ୍ତି ଦେଖିଥାନ୍ତି । ସେମାନେ ମନୁଷ୍ୟକୁ ପୂର୍ଣ୍ଣ ସ୍ୱାଧୀନ ବୋଲି ବିଚାରନ୍ତି ଏବଂ ନିୟମର, ବିଧିବିଧାନର ଚରମ ଅସ୍ତିତ୍ୱହୀନତା ଦାବି କରନ୍ତି । ସ୍ୱାଧୀନତାର ଏଇଭଳି ଦାର୍ଶନିକ ତତ୍ତ୍ୱ ସବୁ ଅନିମିତ୍ତବାଦର ପ୍ରତିନିଧିତ୍ୱ କରନ୍ତି । ସେଥିଭିତରୁ ଏଥିପୂର୍ବେ ଆଲୋଚିତ ହୋଇଥିବା "ଅସ୍ତିତ୍ୱବାଦର ଦର୍ଶନକୁ" ଦୃଷ୍ଟାନ୍ତରୂପେ ନିଆଯାଇପାରେ ।

ପ୍ରାକ୍-ମାର୍କ୍ସୀୟ ଦାର୍ଶନିକମାନଙ୍କ ଭିତରୁ ହେଗେଲ୍ ସ୍ୱାଧୀନତା ଏବଂ ଅପରିହାର୍ଯ୍ୟତା ସମସ୍ୟାର ଗଭୀର ସମାଧାନ ବାଢ଼ିଥିଲେ । କିନ୍ତୁ ସେ ତାଙ୍କର ସବୁ ମତବାଦ ଭଳି ଏହାକୁ ମଧ୍ୟ ଭାବବାଦୀର ଭିତ୍ତି ଉପରେ ବିକାଶ କରିଥିଲେ । ସ୍ୱାଧୀନତାକୁ ଅପରିହାର୍ଯ୍ୟତାର ସ୍ୱୀକୃତିଭାବେ ବ୍ୟାଖ୍ୟା କରି ସେ ସ୍ୱାଧୀନତା ସହିତ ଅପରିହାର୍ଯ୍ୟତାକୁ ସଂଯୁକ୍ତ କରିବାକୁ ଚେଷ୍ଟା କରିଥିଲେ । କିନ୍ତୁ ଅପରିହାର୍ଯ୍ୟତା ଦ୍ୱାରା ସେ ପରମ ଭାବର ଅପରିହାର୍ଯ୍ୟ ବିକାଶକୁ ବୁଝୁଥିଲେ, ଆଉ, ତାଙ୍କ ମତବାଦ ଅନୁସାରେ, ସ୍ୱାଧୀନତା ଆତ୍ମାର ରାଜ୍ୟରେ ହିଁ କେବଳ ଅନୁଭୂତ ବା ଉପଲବ୍ଧ ହୁଏ ।

ହେଗେଲ୍ ଏବଂ ଅନ୍ୟାନ୍ୟ ସବୁ ଭାବବାଦୀମାନଙ୍କ ମତବାଦର ମୌଳିକ ତ୍ରୁଟି ହେଉଛି ଯେ ସେମାନେ ମାନବଜୀବନର ବାସ୍ତବ ଅବସ୍ଥାର ପ୍ରଶ୍ନକୁ ପୁରାପୁରି ଉପେକ୍ଷା କରି ସ୍ୱାଧୀନତାକୁ କେବଳ ମାତ୍ର ଆତ୍ମାରେ, ଚେତନାରେ ସ୍ୱାଧୀନତା ବୋଲି କଳ୍ପନା କରିଥିଲେ । ଆହୁରି ବଡ଼ କଥା ହେଲା, ସେମାନେ ବରାବର ବ୍ୟକ୍ତିର ସ୍ୱାଧୀନତା ବିଷୟରେ କହୁଥିଲେ, ଜନସାଧାରଣଙ୍କ ମୁକ୍ତିର ପ୍ରଶ୍ନକୁ ଏଡ଼ାଇଯାଉଥିଲେ ।

ଦ୍ୱନ୍ଦ୍ୱମୂଳକ ବସ୍ତୁବାଦ ସ୍ୱାଧୀନତା ଓ ଅପରିହାର୍ଯ୍ୟତାର ସମ୍ବନ୍ଧର ପ୍ରଶ୍ନ ସମ୍ପର୍କରେ ଏକ ବୈଜ୍ଞାନିକ ସମାଧାନ ପ୍ରଦାନ କରେ । ବସ୍ତୁବାଦୀ ଦ୍ୱନ୍ଦ୍ୱବାଦ ଅପରିହାର୍ଯ୍ୟତାକୁ ଭିତ୍ତିଭାବେ ଗ୍ରହଣ କଲାବେଳେ ସେଥିସଙ୍ଗରେ ମାନବ ସ୍ୱାଧୀନତାର ସମ୍ଭାବନାକୁ ସ୍ୱୀକାର କରେ । ମନୁଷ୍ୟର ପ୍ରକୃତ ସ୍ୱାଧୀନତା, ପ୍ରାକୃତିକ ଓ ସାମାଜିକ ନିୟମମାନଙ୍କଠାରୁ ଏକ କାଳ୍ପନିକ ସ୍ୱାଧୀନତା ନୁହେ ( ସେପରି ସ୍ୱାଧୀନତା କାର୍ଯ୍ୟତଃ ସମ୍ଭବପର ନୁହେ ) । ଉକ୍ତ ନିୟମମାନଙ୍କୁ ବୁଝିବା ଏବଂ ସେଇ ଜ୍ଞାନକୁ ଭିତ୍ତି କରି କାର୍ଯ୍ୟ କରିବାରେହିଁ ମନୁଷ୍ୟର ପ୍ରକୃତ ସ୍ୱାଧୀନତା ରହିଛି ।

ଲୋକମାନେ ଅପ୍ରାକୃତ ସତ୍ତା ନୁହନ୍ତି । ସେମାନେ ଯେପରି ନିଶ୍ୱାସ ନ ମାରି ରହିପାରିବେ ନାହିଁ, ସେମିତି ପ୍ରାକୃତିକ ନିୟମମାନଙ୍କ ପରିସୀମାକୁ ଅତିକ୍ରମ କରି-ପାରିବେ ନାହିଁ । ପୁଣି, ଲୋକମାନେ ସମାଜରେ ବାସ କରନ୍ତି ; ତେଣୁ ସାମାଜିକ ଜୀବନଧାରଣର ନିୟମମାନଙ୍କ କାର୍ଯ୍ୟକଳାପଠାରୁ ଆପଣାକୁ ମୁକ୍ତ ରଖିପାରିବେ ନାହିଁ । ସେମାନେ ମନମୁଖୀଭାବେ ଉପସ୍ଥିତ ନିୟମକୁ ପ୍ରତ୍ୟାହାର କରିନେଇ ପାରିବେ ନାହିଁ କି ନୂତନ ନିୟମ ପ୍ରଚଳନ କରାଇପାରିବେ ନାହିଁ ।

କିନ୍ତୁ ଲୋକେ ପ୍ରକୃତି ଓ ସମାଜର ନିୟମମାନଙ୍କୁ ଅବାଧାରଣ କରିପାରନ୍ତି ଏବଂ ସେମାନଙ୍କର ପ୍ରକୃତି ଓ କାର୍ଯ୍ୟର ଗତିପଥ ଜାଣିଲା ପରେ ନିଜର ସ୍ୱାର୍ଥସାଧନ ଲାଗି ସେମାନଙ୍କୁ ବ୍ୟବହାର କରିପାରନ୍ତି, ସେମାନଙ୍କୁ ଆପଣାର ସେବାରେ ନିୟୋଗ କରିପାରନ୍ତି ।

ସମସ୍ତ ଆଧୁନିକ ପ୍ରଯୋଗବିଦ୍ୟା, ପ୍ରକୃତିର ନିୟମମାନଙ୍କୁ ଉପେକ୍ଷା କରିବା ଦୂରେ ଥାଉ, ସେଇ ନିୟମମାନଙ୍କର ଉଦ୍ଦେଶ୍ୟମୂଳକ ବ୍ୟବହାର ଉପରେ ନିର୍ଭର କରେ । ଏ ନିୟମମାନ ଯେ ମନୁଷ୍ୟର ସେବାରେ ବ୍ୟବହୃତ ହୋଇପାରିବେ, ଏହାହିଁ ହେଲା ତା'ର ପ୍ରମାଣ ।

ସାମାଜିକ ଜୀବନର ନିୟମମାନଙ୍କୁ ଆୟତ୍ତ କରିବା ମନୁଷ୍ୟ ପକ୍ଷରେ ଆହୁରି ଅତ୍ୟନ୍ତ କଷ୍ଟସାଧ୍ୟ ; ଏ ନିୟମ ହଜାର ହଜାର ବର୍ଷ ଧରି ମନୁଷ୍ୟକୁ ଏକ ବିରୋଧୀ ଓ ପରିପନ୍ଥୀ ଶକ୍ତି ଭାବରେ ଶାସନ କରିଆସିଛି । ଶ୍ରମକାରୀ ମନୁଷ୍ୟ ଅର୍ଥନୈତିକ ଜୀବନର ସ୍ୱତଃସ୍ଫୂର୍ତ୍ତ ନିୟମମାନଙ୍କ ଦ୍ୱାରା ଓ କର୍ତ୍ତୃତ୍ୱବିସ୍ତାରକାରୀ ଶୋଷକଶ୍ରେଣୀର ଶକ୍ତି ଦ୍ୱାରା କ୍ରୀତଦାସରେ ପରିଣତ ହୋଇଛି ।

ସାମାଜିକ ଓ ଶ୍ରେଣୀଗତ ଦାସତ୍ୱରୁ ମନୁଷ୍ୟର ମୁକ୍ତି ଏବଂ ତା'ର ସ୍ୱାଧୀନତା ଲାଭ ଏକ ସୁଦୀର୍ଘ କଠୋର ଐତିହାସିକ ପ୍ରକ୍ରିୟା । କେବଳ ଆମର ଏଇ ଯୁଗରେ, କମ୍ୟୁନିଜମ୍ ପ୍ରତିଷ୍ଠା ଲାଗି ସଂଗ୍ରାମରେ ମାର୍କ୍ସବାଦ-ଲେନିନ୍‌ବାଦର ଶିକ୍ଷାଦ୍ୱାରା କୋଟି କୋଟି ଲୋକ ଜାଗ୍ରତ, ଅନୁପ୍ରାଣିତ ହେବା ଫଳରେ, ତାହା ବିଶେଷ ଗତିଶୀଳତା

[illegible] କରିଛନ୍ତି ଏବଂ ବିଶ୍ୱର ଜନସମାଜକୁ ପ୍ରଭାବିତ କରୁଛନ୍ତି । କମ୍ୟୁନିଷ୍ଟ ସମାଜ ନିର୍ମାଣରେ ଅର୍ଥ ହେଲା, ମନୁଷ୍ୟସମାଜ ପକ୍ଷରେ ଅପରିହାର୍ଯ୍ୟତାର ରାଜ୍ୟରୁ ସ୍ୱାଧୀନତାର ରାଜ୍ୟକୁ ଏକ ଉଲ୍ଲମ୍ଫନ ।

ମାନବସମାଜବିକାଶର ଶହ ଶହ ବର୍ଷ ଭିତରେ ମଣିଷ ତା'ର ଇଚ୍ଛା ବାହାରେ ରହିଥିବା ବସ୍ତୁଗତ ଅପରିହାର୍ଯ୍ୟତା ନିକଟରେ ମୁଣ୍ଡ ନୁଆଁଇବା ସାଙ୍ଗେ ସାଙ୍ଗେ ପ୍ରକୃତିର ମୌଳିକ ଶକ୍ତିକୁ କ୍ରମେ ଅଧିକାଧିକ ଆୟତ୍ତାଧୀନ କରିପାରିଛି ଏବଂ ଆପଣାର ସାମାଜିକ ମୁକ୍ତି ନିମନ୍ତେ ଭିତ୍ତି ପ୍ରସ୍ତୁତ କରିଛି । ଏଇ ଐତିହାସିକ ପ୍ରକ୍ରିୟା ପ୍ରକୃତିର ନିୟମଠାରୁ ଭିନ୍ନ ନିଜର ସ୍ୱତନ୍ତ୍ର ସାମାଜିକ ନିୟମମାନଙ୍କଦ୍ୱାରା ପରିଚାଳିତ । ମାନବସମାଜର ବିକାଶକୁ ପରିଚାଳିତ କରୁଥିବା ଏହି ନିୟମମାନଙ୍କ ଅଧ୍ୟୟନ ମାର୍କସ୍‌ବାଦୀ-ଲେନିନବାଦୀ ଦର୍ଶନର ଏକ ବିଶିଷ୍ଟ ଅଙ୍ଗ । ତାହା ହେଉଛି ଐତିହାସିକ ବସ୍ତୁବାଦ, ଯାହାର ବିଚାର ଏହା ପରେ ଆମେ କରିବା ।

## ପ୍ରତିଶବ୍ଦମାଳା

| | |
|---|---|
| ଅଜ୍ଞେୟବାଦ | Agnosticism |
| ଅଦ୍ୱୈତବାଦ | Monism |
| ଅଧିବିଦ୍ୟା | Metaphysics |
| ଅଧିଯନ୍ତ୍ରବାଦୀ | Mechanistic |
| ଅନିମିତ୍ତବାଦ | Indeterminism |
| ଅନୁମାନାଶ୍ରିତ | Conjecture |
| ଅନ୍ୱୟ | Thesis |
| ଅପରିହାର୍ଯ୍ୟତା | Necessity |
| ଅପ୍ରତିବନ୍ଧ | Unconditional |
| ଅପ୍ରାକୃତ | Supernatural |
| ଅବଧାରଣ | Cognition |
| ଅବଲୋହିତ ରଶ୍ମି କଣା | Infra-red radiation |
| ଅଭିଗମନ | Approach |
| ଅସ୍ତିତ୍ୱବାଦୀ | Existentialist |
| ଆକସ୍ମିକତା | Accident |
| ଆତ୍ମସତ୍ତା | ... Self |
| ଆତ୍ମଗତ<br>ମନୋଗତ } | ... Subjective |
| ଆତ୍ମିକ, ଆଧ୍ୟାତ୍ମିକ<br>ଆତ୍ମଚୈତନ୍ୟଗତ } | Spiritual |
| ଆକାର | Form |
| ଆଧେୟ | Content |
| ଆପେକ୍ଷିକ ତତ୍ତ୍ୱ | Theory of relativity |
| ଆନ୍ତଃ-ପରମାଣୁ ପ୍ରକ୍ରିୟା | Intranuclear process |
| ଇନ୍ଦ୍ରିୟ ଅବୟବ | Sense organs |
| ଇନ୍ଦ୍ରିୟାନୁଭୂତି | Sensation |
| ଇନ୍ଦ୍ରିୟାନୁଭୂତିର ଛାପ | Sense impression |

| | |
|---|---|
| ଇନ୍ଦ୍ରିୟାତୀତ | Transcendental |
| ଉତ୍ତାପୀୟ ଆଣବିକ ପ୍ରକ୍ରିୟା | Thermonuclear reaction |
| ଉଲ୍ଲମ୍ଫନ | Leap |
| କାରଣସାପେକ୍ଷତା | Causal dependence |
| କୂଟାଭାସ | Paradoxical |
| କ୍ଷୁଦ୍ର ପରମାଣୁ | Monomers |
| ଗାମା ରଶ୍ମି | Gama rays |
| ଚରମଲକ୍ଷ୍ୟ ନୀତି | Doctrine of Ends |
| ଚିନ୍ତା, ଚିନ୍ତନ | Thought |
| ଚେତନା, ଚୈତନ୍ୟ | Consciousness |
| ଜୀର୍ଣ୍ଣ ବିବର୍ତ୍ତନବାଦୀ | Trite Evolutionist |
| ଜ୍ଞାନତାତ୍ତ୍ୱିକ | Epistomological |
| ଦୃଷ୍ଟବାଦ | Positivism |
| ଦ୍ୱନ୍ଦ୍ୱ | Dialectic |
| ଦ୍ୱୈତବାଦ | Dualism |
| ଧର୍ମତତ୍ତ୍ୱବାଗୀଶ | Theologian |
| ଧ୍ୟାନସ୍ଥ | Contemplative |
| ନିବନ୍ଧ | Thesis |
| ନିୟତିବାଦ | Determinism |
| ପଣ୍ୟ | Commodity |
| ପରମ | Absolute |
| ପରମକାରଣବାଦ | Teleology |
| ପରସ୍ପର ପରିବର୍ତ୍ତନଶୀଳ | Mutually exclussive |
| ପରିବେଶ, ପରିଗମ | Environment |
| ପରିଗମନ | Transition |
| ପରିଦୃଷ୍ଟ ରଶ୍ମି-କଣିକା ବର୍ଣ୍ଣାଳୀ | Spectrum of visible radiation |
| ପ୍ରକଳ୍ପ | Hypothesis |
| ପ୍ରଜାତି | Species |
| ପ୍ରତିଫଳନ ତତ୍ତ୍ୱ | Theory of reflection |

| | |
|---|---|
| ପ୍ରତିବନ୍ଧ | Conditional |
| ପ୍ରତିବର୍ତ୍ତୀ କର୍ମ | Reflex action |
| ପ୍ରତିସ୍ଥାପନ | Replace |
| ପ୍ରତ୍ୟନ୍ୱୟ | Anti-thesis |
| ପ୍ରପଞ୍ଚ | Phenomenon |
| ପ୍ରପଞ୍ଚବାଦ | Phenomology |
| ପ୍ରୟୋଗବିଦ୍ୟା | Technology |
| ପ୍ରୟୋଗବାଦ | Pragmatism |
| ପ୍ରସାର୍ଯ୍ୟମାନ ବିଶ୍ୱବ୍ରହ୍ମାଣ୍ଡ | Expanding Universe |
| ପ୍ରାକୃତିକ ନିର୍ବାଚନ | Naturl selection |
| ବଳୟିତ | Spiral |
| ବସ୍ତୁଗତ, ବସ୍ତୁସାର | Objective |
| ବସ୍ତୁବାଦ | Materialism |
| ବିପାକ ଗଠନ | Metabolism |
| ବିମୂର୍ତ୍ତି | Adstract |
| ବିଲୁପ୍ତି | Negation |
| ବିଶ୍ୱଜନୀନ | Universal |
| ବୈପରୀତ୍ୟ | Opposites |
| ବୈର | Antagonistic |
| ବୃହତ୍ ପରମାଣୁ | Polymers |
| ବ୍ୟାବହାରିକ କର୍ମ | Practice |
| ଭାବବାଦ | Idealism |
| ଭାବତାତ୍ତ୍ୱିକ | Ideological |
| ମତାଦର୍ଶବାଦୀ | Ideologist |
| ମତାନ୍ଧତା | Dogmatism |
| ମିଥସ୍କ୍ରିୟା | Interaction |
| ମୂର୍ତ୍ତି | Concrete |
| ଯନ୍ତ୍ରବିଦ୍ୟା | Mechanism |
| ଯାନ୍ତ୍ରିକ ନିମିତ୍ତବାଦ | Mechanical determinism |

| | |
|---|---|
| ଶକ୍ତିର ସଂରକ୍ଷଣ ଓ ରୂପାନ୍ତରର ନିୟମ | Law of conservation and transformation of enei gy |
| ଶବ୍ଦାର୍ଥବିଦ୍ୟା | Semantic |
| ସତ୍ତା | Being |
| ସମନ୍ୱୟ | Synthesis |
| ସମ୍ବେଦନଶୀଳ | Responsive |
| ସମ୍ଭାବିତ ଗାଣିତିକ ତତ୍ତ୍ୱ | Mathematical theory of probability |
| ସର୍ବଖଣ୍ଡନବାଦ | Nihilism |
| ସଂଶୋଧନବାଦ | Revisionism |
| ସହଗ ଶକ୍ତି | Co-efficient |
| ସାମାନ୍ୟୀକରଣ | Generalisation |
| ସାରମର୍ମ, ସାରଗତ, ସାରଭୂତ | Essence |
| ସୋଽହଂବାଦ | Solipsism |
| ହେତୁବାଦ | Causality |